# ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର

ଲେଖକ ଅଚ୍ୟୁତ ଦାସ ■ ପ୍ରକାଶକ ଶିକ୍ଷାସନ୍ଧାନ, ଭୁବନେଶ୍ୱର-୧୫, ଦୂରଭାଷ : ୦୬୭୪-୨୫୫୬୧୦୯ ■ ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଭୁବନେଶ୍ୱର-୩ ■ ପ୍ରଥମ ସଂସ୍କରଣ : ୨୦୧୦ ■ ଆଇ.ଏସ୍.ବି.ଏନ୍ :୧୩:୯୭୮-୮୧-୮୭୯୮୨-୬୦-୯ ■ ମୂଲ୍ୟ : ଟ.୨୦୦/-

# Atmakatha :Jane Pathabhranta Paribrajakara

Author : Achyut Das ■ Published by : **Sikshasandhan,** Bhubaneswar - 15 Phone : 0674-2556109 ■ First Edition : 2010 ■ Printed at : **Siksha Prakashani** , Bhubaneswar - 3 ■ I.S.B.N -13:978-81-87982-60-9 ■ Price : Rs. 200/-

# ଉତ୍ସର୍ଗ

ମୋର ଅଭିନବ ଆଧ୍ୟାତ୍ମିକ ଯାତ୍ରା ପଥରେ ସହଯାତ୍ରୀ ହୋଇଥିବା ଓ ବିଭିନ୍ନ ଗଭୀର ପ୍ରଶ୍ନର ଉତ୍ତର ଖୋଜିବାରେ ସହାୟତା ପ୍ରଦାନ କରିଥିବା

ଶ୍ରୀମତୀ ବିଦ୍ୟା ଦାସଙ୍କ ଉଦ୍ଦେଶ୍ୟରେ......

*ଅଚ୍ୟୁତ ଦାସ*

# କୃତଜ୍ଞତା

"ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର" ସମସ୍ତ ଲେଖା ଦୈନିକ ଓଡ଼ିଆ ଖବରକାଗଜ "ପର୍ଯ୍ୟବେକ୍ଷକ"ରେ ଏକ ସାପ୍ତାହିକ ସ୍ତମ୍ଭରୂପେ ପ୍ରକାଶିତ ହୋଇଛି । ଯେଉଁ ସପ୍ତାହରେ 'କାଶୀପୁର ଡାଏରି'ର ସ୍ତମ୍ଭ ଶେଷ ହେଲା ତା'ପରବର୍ତ୍ତୀ ସପ୍ତାହରେ କ'ଣ ଲେଖାଯିବ ବୋଲି ମୋର ଅନେକ ବନ୍ଧୁ ଓ 'ପର୍ଯ୍ୟବେକ୍ଷକ'ର ସମ୍ପାଦକ ଡକ୍ଟର ପବିତ୍ରମୋହନ ସାମନ୍ତରାୟ ଜାଣିବାକୁ ଚାହିଁଥିଲେ । ଆଉ ଜଣେ ବନ୍ଧୁ ପ୍ରସ୍ତାବ ଦେଇଥିଲେ ଯେ ଆମର ତରୁଣ ବୟସରୁ ଉଠିଥିବା ଆଧ୍ୟାତ୍ମିକ ପ୍ରଶ୍ନ ଗୁଡିକୁ ଆଲୋଚନା କରାଯାଉ । ମୁଁ ନିଜେ ଆଧ୍ୟାତ୍ମିକବାଦରୁ ନିଜକୁ ମୁକ୍ତ ରଖି ପାରିଛି ବୋଲି କହିପାରିବି ନାହିଁ । ଅନ୍ୟପକ୍ଷରେ ନାସ୍ତିକବାଦର ବାହାରକୁ ମୁଁ ନିଜକୁ ସୁରକ୍ଷିତ ରଖିଛି ବୋଲି ମଧ୍ୟ କହିପାରିବି ନାହିଁ । ଡକ୍ଟର ସାମନ୍ତରାୟଙ୍କୁ କିନ୍ତୁ ସୂଚନା ଦେଇଥିଲି ଯେ ମୋତେ ମିଳିଥିବା ସ୍ତମ୍ଭରେ କେତେକ ଆଧ୍ୟାତ୍ମିକ ପ୍ରଶ୍ନ ଉଠାଇବି । ସେ ତତ୍‌କ୍ଷଣାତ୍ ସହମତ ପ୍ରକାଶ କରିଥିଲେ ଓ ମୋ ଲେଖାଗୁଡିକ ଉପରେ ମନ୍ତବ୍ୟ ଦେବାର ଅଧିକାର ନାହିଁ ବୋଲି ସ୍ପଷ୍ଟ କରି ଦେଇଥିଲେ । ଲେଖାଗୁଡ଼ିକ ପ୍ରତ୍ୟେକ ସପ୍ତାହରେ ନିର୍ଦ୍ଦିଷ୍ଟ ସମୟରେ "ପର୍ଯ୍ୟବେକ୍ଷକ" ଅଫିସରେ ପହଞ୍ଚିବା ପାଇଁ ମୁଁ କଥା ଦେଇଥିଲି । ଲେଖାମାନଙ୍କର ଗୁଣାତ୍ମକମାନ ବେଳେବେଳେ ମୁଁ ନିର୍ଦ୍ଧାରଣ କରିବାକୁ ସମୟ ପାଉନଥିଲି । କିନ୍ତୁ ସମ୍ପାଦକ ମହାଶୟ ନିଃସର୍ତ୍ତ ଲେଖାଗୁଡ଼ିକୁ ଗ୍ରହଣ କରି ନିୟମିତ ସାପ୍ତାହିକ ସ୍ତମ୍ଭରେ ସ୍ଥାନ ଦେଇଥିଲେ । ଏଥିପାଇଁ ତାଙ୍କ ପାଖରେ ଚିର କୃତଜ୍ଞ । ସେ ଯଦି ଏହା ନକରିଥାଆନ୍ତେ, ତେବେ ଲେଖାଗୁଡିକ ସମ୍ଭବତଃ ଆତ୍ମପ୍ରକାଶ କରିନଥାନ୍ତେ ।

ଏ ବହିର ପରିକଳ୍ପନା ଓ ବିଷୟବସ୍ତୁ ଗୁଡିକ ନିର୍ଦ୍ଧାରଣ କରିବାରେ ଅନ୍ତରଙ୍ଗ ବନ୍ଧୁ ଶ୍ରୀ ପ୍ରଫୁଲ୍ଲ ବେହେରା ଓ ଶ୍ରୀ ଅରବିନ୍ଦ ବେହେରା ବିଶେଷ ଭୂମିକା ଗ୍ରହଣ କରିଛନ୍ତି । ପ୍ରଫୁଲ୍ଲ ଅନେକ ଉପାଦେୟ ପୁସ୍ତକ, ପ୍ରବନ୍ଧ ଓ ସମାଲୋଚନା କେଉଁ ଅଜଣା ସ୍ଥାନମାନଙ୍କରୁ ସଂଗ୍ରହ କରି ଆଣି ଦେଉଥିଲା । ଲେଖା ବାହାରିଲା ପରେ ତାକୁ ପଠନ କରି ମୋତେ ଶୁଣାଉଥିଲା । ଅରବିନ୍ଦ ଲେଖାଗୁଡିକ ପ୍ରକାଶିତ ହେଲା ପରେ ଆହୁରି ଲେଖିବା ପାଇଁ ପ୍ରେରଣା ଯୋଗାଉଥିଲା । ଛାତ୍ର ଜୀବନରେ ସ୍କୁଲ ଓ କଲେଜରେ ପାଠ ପଢୁଥିବାବେଳେ ଉଭୟ ମୋତେ ବିଭିନ୍ନ ବାଟରେ ପ୍ରଭାବିତ କରିଛନ୍ତି । ଆମେ ସମସ୍ତେ ଯେଉଁ ବୌଦ୍ଧିକ ଓ ଆଧ୍ୟାତ୍ମିକ ଅନ୍ୱେଷା ଅନେକ ବର୍ଷ ହେଲା ଆରମ୍ଭ କରିଥିଲୁ, ତାହା ଏ ପୁସ୍ତକ ଲେଖିବାକୁ ଅନେକ ଉପାଦାନ ଯୋଗାଇଛି । ମୁଁ ଏଇ ପୁସ୍ତକରେ ଉଲ୍ଲେଖ କରିଥିବା ବିଭିନ୍ନ ବିଶ୍ୱବିଖ୍ୟାତ ଲେଖକମାନଙ୍କୁ ମଧ୍ୟ ସେମାନେ ପଢ଼ିଛନ୍ତି । ଏ ବହିର 'ମୁଖବନ୍ଧ' ଉଭୟେ ମଧ୍ୟ ନିଜସ୍ୱ ଶୈଳୀରେ ଲେଖିଛନ୍ତି ଓ ଯାହା ଯୁକ୍ତିଯୁକ୍ତ ତାହା ପ୍ରମାଣିତ କରିଛନ୍ତି । ଏ ବହିଟିର ଉଦ୍‌ଭଟ ବିଷୟବସ୍ତୁ ପ୍ରତି ଆସ୍ଥା ପ୍ରକଟ କରିଛନ୍ତି । ସେମାନଙ୍କର ଅବଦାନ ପାଇଁ ମୁଁ ନିଶ୍ଚିତ ଭାବେ ଋଣୀ ।

ବନ୍ଧୁ ଶ୍ରୀମତୀ ସିନ୍ଧୁବାଳା ଚୌଧୁରୀ ପାଣ୍ଡୁଲିପିଟି ପଢ଼ିବା ପରେ ସ୍ୱେଚ୍ଛାକୃତ ଭାବେ କିଛି ଲେଖିବାକୁ ପ୍ରସ୍ତାବ ଦେଇଥିଲେ । ମୋର ଲେଖାମାନଙ୍କରେ ବୌଦ୍ଧିକତାର ଛାପ ରହିଛି ବୋଲି ସୂଚନା ଦେଇଥିଲେ । କିଛି ଦିନ ତଳେ 'ସଚିତ୍ର ବିଜୟା'ରେ 'ମଣିମହେଶ' ବୋଲି ସେ ଲେଖାଟିଏ ଲେଖି ଆମ ସମସ୍ତଙ୍କୁ ଉର୍ଦ୍ଧ୍ୱମୁଖୀ ହେବାକୁ ପଡିବ ବୋଲି ପରାମର୍ଶ ଦେଇଥିଲେ । ମଣିମହେଶ ହେଉଛି ୧୮୦୦୦ଫୁଟ୍ ଉଚ୍ଚରେ ଅବସ୍ଥିତ ହିମାଳୟର ଏକ ଦର୍ଶନୀୟ ସ୍ଥାନ । ବହିଟିର ପୃଷ୍ଠବନ୍ଧ ସେ ଲେଖିଛନ୍ତି ଓ ଏଥିପାଇଁ ସେ ଧନ୍ୟବାଦର ପାତ୍ରୀ ।

'ଶିକ୍ଷା ସନ୍ଧାନ'ର ଶ୍ରୀ ଅନୀଲ୍ ପ୍ରଧାନ ପୁସ୍ତକଟିର ପ୍ରକାଶନର ଗୁରୁଦାୟିତ୍ୱ ବହନ କରିଛନ୍ତି । ଏ ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେବ କି ନାହିଁ, ବିକ୍ରୟ ହେବ କି ନାହିଁ, ସେ ଏକଥା ବିଚାରକୁ ନେଇନାହାନ୍ତି । ତାଙ୍କୁ ବିଶେଷ ଧନ୍ୟବାଦ ଏଥିପାଇଁ । 'ଶିକ୍ଷା ସନ୍ଧାନ' ପ୍ରେସ୍‌ର ବାବୁଲୀ ସ୍ୱୟଂ ଆଗ୍ରହର ସହ ବହିଟି ପ୍ରକାଶିତ ହେବାରେ ପଦକ୍ଷେପ ନେଇଛନ୍ତି । ତାଙ୍କୁ ମଧ୍ୟ ଧନ୍ୟବାଦ । ଶ୍ରୀମତୀ ସୁନୀତା ସାହୁ ଓ ଶ୍ରୀ ବିପିନ ବାରିକ ସବୁଠାରୁ ଜଟିଳ ସମସ୍ୟାର ସମାଧାନ କରିଛନ୍ତି । ଲେଖାଗୁଡିକ ତରତରରେ ଲେଖା ଯାଉଥିଲା । ହସ୍ତାକ୍ଷର ବଡ଼ କଦର୍ଯ୍ୟ । ତାକୁ କମ୍ପ୍ୟୁଟରୀକରଣ କରିବାରେ ବିଶେଷ ପରିଶ୍ରମ କରିଛନ୍ତି । ସେମାନେ ଅଶେଷ ଧନ୍ୟବାଦର ପାତ୍ର ନିଶ୍ଚିତ ଭାବେ । ଶ୍ରୀ ଆଶିଷ ଦାସ ମଧ୍ୟ ଲେଖାଗୁଡିକ ପର୍ଯ୍ୟବେକ୍ଷକ ପ୍ରେସ୍‌ରେ ନିୟମିତ ପହଞ୍ଚାଇବାର ଦାୟିତ୍ୱ ବହନ କରିଥିଲେ । ତାଙ୍କୁ ମଧ୍ୟ ଧନ୍ୟବାଦ । ମୋତେ ପ୍ରେରଣା ଯୋଗାଇଥିବା ସମସ୍ତ ଜ୍ଞେୟ ଅଜ୍ଞେୟଙ୍କୁ ମୋର ସହୃଦୟ ଧନ୍ୟବାଦ ।

*ଅଚ୍ୟୁତ ଦାସ*

*କାଶୀପୁର*

# "ମୁଖବନ୍ଧ ନୁହଁ........ ।"

"When to the sessions of silent thought
I summon up remembrance of things past....."

Marcel Proust – Remembrance of things past.

ପଛକୁ ଚାହିଁଲେ ଆଖି ପାଉନି । ପଚାଶବର୍ଷ ବିତିଗଲାଣି । ସମ୍ପର୍କର ସୂତା ଖିଅରେ ଆମେ ବନ୍ଧା ହୋଇଛୁ ଦୁଇଜଣ । ଅଚ୍ୟୁତ ଦାସ ଓ ମୁଁ । ପିଲାଦିନର ଧୂଳିଖେଳରୁ ଆଜିଯାଏ । ମୋର ବାଲ୍ୟସାଥୀ - ସଖା, ସହୋଦର, ପଥପ୍ରଦର୍ଶକ ସେ । ସେ ଅନନ୍ୟ, ଅସାଧାରଣ । ମୋ ସମୟର ଜଣେ "ଜିନିୟସ" ।

ଶ୍ରୀଯୁକ୍ତ ଅଚ୍ୟୁତ ଦାସ ଦେଶ ତଥା ଆମ ରାଜ୍ୟର ଜଣାଶୁଣା ସୋସିଆଲ୍ ଆକ୍ଟିଭିଷ୍ଟ । ଦୁର୍ନୀତି, ଅନ୍ୟାୟ, ଶୋଷଣ ବିରୋଧରେ ସଂଗ୍ରାମରତ ବେସାଲିସ୍ ସମାଜସେବୀ । ଲେଖକ, ସ୍ତମ୍ଭକାର, ବହୁପାଠୀ, ବୁଦ୍ଧିଜୀବୀ । - ଅନ୍ୟ ଅନେକଙ୍କର ଅଚ୍ୟୁତ ଭାଇ - ଅଚ୍ୟୁତ ଦାସ ।

ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ତାଳଚେର ସହରରେ ତାଙ୍କ ଜନ୍ମ । ଅଭିଜାତ ପରିବାରରେ । ପିଲା ଦିନରୁ ମେଧାବୀ । ପାଠ ପଢ଼ାରେ ଆଗୁଆ - ସବୁଶ୍ରେଣୀରେ ପ୍ରଥମ । କିନ୍ତୁ ଅତି ଅଳ୍ପ ବୟସରୁ ଦୁଃସାହସୀ । ଶ୍ରାବଣ ମାସର ବର୍ଷା । କାଉ, କୋଇଲି ଚୁପ୍‌ଚାପ୍ । ସବୁଆଡେ ଶୁନ୍‌ଶାନ୍ । ଛୋଟ ସହର । ଅଚ୍ୟୁତର ମୋତେ ତାଗିଦ୍ - ଯେତେ ବର୍ଷା ହେଉ ପଛକେ - ମାଇଲ୍ ମାଇଲ୍ ପାଦରେ ଚାଲି ଚାଲି ବର୍ଷାରେ ତିନ୍ତିବା - ଆମେ ଦୁଇଜଣ ଘରୁ ପଦାକୁ ବାହାରି ଆସୁ । ଘଣ୍ଟା ଘଣ୍ଟା ବର୍ଷାରେ ତିନ୍ତୁ । ଚୁପ୍‌ଚାପ ବାଟ ଚାଲୁଥାଉ । ତା'ପରେ ଘରକୁ ଫେରୁ ।

ଆମ ସହରକୁ ଘେରି ଏକଦା ଥିଲା ଏକ "ଅଭୟାରଣ୍ୟ" ରାଣୀ ପାର୍କ । ଘଞ୍ଚ ଅରଣ୍ୟ । ପଶୁ, ପକ୍ଷୀ ଭିନ୍ନ ଭିନ୍ନ ଗଛ । ଫୁଲର ମହକରେ ଜଙ୍ଗଲ ଫାଟିପଡୁଥାଏ । ଏତେ ଘଞ୍ଚ ଜଙ୍ଗଲରେ ଏକାକୀ ପାଦ ଦେବା ବିପଦ ସଙ୍କୁଳ । ଅଚ୍ୟୁତର ଜିଦ୍ - ଜଙ୍ଗଲରେ ପାଦ ଥକିବା ଯାଏ ବୁଲିବା - ମନଭରି ପ୍ରକୃତି କୋଳରେ ହଜିଯିବା । ସେ ପିଲାଦିନରୁ "ବଡ - ନିର୍ଭୀକ । ତା' କଥାକୁ କାଟିବା ସହଜସାଧ ନୁହେଁ । ହୁଏ ଜଙ୍ଗଲ ବୁଲା । ଗଛ ଚଢ଼ା । ଫୁଲ ସାଉଁଟା ।

ତାଳଚେର ରାଜପ୍ରସାଦ । ସମ୍ରାଟ ସଦନ । ରାଜପ୍ରାସାଦକୁ ଲାଗି ଚନ୍ଦ୍ରିକା ମହଲ । ସମ୍ମୁଖରେ ବ୍ରାହ୍ମଣୀ ନଦୀ । ନଦୀକୂଳରେ ବସିବା ଲାଗି ସିମେଣ୍ଟ ନିର୍ମିତ

ବେଞ୍ଚ । ଦୂରରେ ପାହାଡ । ପିଲାଦିନେ ତାହାଥିଲା ଆମ ଦୁଇଜଣଙ୍କର "ହାୱାମହଲ" - ପ୍ରତିଦିନ ସେଇଠି ବସି ଆଲୋଚନା ହୁଏ ପଢ଼ିଥିବା ବହି, ଲେଖକଙ୍କ ବିଷୟରେ । ଆମ ସହିତ ମିଶିଲେ ଅନ୍ୟ କେତେକ ବନ୍ଧୁ - ପୂର୍ଣ୍ଣାନନ୍ଦ ଦାସ (ତାଳଚେର କଲେଜର କର୍ମଚାରୀ) ସ୍ୱର୍ଗତ ସୁଧାଂଶୁ ମିଶ୍ର, ଲକ୍ଷ୍ମୀନାରାୟଣ ପ୍ରସାଦ (ବର୍ତ୍ତମାନ ତାଳଚେର ଡାକ୍ତରଖାନାର ସୁନାମଧନ୍ୟ ଡାକ୍ତର) ସୁଧାକର ରାୟ (ନିକଟରେ ଅବସର ନେଉଥିବା ଅତିରିକ୍ତ ବାଣିଜ୍ୟକର କମିଶନର) ଶ୍ରୀଯୁକ୍ତ ବିଭୂତିଭୂଷଣ ମିଶ୍ର(ଅବସରପ୍ରାପ୍ତ ଶିକ୍ଷାବିତ୍) ତଥା ଯଦୁମଣି ସାହୁ (ତାଳଚେରର ବିଖ୍ୟାତ ଆଇନ୍‌ଜୀବୀ) ଓ ଅନ୍ୟ ଅନେକ । କ୍ରମଶଃରୁ କ୍ରମଶଃ ଆସର ବଢ଼ିଲା । ଘମାଘୋଟ ଆଲୋଚନା, ତର୍କ, ବିତର୍କ ଚା' କପ୍‌ରେ ଝଡ ।

ବ୍ରାହ୍ମଣୀ ନଦୀରେ ଗାଧୁଆ । ନଈ ପହଁରା । ଥଳକୂଳ କିଛି ନଥାଏ । ଖାଲି ଆଡ୍‌ଭେନ୍‌ଚର । ବଣଭୋଜି । ନାଟ, ତାମସା, ଦେଖା : ତା' ସହିତ ପାଠ ପଢ଼ା । ପାଠରେ ସମସ୍ତେ ଆଗୁଆ । ଶିକ୍ଷକମାନଙ୍କର ପ୍ରିୟ ଛାତ୍ର । ସତେଅବା ଜୀବନ, ଯୌବନ ବିଛେଇ ଦେଇଥିଲା ଆମ ପାଇଁ ଅନେକ ସ୍ୱପ୍ନ ଓ ସମ୍ଭାବନା ।

ଅଚ୍ୟୁତ ପିଲାଦିନେ ସାଇକେଲ ଚଳେଇଲେ - ଯିଏ ତା'ସହିତ ବସୁଥିଲା ପ୍ରାଣ ବିକଳରେ ଥରୁଥିଲା । ସାଇକେଲ ଯେ ପ୍ରଖର ବେଗରେ ଗଡିପାରେ - ତା'ର ସାକ୍ଷୀ ଅଚ୍ୟୁତ - ଅତି ବେଗରେ ସାଇକେଲ ଚଲାଏ - ଚିନ୍ତା ନାହିଁ - କେତେବେଳେ କ'ଣ ହେବ - ସେ ସଦାବେଳେ ସାହସୀ - 'ଚ୍ୟାଲେଞ୍ଜକୁ ଆହ୍ୱାନ କରିବାରେ ଚିର ଆଗ୍ରହୀ ।

ଇଏ ମାତ୍ର କେତୋଟି ଉଦାହରଣ .... । ଆମେ ଥିଲୁ ଖୋଲା ବହି - ଦୁଇଜଣଯାକ - ସତରେ କ'ଣ "କାହାର ପ୍ରେମ"ରେ

ପଡିନଥିବୁ ? କିଏ ଆମକୁ ଅପେକ୍ଷା କରି ରହୁନଥିଲେ ? ନଚେତ୍ ଶ୍ରୀଯୁକ୍ତ ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସ ଆମକୁ ବେଳେବେଳେ ପଢ଼ିବାକୁ କାହିଁକି ଭଲ ଲାଗୁଥିଲା - ପ୍ରେମ କରୁଥିଲୁ - କିନ୍ତୁ ସତରେ - ଆଜି ପ୍ରେମିକାଙ୍କର ନାଁ ମନେ ନାହିଁ - ବ୍ରାହ୍ମଣୀ ନଈର ବଢ଼ିଭଳି କୂଳ କେତେବେଳେ ଖାଇଯାଇଛି । ଅନ୍ୟବେଳେ ନଈର ପାଣିରେ ଜ୍ୟୋସ୍ନା ବିହାର ହୋଇଛି ଆମର । ଛୋଟ ବୟସ । ସ୍ମୃତି ରାତିର ସ୍ୱପ୍ନଭଳି ଉଭେଇଯାଇଛନ୍ତି କାହିଁ କେତେ ଦିନୁ... ।

ଅତି ଅଳ୍ପ ବୟସରୁ ଆମେ କବିତା, ଉପନ୍ୟାସ, ଗଳ୍ପ ପ୍ରତି ଆଗ୍ରହ ପ୍ରକାଶ କରିଥିଲୁ । ଆମ ପାଇଁ ଖୋଲା ଥିଲା ବିରାଟ ପାଠାଗାର । ଆଲମିରା ଆଲମିରା ବହି - ଓଡ଼ିଆ - ଇଂରାଜୀରେ ଲିଖିତ ବହି । ବୁଝୁ ନ ବୁଝୁ ପଢ଼ି ଚାଲିଲୁ । ରୋମାଞ୍ଚିତ ହେଲୁ । ସ୍ୱପ୍ନ ବିଳାସୀ ହେଲୁ । ଯୌବନର ମାଦକତା ଭରିଦେଲା ଆମ ଜୀବନରେ ମହୁଲ ଫୁଲର ବାସ୍ନା । ଆମେ ହୋଇଗଲୁ କବି - ଦାର୍ଶନିକ । ସତେଅବା ପ୍ରବୃଦ୍ଧ ମଣିଷ - ଯଦିଓ ଯୌବନ ହାତଧରି ବାଟଚଲା ଶିଖାଉଥିଲା ଆମକୁ ........ ।

ଅଚ୍ୟୁତ ଦାସ ପାଠ ପଢ଼ିବାକୁ କଟକ, ରେଭେନ୍‌ସା କଲେଜ ଗଲେ । ତା'ପରେ ବାଣୀବିହାର । ସେଇ କଲେଜ ଜୀବନର ସ୍ମୃତି, ସାଥୀମାନଙ୍କ କଥା ଅଧିକରୁ ଅଧିକ ରହିଛି - ଏଇ ବହିଟିରେ । ଚେତନା ପ୍ରବାହରେ ସେ କେଉଁଆଡେ ଭ୍ରମଣ ନ କରିଛନ୍ତି

ତାଳଚେର ବ୍ରାହ୍ମଣୀ ନଈ କୂଳରୁ ହିମାଳୟ, ଗଙ୍ଗୋତ୍ରୀ, ବଦ୍ରିନାଥ - ବୌଦ୍ଧ ସ୍ତୂପ । ପୁରୀର ବେଳାଭୂମିରୁ ରାମେଶ୍ୱର...... । ଓଡ଼ିଶା, ଭାରତ ଦେଇ ଇଂଲଣ୍ଡ, ହଲାଣ୍ଡ, ଜର୍ମାନ୍ ଇତ୍ୟାଦି ଦେଶକୁ । ସବୁଠି ଭେଟିଛନ୍ତି ମଣିଷଙ୍କୁ - ପ୍ରିୟଜନଙ୍କୁ ।

ଏଇ ବହିରେ ଆମେ ପରିଚିତ ହେଉ ବେଦ, ଉପନିଷଦ, ବ୍ରହ୍ମସୂତ୍ର, ଜଗନ୍ନାଥ ଦାସଙ୍କ ଭାଗବତ ସହିତ । ସେ ଅଭିଯାତ୍ରୀ । ଯାତ୍ରାରେ ଏକାକୀ । ଏକାକୀ ପଣରେ 'ଭଲପାଇବା' ନଥିଲେ - ଜଣେ କିପରି ଯାତ୍ରୀଟିଏ ହୋଇପାରିବ ? ସତରେ ଏକୁଟିଆ ମଣିଷଟିଏ - ଏକାକୀପଣରେ ଅନ୍ୟକୁ ଭଲପାଏ ଓ ସେ ଭଲପାଇବାର ଅନ୍ତ ନଥାଏ । ବୁଦ୍ଧଙ୍କ ନିକଟକୁ ଫେରିବା : ବୁଦ୍ଧ ବାଟ ଚାଲୁଥିଲେ । ବୁଦ୍ଧଙ୍କ ବିଷୟରେ ଆଶା, ନିରାଶା, ଆନନ୍ଦ, ନିରାନନ୍ଦ ସହିତ ଜଣେ ଯଦି ପରିଚିତ ହେବାକୁ ଚାହେଁ - ତା'ର ଅନ୍ୱେଷଣ ଅବ୍ୟାହତ ରହୁ - ଏହି ଅନ୍ୱେଷଣରୁ ଫେରି ଆସିବାର ପ୍ରଶ୍ନ ନାହିଁ ।

ଆଲୋଚିତ ଆଲୋଚନାରେ ଜନ୍ମ, ମୃତ୍ୟୁର ଅବତାରଣା କରାଯାଇଛି - ଶ୍ରୀ ଦାସ ଅତି ପ୍ରାଞ୍ଜଳ ଭାବରେ ଜୀବନ, ମୃତ୍ୟୁ ବିଷୟରେ ବର୍ଣ୍ଣନା କରିଛନ୍ତି ।

ଆଲୋଚନାରେ ଆଦି ଶଙ୍କରଙ୍କ ସହିତ ଆମେ ପରିଚିତ ହେବା । ପୃଥିବୀକୁ ଶଙ୍କର କହୁଥିଲେ - ସତେଅବା ଗୋଟିଏ ସହର - ଯାହାକୁ ଦର୍ପଣରେ ଦେଖିହେବ । ତୁମେ ଯେତେଯେତେ ଅନ୍ୱେଷଣର ଭିତରକୁ ଯିବ, ତୁମ ବିଷୟରେ ସେତିକି ଅଧିକ ତୁମେ ଜାଣିପାରିବ । ଜନ୍ମ, ମୃତ୍ୟୁ - "ସତାହୀନ" ଧାରଣାର ଗୋଟିଏ ଗୋଟିଏ ପ୍ରହେଳିକା, ମନର ଭୂଗୋଳରେ ସ୍ନେହ, ସମ୍ପର୍କ ଅତେଅବା ଗୋଟିଏ ଗୋଟିଏ ଚିହ୍ନିତ ବିନ୍ଦୁ ।

ଜୀବନ ଗୋଟିଏ କବିତା ନୁହେଁ - ଏକ ସାହସିକ ଯନ୍ତ୍ରଣା । ଲେଖାଗୁଡ଼ିକରେ ପାଠକ ମନ-ବୁଦ୍ଧି-ଅଂହକାର, ଆତ୍ମା, ପରାମାତ୍ମାଙ୍କ ସହିତ ସାକ୍ଷାତକାର କରିବ । ସୁଖ, ଦୁଃଖର ସଂଖ୍ୟା ସହିତ ଭେଟ ହେବ । ପ୍ରିୟଜନଙ୍କ ମୃତ୍ୟୁ - ମୃତ୍ୟୁଜନିତ ଶୋଚନା ସହିତ ମଧ୍ୟ ପରିଚିତ ହେବ ।

ଅନେକ ସ୍ଥଳରେ ଲେଖକ ବେଦାନ୍ତ, ଶ୍ରୀରାମକୃଷ୍ଣ, ବିବେକାନନ୍ଦଙ୍କ ବିଷୟରେ ମାର୍ମିକ ଆଲୋଚନା କରିଛନ୍ତି - ବିଶ୍ୱଚିନ୍ତା ଓ ଚେତନାର ପରିପ୍ରେକ୍ଷୀରେ' - ଆମେ ଖ୍ରୀଷ୍ଟଫୋର ଆଇସରଉଡ, ରୋମା ରୋଂଲାଙ୍କୁ ଜାଣିବା - ଏଇ ପ୍ରାଚ୍ୟର ସନ୍ଥମାନଙ୍କ ଜୀବନୀ ଓ ବାଣୀ ସମ୍ବନ୍ଧରେ ସେମାନଙ୍କ ଲିଖିତ ପୁସ୍ତକରୁ ।

ଯାତ୍ରା ଆରମ୍ଭ ହୋଇଛି 'ସତ୍ୟ ସନ୍ଧାନୀ' ମନ ନେଇ । ସତ ହେଉଛି ସରଳ ଓ ମଧୁର । ସତର ସନ୍ଧାନେ ହୋଇଛି ଦୂର, ଦୂରାନ୍ତର ଯାତ୍ରାକୁ ନେଇ । କପିଳାସରୁ ହିମାଳୟ - ବ୍ରାହ୍ମଣୀ କୂଳରୁ ଗଙ୍ଗାଯାଏ । ସତ୍ୟ ସହିତ ଅନେକ ଭେଟ ହୋଇଥିବେ - କିନ୍ତୁ ଆଖିର ସ୍ତର ଦେଇ କିଏ ସତ୍ୟକୁ ଦେଖିଛି ? ଏଣୁ 'ସତ୍ୟ' କଣ କିଏ କହିବ ? ଏପରିକି ବୈଜ୍ଞାନିକମାନେ ମଧ୍ୟ ସତ୍ୟକୁ ସାକ୍ଷାତ କରିନାହାନ୍ତି ? ଲେଖକ ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକମାନଙ୍କ ବିଷୟରେ ଅନେକ ଆଲୋଚନା କରିଛନ୍ତି କେତେକ ଲେଖାରେ ।

ବିଷ୍ଣୁ ଓ ନାରଦଙ୍କ 'ରୂପକଛ ଦେଇ ଲେଖକ ମାୟା ସମ୍ବନ୍ଧରେ ପାଠକଙ୍କ ନିକଟରେ ପହଁଚିଛନ୍ତି ।

'ଶୂନ୍ୟତା' ସହିତ ପାଠକ ପରିଚିତ ହେବ – ଯାତ୍ରାର କିଛିବାଟ ଗଲାପରେ । ମୋ ବିଚାରରେ ଶୂନ୍ୟ ଯେକୌଣସି ସଂଖ୍ୟା ରଚିପାରିବ । ଶୂନ୍ୟରୁ ସବୁକିଛିର ନିର୍ମାଣ । 'ଶୂନ୍ୟ'ର ବିନା ସହାୟତାରେ ସଂଖ୍ୟା ଗଢ଼ାଯାଇ ପାରିବ ନାହିଁ । ଅନୁରୂପ ଭାବରେ ଦର୍ଶନର କଥାକୁ ବିଚାରକୁ ନେବା । 'ବେଦାନ୍ତ' ସବୁର ଉତ୍ସ । 'ଶୂନ୍ୟ'ର ବିଚାର ନଦେଇ ତୁମେ ବେଦାନ୍ତ ନିକଟରେ ପହଁଚି ପାରିବ ନାହିଁ । ଶୂନ୍ୟ ହେଉଛି ଅବ୍ୟକ୍ତିକ କିନ୍ତୁ ଏକ, ଦୁଇ, ତିନି ଇତ୍ୟାଦି ହେଉଛନ୍ତି ଦ୍ୱିବିଧ । ଏଇଠି ଆମ ଆଗରେ ଲେଖକ ଠିଆ କରାଇଛନ୍ତି - ଅତିମାନବଙ୍କୁ, ଯରାଥୁଷ୍ଟ୍ରୋଙ୍କୁ, ଫାଦର ଯସୀମାଙ୍କୁ..... । ନିତ୍‌ସେ, କିରେକଗାର୍ଡ଼୍, ଡେକାର୍ଟ, ସାର୍ତ୍ତ, କାମ୍ୟୁ, ଟଲଷ୍ଟୟ, ଦସ୍ତୋଭସ୍କିଙ୍କୁ । ଇଭାନ୍, ଆଲ୍ୟେସା, ରାସକଲ୍‌ନିକଭ, ଏରିକ୍ ମେରିୟା ରିମାର୍କଙ୍କୁ : କାର୍ଲସ କାଷ୍ଟଣ୍ଡାଙ୍କ ଡନ୍‌ଜୁଆନକୁ ।

ପାପ, ପୂଣ୍ୟର ସଂଗ୍ୟା ଦେଇ ଆମେ ପହଁଚୁ "ଚିତ୍ର ଲେଖା" "ଅମାବାସ୍ୟାର ଚନ୍ଦ୍ର" ଉପନ୍ୟାସ ଓ ଭଗବତୀ ଚରଣ ବର୍ମା, ବାରିଷ୍ଟର ଗୋବିନ୍ଦଦାସଙ୍କ ପାଖରେ : ଚିତ୍ରଲେଖା, ବିଜିଗୁପ୍ତ, କୁମାରଗିରି, ରମେଶ କାଉଲ, ବଧୂ ମନୀଷା – ପାପ ପୂଣ୍ୟର ଆବର୍ତ୍ତନ ଦେଇ ପାଠକ ସହିତ ମୁହାଁମୁହିଁ ହୁଅନ୍ତି ନିଜ ନିଜର ପରିଚିତି ନେଇ । ଆଲୋଚକ, ପୁରାଣବର୍ଣ୍ଣିତ ଅନେକ ଚରିତ୍ର ଆମ ନିକଟରେ ଉପସ୍ଥାପନ କରିଛନ୍ତି । ପଥର ଅନ୍ୱେଷଣ ମରୁଭୂମିରେ ହଜିବା ସଦୃଶ । ମରୁଭୂମିରେ ଥାଇ କେବଳ ଆକାଶର ତାରାମାନଙ୍କୁ ଦେଖିହୁଏ – ସେଇ ତାରାମାନଙ୍କ ମଧ୍ୟରେ ସତେଅବା ଗୋଟିଏ ତାରାର ସନ୍ଧାନ ମିଳିଯାଏ । ମୁଣ୍ଡ ଉପରେ ଆକାଶ ।

ଶ୍ରୀ ଅଚ୍ୟୁତ ଦାସ ଦୈନିକ ଖବର କାଗଜ "ପର୍ଯ୍ୟବେକ୍ଷକ"ର ସାପ୍ତାହିକ ସ୍ତମ୍ଭର ଗୋଟିଏ ଶୀର୍ଷକରେ ବହିରେ ଥିବା ଆଲୋଚନା ଗୁଡିକ ଲେଖିଥିଲେ । ଧର୍ମ, ଦର୍ଶନ, ବିଜ୍ଞାନ, କଳା, ସାହିତ୍ୟ ଇତ୍ୟାଦି ବିଷୟରେ ସେ ମନୋନିବେଶ କରିଛନ୍ତି । ଦେଶ, ବିଦେଶର ସ୍ୱନାମଧନ୍ୟ ଲେଖକମାନଙ୍କ ବିଷୟରେ ଆଲୋକପାତ କରିବା ସହିତ ବିସ୍ତୃତ ପୁସ୍ତକର "ଆଲୋଚନା ମଧ୍ୟ କରିବାକୁ ପଛେଇ ନାହାନ୍ତି । ଓଡ଼ିଶାର ଲବ୍ଧପ୍ରତିଷ୍ଠ ଲେଖକ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସଙ୍କ ଶିଳାତୀର୍ଥ ଭ୍ରମଣ ପୁସ୍ତକରୁ ଶ୍ରୀ ଅଚ୍ୟୁତ ଦାସଙ୍କ ଯାତ୍ରାର ଆରମ୍ଭ । ଏ ଯାତ୍ରା ସୁଦୂରପ୍ରସାରୀ ! ପୂଣ୍ୟ ଅର୍ଜନ ନୁହେଁ – ସତ୍ୟ ଅନ୍ୱେଷଣ । ଜୀବନ ଜାହ୍ନବୀର ସନ୍ଧାନ । ଏଇ ସନ୍ଧାନରେ ଏକଦା ଚଲା ବାଟର ସାଥୀ, ଯେଉଁମାନେ ଉଚ୍ଚପଦବୀରେ ଆଜି ଅବସ୍ଥାପିତ ତାଙ୍କ ପରିଚୟ ମିଳିବା ସହିତ" ଲେଖକ, ଆଜି ଯାହା ହୋଇଛନ୍ତି ରହିଁଥିଲେ ଅକ୍ଳେଶରେ ସେପରି ସ୍ଥାନରେ ପହଁଚି ପାରିଥାଆନ୍ତେ" ବୋଲି ମତ ଉପସ୍ଥାପନ କରିବାକୁ ପଛେଇ ନାହାନ୍ତି । ପ୍ରିୟ ଶିକ୍ଷକ, ପ୍ରଫେସରମାନଙ୍କୁ ଭୁଲି ନାହାନ୍ତି । ନିଜ ଜନ୍ମସ୍ଥାନ ତାଳଚେରକୁ ବି ଭୁଲି ନାହାନ୍ତି । ଭୁଲି ନାହାନ୍ତି ପ୍ରିୟଜନଙ୍କୁ ।

ସେ ଭୟଙ୍କର ଭାବରେ ଜନୈକ ବୌଦ୍ଧିକ ମଣିଷ : ଅସାଧାରଣ ଧୀସଂପନ୍ନ ପାଠକ । ବହିର ପୃଥିବୀରେ ସେ ଅବଗାହନ କରୁଛନ୍ତି ସ୍କୁଲ ସମୟରୁ ଆଜି ପର୍ଯ୍ୟନ୍ତ ।

ଆଲୋଚିତ ପୁସ୍ତକଟିର ପୃଷ୍ଠଭୂମି ବିସ୍ତୃତ । ସନ୍ତର୍ପଣର ସହିତ ପ୍ରତିଟି ଆଲୋଚନା ସହିତ ବାଟ ନଚାଲିଲେ କୂଳକିନାରା ପାଇ ହେବ ନାହିଁ । ଚିନ୍ତାର ଦିଗ୍‌ଦିଗନ୍ତରେ ତନ୍ମୟ ହେବାକୁ ହୁଏ - ଅପୂର୍ବ ଶିହରଣରେ ! ନୂତନ ଆଲୋକରେ ! ଅନୁଭବର ପ୍ରାଚୁର୍ଯ୍ୟରେ । ଅବନତ ହେବାକୁ ହୁଏ ଏଇ ପ୍ରଜ୍ଞା ଓ ଏହାର ସ୍ରଷ୍ଟାଙ୍କ ନିକଟରେ ।

ମୋର ବ୍ୟକ୍ତିଗତ ଅଧ୍ୟୟନର ସମୟ ସୀମା ଦୀର୍ଘ ଚାଳିଶ ବର୍ଷରୁ ଅଧିକ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ, ଦର୍ଶନ, ଜ୍ଞାନ, ବିଜ୍ଞାନକୁ ଜାଣିବାକୁ ସଦା ଉତ୍ସୁକ । ମୋର ଉତ୍ସୁକମନ ଆଜି ମଧ୍ୟ କ୍ଲାନ୍ତ ହୋଇନି - ଜାଣିବାର ଅନ୍ୱେଷଣରେ - ।

ଓଡ଼ିଆ ଭାଷା ସାହିତ୍ୟରେ ଏଇ ବହି ଅନନ୍ୟ ସମ୍ମାନର ଅଧିକାରୀ, ଏପରି ଆଲୋଚନାତ୍ମକ ଲେଖା, ଓଡ଼ିଆ ସାହିତ୍ୟରେ ଏଯାବତ୍ ଖୋଜିଲେ ମିଳିବ ନାହିଁ । ଭାଷା ସାବଲୀଳ, ଭାବ ଗାମ୍ଭୀର୍ଯ୍ୟରେ ଶବ୍ଦ ଗୁଡିକ ସୁସଜ୍ଜିତ । ଜଣେ ଜୀବନ ଜିଜ୍ଞାସୁ ପଥିକ - ଅନ୍ୱେଷଣର କେଉଁଠି ପହଁଚିପାରେ, ତାହାର ଜ୍ୱଳନ୍ତ ଉଦାହରଣ ନିରୋଳା ଓଡ଼ିଆ ଭାଷାରେ ଲିଖିତ ଆଲୋଚନା ଗୁଡିକ । ପଥଭ୍ରାନ୍ତିର ସୂଚନା ବେଳେବେଳେ ଦେଉଥାଏ । ବାଟ ନଚାଲି, ଥକା ମାରି ବସିଯାଇଥିବା ମଣିଷ ବାଟ ଚଲାର ସ୍ୱାଦ ପାଏ ନାହିଁ । - "ଭ୍ରାନ୍ତି" ସହିତ ପରିଚିତ ହୁଏ ନାହିଁ । ଲେଖକ ବାଟ ଚାଲୁଛନ୍ତି - ତାଙ୍କର ଖୋଜିବା ଶେଷ ହୋଇନାହିଁ । ସେ ଆମ ସମୟର ଜନୈକ ସର୍ଜନଶୀଳ ଲେଖକ । ତାଙ୍କ ଲେଖାରେ ମୌଳିକତା ଭରି ରହିଛି । ଆରୋହଣ, ସଂଶ୍ଳେଷଣ, ଉପସ୍ଥାପନ ଶୈଳୀ ସ୍ୱଚ୍ଛ ।

ତରୁଣ ପାଠକ, ପାଠିକାମାନେ ବହିଟି ପଢ଼ି ଯଥେଷ୍ଟ ଉପକୃତ ହେବେ, ଆଶା ରହିଛି । ଏକଦା ଜଣେ ତରୁଣ - "ଜିଜ୍ଞାସାରୁ ଜୀବନ ଯାତ୍ରା ଆରମ୍ଭ କରି କିପରି ପ୍ରଂଗ୍ୟାର ଉଚ୍ଚଶିଖରରେ ପହଁଚି ଥିଲେ ସେସବୁର ଏହା ଏକ ଦସ୍ତାବିଜ୍ । ପଥଭ୍ରାନ୍ତରୁ ଯାତ୍ରା ଆରମ୍ଭ ପଥ ସହିତ ପରିଚୟ ହେବାରେ ଯେଉଁ ଆନନ୍ଦ ସେ ପାଇଛନ୍ତି - ତାହାର ଛଟା ବର୍ଣ୍ଣିଳ ! ଅନିର୍ବଚନୀୟ ।

**ପ୍ରଫୁଲ୍ଲ ବେହେରା**

# ଯାହା ନ କହିଲେ ମଧ୍ୟ ଚଳିବ

ଅଚ୍ୟୁତ ଦାସଙ୍କର 'ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକ'ର ପୁସ୍ତକ ଆକାରରେ ପ୍ରକାଶିତ ହେବାକୁ ଯାଉଛି । ଏହା ତାଙ୍କର ଶୁଭେଚ୍ଛୁମାନଙ୍କ ପାଇଁ, ବିଶେଷ ଭାବରେ ମୋ ପାଇଁ ଏକ ବହୁଦିନର ଆଶା ପୂରଣ ହେବା ପରି । ଏହି ବହିଟିରେ ଯେଉଁ ପ୍ରବନ୍ଧ ଗୁଡିକ ରହିଛି, ସେଗୁଡିକ କ୍ରମାଗତ ଭାବେ ଦୈନିକ ଖବର କାଗଜ ପୃଷ୍ଠାରେ ବାହାରିଛି । ମୁଁ ମଧ୍ୟ ସେଗୁଡିକ ମଧ୍ୟରୁ କେତୋଟି ପଢ଼ିଛି । କିନ୍ତୁ ସାମଗ୍ରିକ ଭାବରେ ସେଗୁଡିକ ଦେଖିବାର ଓ ପଢ଼ିବାର ସୁଯୋଗ ମିଳିବ ଏଇ ବହିଟିରେ । ପାଠ ପଢ଼ା ସମୟରେ, ବିଶେଷତଃ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ପଢ଼ିବା ସମୟରେ ଯେଉଁ ସବୁ ବହି ପଢ଼ିବାକୁ ସୁଯୋଗ ମିଳିଥିଲା ଏବଂ ଯେଉଁ ସବୁ ଚିନ୍ତା ଓ କଳ୍ପନା ହୃଦୟକୁ ଆନ୍ଦୋଳିତ କରୁଥିଲା, ପରବର୍ତ୍ତୀ ଜୀବନର ଅନୁଭୂତିର କଷଟିରେ ସେଗୁଡିକର ପୁନଃ ଅନୁଶୀଳନ ଏଇ ଆତ୍ମକଥାର ବିଶେଷ ପରିଚିତି । ଏ ଦୃଷ୍ଟିରୁ ଦେଖିଲେ ପୁସ୍ତକଟିକୁ ଅସାଧାରଣ ଶ୍ରେଣୀର ବୋଲି କୁହାଯାଇ ପାରିବ ।

ବ୍ୟକ୍ତିଗତ ଦୃଷ୍ଟିରୁ କହିବାକୁ ଗଲେ ମୋ ପାଇଁ ଏହି ପୁସ୍ତକଟିର ପ୍ରକାଶନ ଏକ ସ୍ୱପ୍ନ ଚରିତାର୍ଥ ହେବାପରି । ବିଭିନ୍ନ ପ୍ରବନ୍ଧରେ ଶ୍ରୀ ଅଚ୍ୟୁତ ଦାସ ଯେଉଁ ପ୍ରଶ୍ନ ସବୁ ଉଠାଇଛନ୍ତି, ଯେଉଁ ଦର୍ଶନର ଆଲୋଚନା କରିଛନ୍ତି ଏବଂ ପୁସ୍ତକମାନଙ୍କର ସମୀକ୍ଷା କରିଛନ୍ତି ତାହା ଥିଲା ରେଭେନ୍ସା କଲେଜରେ ଷାଠିଏ ଦଶକର (ବିଂଶ ଶତାବ୍ଦୀ) ଶେଷ ଭାଗ ଓ ସତୁରୀ ଦଶକର ଆଦ୍ୟ ଭାଗରେ ଆମ ସମସାମୟିକ ବନ୍ଧୁମାନଙ୍କର ସ୍ମୃତି ରୋମନ୍ଥନ ସଦୃଶ । ସେ ସମୟ ଥିଲା ହାତକୁ ଆସୁଥିବା ବହିଗୁଡିକୁ ପଢ଼ିବା, ପୁସ୍ତକର ଚରିତ୍ରମାନଙ୍କ ସହିତ ଏକାତ୍ମ ହୋଇଯିବା ଏବଂ ଜୀବନକୁ ନୂଆ ଭାବରେ ଅନୁଭବ କରିବା ପାଇଁ ଚେଷ୍ଟା କରିବା । ଆଲୋଚନା ଚାଲେ, ଯାହାର ପ୍ରାୟ ଶେଷ ନଥାଏ । ତା'ପରେ ପୁଣି ଚିଠି ମାଧ୍ୟମରେ କଥୋପକଥନ ଚାଲେ । ଅସରନ୍ତି ବାର୍ତ୍ତାଳାପ । ଏଇ ସବୁ ତର୍କ ସମ୍ପର୍କରେ ଶ୍ରୀ ଦାସ ତାଙ୍କର ପ୍ରଥମ ପ୍ରବନ୍ଧରେ ହିଁ ଉଲ୍ଲେଖ କରିଛନ୍ତି । ସେହି ସମୟରୁ ହିଁ ସ୍ୱପ୍ନ ଥିଲା ଲେଖିବା ଏବଂ ଲେଖା ମାଧ୍ୟମରେ ପାଠକମାନଙ୍କ ଭାବ ବିନିମୟକୁ ସଂପ୍ରସାରିତ କରିବା । ବିଳମ୍ବରେ ହେଲେ ମଧ୍ୟ ଏତେ ବିଷୟରେ ଏତେ କଥା ଲେଖାଯାଇପାରିଲା, ସେଥିପାଇଁ ଲେଖକ ପ୍ରଂଶସା ପାଇବା ପାଇଁ ଯୋଗ୍ୟ ।

ପ୍ରବନ୍ଧଗୁଡିକୁ ଆତ୍ମକଥାର ଆଖ୍ୟା ଦେଇଥିଲେ ମଧ୍ୟ ବାସ୍ତବରେ ସେଗୁଡିକ ଲେଖକଙ୍କର ବିଭିନ୍ନ ସ୍ଥାନ, ବ୍ୟକ୍ତି, ପୁସ୍ତକ ଓ ଜୀବନ ଦର୍ଶନ ସମ୍ପର୍କରେ ତାଙ୍କର ଆତ୍ମବିଭୋର ରୋମନ୍ଥନ । ସେ ଅରୁଣାଚଳ ପ୍ରଦେଶର ଉତ୍ତୁଙ୍ଗ ପର୍ବତମାଳା ମଧ୍ୟରେ ଥିବା ତାଓ୍ୱାଙ୍ଗ ମୋନାଷ୍ଟରିକୁ ଯାଇଛନ୍ତି ଏବଂ ଛତିଶଗଡ଼ର ଆଦିବାସୀମାନଙ୍କ ଜୀବନଧାରାକୁ ଲକ୍ଷ୍ୟ କରିଛନ୍ତି । କେତେବେଳେ ଆଣ୍ଡାମାନ ଉପସାଗରର ପ୍ରବାଳ ଦ୍ୱୀପ ତାଙ୍କୁ ଅବାକ୍ କରିଛି ତ ଆଉ କେତେବେଳେ ରାଜସ୍ଥାନର ମରୁଭୂମି ତାଙ୍କୁ ରୋମାଞ୍ଚିତ କରିଛି । ଲେଖାଗୁଡିକରେ ଈଶ୍ୱରଙ୍କ ସ୍ଥିତି ସମ୍ପର୍କରେ ପ୍ରଶ୍ନ କରାଯାଇଛି ଏବଂ ପାପ ଓ ପୁଣ୍ୟର ବ୍ୟାଖ୍ୟା କରାଯାଇଛି । ଏଥିରେ ଜୀବନ କଥା ରହିଛି; ମୃତ୍ୟୁ ବିଷୟରେ ମଧ୍ୟ ଆଲୋଚନା କରାଯାଇଛି । ପର୍ବତ

ଦେଖି ଲେଖକ ଯେତିକି ଅନୁପ୍ରାଣିତ ହୋଇଛନ୍ତି, ସମୁଦ୍ର ତାଙ୍କୁ ସେତିକି ପ୍ରଭାବିତ କରିଛି । ମୁଖ୍ୟତଃ ଗଦ୍ୟ ରଚନା ହୋଇଥିଲେ ମଧ କେତେବେଳେ କେମିତି ସେ କବିତା ରାଜ୍ୟରେ ମଧ ବିଚରଣ କରିଛନ୍ତି । ବିଜ୍ଞାନର ଛାତ୍ର ଥିବାରୁ ପ୍ରକୃତିର ନିୟମକୁ ସେ ସହଜରେ ବୁଝିଛନ୍ତି । ଏବଂ ସାହିତ୍ୟରେ ଆଗ୍ରହ ଥିବାରୁ କଳ୍ପନା ଜଗତରେ ମଧ ବାରମ୍ବାର ହଜିଛନ୍ତି । ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦର୍ଶନକୁ ଅଧୟନ କରି ନିଜ ଜୀବନ ଜିଜ୍ଞାସାରେ ସେ ବ୍ୟବହାର କରିଛନ୍ତି । ମୋର ମନେହୁଏ ଦସ୍ତୋଭସ୍କି ଓ କାମ୍ୟୁଙ୍କୁ ସେ ଯେତିକି ବୁଝିଛନ୍ତି, ସେତିକି ଅନୁରାଗରେ ଅଧୟନ କରିଛନ୍ତି ମହାତ୍ମାଗାନ୍ଧୀ ଓ ଗୋପୀନାଥ ମହାନ୍ତିଙ୍କୁ । ଯେଉଁମାନେ ତାଙ୍କ ଜୀବନ ଜିଜ୍ଞାସାର ସାଥୀ ଭାବରେ ଉଭା ହୋଇଛନ୍ତି ବିଭିନ୍ନ ସମୟରେ, ସେମାନେ ସବୁଦିନ ପାଇଁ ତାଙ୍କର ଅନ୍ତରଙ୍ଗ ହୋଇଯାଇଛନ୍ତି ।

ଅଚ୍ୟୁତ ଦାସ ନିଜକୁ ଜଣେ ପଥଭ୍ରାନ୍ତ ପରିବ୍ରାଜକ ବୋଲି କଳ୍ପନା କରିଛନ୍ତି । ଜୀବନରେ ମଣିଷ ବେଳେବେଳେ ଇଚ୍ଛାକୃତ ଭାବେ ବାଟ ଭୁଲିଯାଏ । ଯାହା ଅନ୍ୟ କେହି କରିନାହାନ୍ତି ସେପରି କିଛି କରିବା ଏବଂ ଯେଉଁ ରାସ୍ତାରେ ଅନ୍ୟ କେହି ଯାଇନାହାନ୍ତି ସେହି ରାସ୍ତାରେ ଚାଲିବାର ଦୁର୍ବାର ଆକାଂକ୍ଷା ଅଚ୍ୟୁତ ଦାସଙ୍କର ଥିବା କଥା ମୁଁ ଜାଣେ । ସତ କହିବାକୁ ଗଲେ ସେ ପଥଭ୍ରାନ୍ତ ନୁହନ୍ତି, ବରଂ ବିଭିନ୍ନ ପଥ ଖୋଜିବା ବେଳେ ନିଜର ଏକ ସ୍ଥିର ଲକ୍ଷ୍ୟରେ ମଧ ତାଙ୍କର ଦୃଷ୍ଟି ନିବଦ୍ଧ ରହିଆସିଛି । ଏହା ନହୋଇଥିଲେ ବହୁ ବର୍ଷ ପୂର୍ବର ନିଜ ଅନୁଭୂତିକୁ ଲିପିବଦ୍ଧ କରିବାର ପ୍ରତିଶ୍ରୁତିକୁ ସେ ପୂରଣ କରିପାରିନଥାନ୍ତେ ।

ବିଶିଷ୍ଟ ଦାର୍ଶନିକ ମାର୍ଟିନ୍ ବୁବ୍ର୍ ମହାନ୍ ଶିକ୍ଷୀମାନଙ୍କୁ ଦର୍ଶକ ଭାବେ ବର୍ଣ୍ଣନା କରିଛନ୍ତି । ବୁବ୍ର କେବଳ ମଣିଷ ବିଷୟରେ ସଚେତନ ନଥିଲେ, ପଶୁ, ପକ୍ଷୀ, ବୃକ୍ଷଲତା ଏପରିକି ପଥର ଖଣ୍ଡ ପ୍ରତି ମଧ ସଚେତନ ଥିବା କଥା ଉଲ୍ଲେଖ କଲାବେଳେ ସେ କହିଥିଲେ 'No kind of appearance or event is fundamentally excluded from the series of the things through which from time to time something is said to me." ଠିକ୍ ସେହିପରି ଯାହା ଦେଖିଛନ୍ତି, ପଢ଼ିଛନ୍ତି ଓ ଅନୁଭବ କରିଛନ୍ତି; ଜଡ ଓ ଜୀବନ୍ତ, ସ୍ଥାଣୁ ଓ ଚଳମାନ - ଏସବୁ ଶ୍ରୀ ଅଚ୍ୟୁତ ଦାସଙ୍କୁ ପ୍ରେରଣା ଯୋଗାଇଛନ୍ତି ଲେଖିବା ପାଇଁ । ଜୀବନକୁ ଅଧିକ ଭଲପାଇବା ପାଇଁ ।

ହର୍ମାନ୍ ହେସେଙ୍କ 'ନଲପ୍' ଉପନ୍ୟାସରେ ଈଶ୍ୱର ନଲପ୍‌କୁ କହିଛନ୍ତି : "I wanted you the way you are and no different you were a wanderer in my name and wherever you went you brought the settled folk a little homesickness for freedom." ଅଚ୍ୟୁତ ଦାସ ଈଶ୍ୱରଙ୍କ ଠାରେ ବିଶ୍ୱାସ ରଖନ୍ତି କି ନାହିଁ ସଠିକ୍ ଭାବରେ କହିହେବ ନାହିଁ । କିନ୍ତୁ ଯଦି କେବେ ଈଶ୍ୱର ତାଙ୍କୁ କିଛି କହିବାର ଅବକାଶ ଥା'ନ୍ତା ସେ ତାହାହିଁ କହିଥାନ୍ତେ ବୋଲି ତାଙ୍କର ଜଣେ ସତୀର୍ଥ ଭାବରେ ମୋର ବିଶ୍ୱାସ । ଆଶାକରେ "ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର" ପାଠକମାନଙ୍କ ଦ୍ୱାରା ଆଦୃତ ହେବ ।

*ଅରବିନ୍ଦ ବେହେରା*

# ସୂଚୀପତ୍ର

**୧**

# ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର (୧)

ଏଇ କେତେମାସ ତଳେ ଆମର କେତେକ ଘନିଷ୍ଠ ବନ୍ଧୁ ଏକାଠି ବସି ତର୍କବିତର୍କ, ଆଲୋଚନା ସମାଲୋଚନା, ଭାବ ବିନିମୟ ଓ ଅଧିଗ୍ରହଣ ପାଇଁ ଯୋଜନା କରି କେତେକାଂଶରେ ସଫଳ ହୋଇଥିଲୁ । ଅବଶ୍ୟ ଚିତ୍ତଭାଇ (ପ୍ରଫେସର ଚିତ୍ତରଞ୍ଜନ ଦାସ)ଙ୍କ ପ୍ରେରଣା ଏହାର ମୂଳରେ ଥିଲା । ଆଲୋଚନା ପର୍ଯ୍ୟାଲୋଚନାର ସରହଦ ସେପାଖେ ଏକ ଅଭିନବ ସମ୍ପର୍କର ଆକର୍ଷଣ ରହିଛି ବୋଲି ଚିତ୍ତଭାଇ ଆମକୁ ମନେ ପକାଇ ଦେଉଥିଲେ ବାରମ୍ବାର । ସମ୍ପର୍କ ରଚିବା ସାମ୍ପ୍ରତିକ ପୃଥିବୀର ଜଟିଳତା ଭିତରେ ବୋଧେ ହୁଏ ସମ୍ଭବ ନୁହେଁ । ଆମେ କିନ୍ତୁ ଦୃଢ଼ ନିଶ୍ଚିତ ଥିଲୁ ଯେ ସଂଳାପ ଓ କଥୋପକଥନ ଜାରି ରହିଲେ ଆମେ ଏକ ନିର୍ଦ୍ଦିଷ୍ଟ ନିଷ୍କର୍ଷରେ ପହଞ୍ଚିପାରିବୁ । ମୁଁ ପ୍ରସ୍ତାବ ଦେଇଥିଲି ଯେ ଏକ ବିକଳ୍ପ ସମାଜର ପରିକଳ୍ପନାରୁ ଆମର ବାର୍ତ୍ତାଳାପ ଆରମ୍ଭ ହେଉ । ଆମେ ଆପଣାର କିଛି ବ୍ୟକ୍ତିଙ୍କୁ ପ୍ରଥମରୁ ଚିହ୍ନଟ କରିଥିଲୁ । ସେମାନଙ୍କର ଏ ଉଦ୍ୟମପ୍ରତି ସମର୍ଥନ ନିଶ୍ଚିତ ରହିବ - ଏଥିରେ ସନ୍ଦେହ ନଥିଲା । ଆମେ ଜାଣିଥିଲୁ କିଛି ବ୍ୟକ୍ତି ନିର୍ଦ୍ଦିଷ୍ଟ ତାରିଖରେ ନିର୍ଦ୍ଦିଷ୍ଟ ସମୟରେ ନିଶ୍ଚୟ ଉପସ୍ଥିତ ହେବେ । କିନ୍ତୁ ବିକଳ୍ପ ସମାଜର ପରିକଳ୍ପନା କ'ଣ ? ସାମ୍ପ୍ରତିକ ସମାଜରେ କ'ଣ ଦୋଷତ୍ରୁଟି ରହିଛି ଯାହାକୁ ଦୂରକରାଯିବା ଆବଶ୍ୟକ ? ଆମେ ସମସ୍ତେ ଅନୁଭବ କରୁଛୁ ଯେ ଆମ ସମାଜରେ ଅନେକ ଅସତ୍ୟ, ଅଶିବ ଓ ଅସୁନ୍ଦର ଭରି ରହିଛି । ରୋଗ ବ୍ୟାଧି ମାଡି ଯାଉଛି । ମାନବ ସୁଲଭ ମୂଲ୍ୟବୋଧର ଅବକ୍ଷୟ ହୋଇଛି । ହସ ଖୁସିର ସମାଜ କହିଲେ ଆଉ ଏବେ କେହି ବୁଝିପାରୁନାହାନ୍ତି । ଅନ୍ୟାୟ ଅନୀତିରେ ଭରି ରହିଥିବା ସମାଜକୁ କେହି ଯେମିତି ଆଉ ଭଲ ପାଇପାରୁନାହାନ୍ତି । ସମାଜ ଭିତରେ ପ୍ରତ୍ୟେକ ବ୍ୟକ୍ତିର ସ୍ଥାନ ଏବେ ନିରୂପଣ କରିବା ସମ୍ଭବ ନୁହେଁ । ସମାଜ ଆଜି ଦୁର୍ବଳ । ମଣିଷ ମଧ୍ୟ ଅସହାୟ । ସମାଜ ଓ ପରିବର୍ତ୍ତନର ନିର୍ଦ୍ଦିଷ୍ଟ ରୂପରେଖ ଦେବା ସମ୍ଭବପର ନୁହେଁ । ତଥାପି ବିକଳ୍ପର ଅନ୍ୱେଷଣ ସବୁଆଡେ ଚାଲିଛି । ସମାଜ ଓ ଏହାର ବିଭିନ୍ନ ଉପାଦାନ ବଦଳିବାରେ ଲାଗିଛି । ଗୋଟାଏ ପ୍ରକାରର ସମାଜର ବିଲୟ ହେଉଛି ଏବଂ ଅନ୍ୟ ଏକ ଜାତିର ସମାଜ ଜନ୍ମ ନେଉଛି । ବିକଳ୍ପ ପ୍ରକ୍ରିୟାର ଏହା ଅବଦାନ ନୁହେଁତ ଆଉ କ'ଣ ?

ଗତ ଦୁଇବର୍ଷ ତଳେ ନବବର୍ଷ ଦିନ ଅରୁଣାଚଳ ପ୍ରଦେଶର ତାୱାଙ୍ଗ (Tawang)ଠାରେ ଅବସ୍ଥିତ ବୌଦ୍ଧଧର୍ମାବଲମ୍ବୀଙ୍କ ମଠ ଯାହାକୁ ଇଂରାଜୀରେ ମୋନାଷ୍ଟେରୀ (Monastery) କୁହାଯାଏ ମୁଁ ଉପସ୍ଥିତ ଥିଲି । ହାଡଭଙ୍ଗା ଶୀତ ଓ ମେଘାଚ୍ଛନ୍ନ ଆକାଶ । ଘରିଆଡେ ବରଫାବୃତ ପର୍ବତମାଳା । ନବବର୍ଷ ଉପଲକ୍ଷେ ସେଠାରେ ଅନେକ ଅତିଥି । ସ୍ଥାନୀୟ ବାସିନ୍ଦାଙ୍କ ଭିତରେ ନବୋଲ୍ଲାସ । ଶୀତକୁ କେହି ମାନୁ ନଥାନ୍ତି । ଦେହହାତ କାଲ ମାରି ଦେଉଥିଲେ ବି ସେଥିପ୍ରତି ଭ୍ରୁକ୍ଷେପ ନାହିଁ । ମୋନାଷ୍ଟେରୀ ଭିତରେ ଛୋଟ ଛୋଟ ପିଲାମାନେ ବୌଦ୍ଧଭିକ୍ଷୁ ହେବାକୁ ପ୍ରଶିକ୍ଷଣ ନେବା ପାଇଁ ବସବାସ କରୁଛନ୍ତି ଓ ବୌଦ୍ଧମନ୍ତ୍ର ଉଚ୍ଚାରଣ କରୁଛନ୍ତି ସମବେତ ସ୍ୱରରେ । ମୁଁ ସେଠାରେ ଦଣ୍ଡକ ପାଇଁ ଅଟକି ଯାଇଥିଲି । ମହାମାନ୍ୟ ଦଲାଇଲାମା ଚୀନ୍‌ର ଆକ୍ରମଣ ପରେ ତିବ୍‌ବତରୁ ଖସି ଆସି ଭାରତ ଅଭିମୁଖେ ଯାତ୍ରା କରିଥିଲେ । ତାୱାଙ୍ଗ ଠାରେ ସେ କିଛି ଦିନ ରହିଥିଲେ । ଏହା ବୌଦ୍ଧଧର୍ମାବଲମ୍ବୀଙ୍କ ପାଇଁ ଐତିହାସିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ କେନ୍ଦ୍ରସ୍ଥଳୀର ମାନ୍ୟତା ପାଇଛି ସେଇ ଦିନ ଠାରୁ । ବାରହଜାର ଫୁଟ ଉଚ୍ଚତାରେ ଅବସ୍ଥିତ ଏଇ ଧର୍ମପୀଠରେ ଅନେକ ବିଶେଷତ୍ୱ ଅଛି ବୋଲି ସେଠାକାର ସଂଗ୍ରହାଳୟର କର୍ମକର୍ତ୍ତା ମୋତେ କହୁଥିଲେ । ସ୍ୱଳ୍ପାଲୋକ ଭିତରେ ସଂଗ୍ରହାଳୟର ଅନେକ ସଂରକ୍ଷିତ ବସ୍ତୁ ଠିକ୍ ଦେଖାଯାଉନଥିଲା କି ପ୍ରତ୍ୟେକ ବସ୍ତୁର ବିବରଣୀ ପଢି ହେଉନଥିଲା । ସଂଗ୍ରହାଳୟର କର୍ମକର୍ତ୍ତା ମୋ ଉତ୍ସାହ ଦେଖି ଲଣ୍ଠନ ଆଲୁଅର ବ୍ୟବସ୍ଥା କରିଥିଲେ । ସନ୍ଧ୍ୟା ପୂର୍ବରୁ ସତ୍ୟ ଓ ଇତିହାସ ଉନ୍ମୋଚିତ ହୋଇଥିଲା ମୋ ପାଇଁ । ଏତେ ଅପହଞ୍ଚ ଇଲାକାରେ ଏଭଳି ଏକ ବିରାଟ ବୌଦ୍ଧମଠ ତିଆରି କରିବା କିପରି ସମ୍ଭବ ହେଲା ? ଧର୍ମ ବିଶ୍ୱାସରେ ପ୍ରଚଣ୍ଡ ଆସ୍ଥାନଥିଲେ ଏହା କେବେହେଲେ ସମ୍ଭବ ହୋଇନଥାନ୍ତା । ଆମେ ସବୁ ଯେତେବେଳେ କଲେଜ ଛାତ୍ର ଥିଲୁ ଓ ଧର୍ମ ଏବଂ ବିଶ୍ୱାସର ବିଭିନ୍ନ ଦିଗ ଉପରେ ଅନେକ ପ୍ରଶ୍ନ କରୁଥିଲୁ । ଆମର ଏକ ପ୍ରବଳ ଆଶା ଅଙ୍କୁରିତ ହୋଇଥିଲା । ତାହା ଥିଲା ଜୀବନରେ ଜଣେ ବୌଦ୍ଧଲାମା ହେବା ପାଇଁ । ଲାମାତ୍ୱ ପ୍ରାପ୍ତି ପାଇଁ ବିଭିନ୍ନ ପରୀକ୍ଷା ଦେବାକୁ ହୋଇଥାଏ । କେବଳ ବୌଦ୍ଧଶାସ୍ତ୍ର ପଢ଼ିଲେ ବା ବୌଦ୍ଧମଠରେ ନିଜକୁ ଅବସ୍ଥାନ କରାଇଲେ ଯଥେଷ୍ଟ ନୁହେଁ । ଶୀତ ଦିନର ହିମପାତ ସମୟରେ ଜଣକୁ ଗୋଟିଏ ଗୋଡରେ ବାହାରେ କେତେ ଦିନ କେତେ ରାତି ଛିଡା ହେବାକୁ ପଡିବ । ଏହା ହେଉଛି କଠିନତମ ପରୀକ୍ଷା । ଏଥିରେ ଉତ୍ତୀର୍ଣ୍ଣ ହେଲେ ଯାଇ ଲାମା ବୋଲି ଘୋଷିତ ହେବ । ଏଇ ଅନ୍ତିମ ପରୀକ୍ଷା ପାଇଁ ବୌଦ୍ଧମଠର ସମସ୍ତ ଅନ୍ତେବାସୀ ଅପେକ୍ଷା କରିଥାଆନ୍ତି । ତିବ୍‌ବତରେ ବଞ୍ଚିବା ଓ ମରିବାର ଏକ କଳା ଅଛି । ଏହି କଳା ଉପରେ ଅନେକ ପୁସ୍ତକ ମଧ୍ୟ ରଚନା କରାଯାଇଛି । ଶହଶହ ବର୍ଷଧରି ଏହି ପରମ୍ପରା ବଞ୍ଚି ରହିଛି । ତାୱାଙ୍ଗ ମୋନାଷ୍ଟେରୀରେ ମୋର ଅନ୍ତରାତ୍ମା ଉତ୍ତେଜିତ ହୋଇ ମୋର ହେମାଳ ଦେହରେ ଏକ ଉଷ୍ଣତା ଆଣି ଦେଇଥିଲା । ମୋର ଇଚ୍ଛା ହୋଇଥିଲା ଯେ ମୁଁ ମଧ୍ୟ ସୁଯୋଗ ପାଇଲେ ଜଣେ ବୌଦ୍ଧଲାମା ହୁଅନ୍ତି । ସ୍ୱପ୍ନ ସମ୍ଭବତାର ପୃଥିବୀକୁ ଛୁଇଁ ପାରନ୍ତି ।

ବରଫାବୃତ ପର୍ବତମାଳା ମଣିଷକୁ ସବୁବେଳେ ଆକର୍ଷଣ କରିଛି । କିଏ ଧର୍ମ ବିଶ୍ୱାସ ପାଇଁ ଆସିଛି ତ କିଏ ପର୍ବତାରୋହଣ ପାଇଁ ଅଣ୍ଟା ଭିଡିଛି । କିଏ ଜୈବବିବିଧତା ଅନୁସନ୍ଧାନ କରୁଛି ତ କିଏ ସୃଜନଶୀଳ ହୋଇ କବିତା ଲେଖିବାକୁ ଯାଇଁଛି ବା ଚିତ୍ରକରରେ ନିଜକୁ ପରିଣତ କରିଛି । ସବୁ ବିଭିନ୍ନ ସ୍ତରର ଦୁଃସାହସିକ ଯାତ୍ରା । ସବୁ ଆଡ୍‌ଭେଞ୍ଚର । ଅନେକ ବର୍ଷତଳେ ପ୍ରସିଦ୍ଧ ଲେଖକ ପିଟର ମାଥିଏସେନ୍ (Peter Mathiesen) ଗୋଟିଏ ଲୋକପ୍ରିୟ ବହି ଲେଖିଥିଲେ ଯାହାର ନାମ ଥିଲା 'ସ୍ନୋ ଲିଓପାର୍ଡ଼' (Snow Leopard) । ଉଚ୍ଚତର ହିମାଳୟରେ ତରଙ୍ଗାୟିତ ପାହାଡ ପର୍ବତ ଭିତରେ ଏ କଲରାପତରିଆ ବାଘ ବସବାସ କରେ । କ୍ୱଚିତ ଦେଖାଦିଏ ମଣିଷକୁ । ଲୁଚିଛପି ପାହାଡିଆ ଛେଳି ଶିକାର କରେ । ଜଣେ ଯଦି ଖୁବ୍ ଭାଗ୍ୟବାନ, ତେବେ ଏ କଲରାପତିରିଆ ବାଘ ସହ ମୁହାଁମୁହିଁ ହୋଇଥାଏ । ଅବଶ୍ୟ ତାହାର ପାହୁଲ ବରଫାବୃତ ଅଞ୍ଚଳରେ ସହଜରେ ଚିହ୍ନିହୁଏ । ଲେଖକ ପିଟର ମାଥିଏସେନ୍ ହିମାଳୟ ଓ ନେପାଳରୁ ତିବ୍ବତ ପର୍ଯ୍ୟନ୍ତ ଯାତ୍ରା କରିଛନ୍ତି ଅଥଚ 'ସ୍ନୋ ଲିଓପାର୍ଡ଼'କୁ ଭେଟି ନାହାନ୍ତି । କିନ୍ତୁ ସେ ଅଞ୍ଚଳରେ ମଣିଷ ଓ ପ୍ରକୃତିମାନଙ୍କ ଭିତରେ ସେ ନିଜକୁ ବାରମ୍ବାର ଆବିଷ୍କାର କରିଛନ୍ତି । 'ସ୍ନୋ ଲିଓପାର୍ଡ' ବଦଳରେ ସେ ଆଧ୍ୟାତ୍ମିକତାର ଆଲୋକ ଆବିଷ୍କାର କରିଛନ୍ତି । 'ସ୍ନୋ ଲିଓପାର୍ଡ଼'ର ପାହୁଲ ଚିହ୍ନ ଅନୁସରଣ କରି କେଉଁ ଅପନ୍ତରାରେ ପହଞ୍ଚିଛନ୍ତି । କେତେଥର ଲକ୍ଷ୍ୟଭ୍ରଷ୍ଟ ହୋଇଛନ୍ତି । କେତେ କ'ଣ କଷ୍ଟ ତାଙ୍କୁ ଭୋଗିବାକୁ ପଡିଛି । ଶେଷରେ ସେ ଫେରିଛନ୍ତି ଗୋଟାଏ ଅପୂର୍ବ ଅନୁଭୂତି ନେଇ । ଏ ବହିଟି ମଣିଷର ଅନ୍ୱେଷଣର ଏକ କାବ୍ୟିକ ବର୍ଣ୍ଣନା । ଏଠାରେ ନୈରାଶ୍ୟ ନାହିଁ । କେତେଦିନଧରି ବହିଟିକୁ ମୁଁ ସବୁ ସାଥୀମାନଙ୍କୁ ପଢିବାକୁ କହୁଥିଲି ।

ତାୱାଙ୍ଗ ଏବେ ଗୋଟିଏ ଛୋଟ ସହର । ଚୀନ୍‌ର ସୀମା ବେଶୀ ଦୂର ନୁହେଁ । ସବୁଆଡେ ମିଲିଟାରୀ କ୍ୟାମ୍ପ । ଅନେକ ସ୍ଥାନରେ ଭାରତ-ଚୀନ୍ ଲଢେଇ ସମୟରେ ବୀରତ୍ୱ ପଦର୍ଶନ କରି ଶହୀଦ୍ ହୋଇଥିବା ସୈନିକମାନଙ୍କର ସ୍ମୃତି ସ୍ତମ୍ଭ । ଲୋକଙ୍କ ମୁହଁରେ ବୀରତ୍ୱକୁ ନେଇ ଅନେକ କାହାଣୀ ଓ କିମ୍ବଦନ୍ତୀ । ଶୁଣିଲେ ଲୋମ ଟାଙ୍କୁରି ଉଠିବ ଯେକୌଣସି ବ୍ୟକ୍ତିର । ଉଚ୍ଚତର ପର୍ବତମାଳାରେ ଜନସଂଖ୍ୟା କମ୍ ଓ ସୈନିକମାନଙ୍କର ଉପସ୍ଥିତି ବେଶୀ । ସେଠାରେ ଜଣେ ସ୍କୁଲ ଶିକ୍ଷକଙ୍କ ସହ ଦେଖା ହେଲା । ଭାରତ ସରକାର ନିଜର ପ୍ରଶାସନକୁ ମଜ୍‌ଭୁତ କରିବା ପାଇଁ ସ୍କୁଲ, ହସ୍‌ପିଟାଲ୍, ଦୋକାନ ବଜାର, ଟେଲିଯୋଗାଯୋଗ, ଗମନାଗମନର ସୁବିଧା କରିଛନ୍ତି । ବରଫାବୃତ ଅଞ୍ଚଳରେ ରାସ୍ତା ଯେମିତି ବର୍ଷସାରା ବ୍ୟବହାରଯୋଗ୍ୟ ହେବ, ଶହଶହ ଶ୍ରମିକ କର୍ମରତ ଅଛନ୍ତି । ମାଟି ଧସିବାରେ କିଛି ସମୟ ମଧ୍ୟରେ ବୁଲଡୋଜର ପହଞ୍ଚିଯାଉଛି । ତେଜ୍‌ପୁରରୁ ପ୍ରତିଦିନ ତିରିଶରୁ ଉର୍ଦ୍ଧ୍ୱ ସୁମୋ କିଛି ଯାତ୍ରୀମାନଙ୍କୁ ନେଇ ଯିବା ଆସିବା କରୁଛି । ସେନାବାହିନୀର ପଚାଶରୁ ଅଧିକ ଗାଡି ଏକାବେଳେ ଧାଡି ବାନ୍ଧି ଯିବା ଆସିବା କରୁଛି ।

ଡ୍ରାଇଭରଙ୍କୁ ଖୁବ୍ ସତର୍କତାର ସହ ଗାଡି ଚଳାଇବାକୁ ହେବ । ଟିକିଏ ଖସିଲେ କେତେ ହଜାର ଫୁଟ ତଳେ ପଡିବାର ଆଶଙ୍କା ଅଛି । ତାୱାଙ୍ଗ ପହଞ୍ଚିବା ଏକାବେଳେକେ ଭୟସଙ୍କୁଳ । ଗାଁ ସବୁ ଦୂର ଦୂରାନ୍ତରରେ । କିନ୍ତୁ ଅନେକ ନେପାଳରୁ ଆସି ବ୍ୟବସାୟ କରୁଛନ୍ତି । ହୋଟେଲ ଖୋଲିଛନ୍ତି । ତଳଦେଶରୁ ମଧ୍ୟ ଅନେକ ଶ୍ରମିକ ଆସି ବିଭିନ୍ନ ପ୍ରକାର ନିର୍ମାଣ କାର୍ଯ୍ୟରେ ଲାଗି ରହିଛନ୍ତି । ଖାଇବା ଜିନିଷ ସବୁ ଆମଦାନୀ ହେଉଛି । ଏପରିକି ଆନ୍ଧ୍ରପ୍ରଦେଶରୁ ମାଛ କେତେଦିନ ପରେ ସେଠାରେ ପହଞ୍ଚୁଛି । ପଚାରିଲେ ଦୋକାନୀ କହୁଛି ପାଞ୍ଚ ଦିନର ସଜ ମାଛ । ସରକାରଙ୍କ ତରଫରୁ ଫଳଗଛ ଲଗାଇବାର ଯୋଜନା ଚାଲିଛି । ଶୀତରୁ ରକ୍ଷା ପାଇବା ପାଇଁ ଜଙ୍ଗଲ କଟା ଯାଇଛି । ଯେଉଁ ମାତ୍ରାରେ ଜଙ୍ଗଲ ବିକାଶ ହେଉଛି, ତାହା ମୃତ୍ତିକା ସ୍ଖଳନ ବୃଦ୍ଧି କରୁଛି । ଶୀତ ଦିନର ପ୍ରବଳଶୀତରୁ ରକ୍ଷା ପାଇବାକୁ ହେଲେ ଦିନ ରାତି ଘରେ କାଠ ଜାଳିବାକୁ ହେବ । ଅନ୍ୟ କିଛି ଉପାୟ ନାହିଁ । ସେନାବାହିନୀ ଓ ବୌଦ୍ଧ ସନ୍ୟାସୀମାନେ ବୃକ୍ଷରୋପଣ ପାଇଁ ସାମୂହିକ ଯୋଜନା ଏବେଠୁ ନକରିଲେ ସେ ଅଞ୍ଚଳରେ ଭବିଷ୍ୟତରେ କେହି ରହିବା ସମ୍ଭବପର ହେବ ନାହିଁ । ସ୍ଥାନୀୟ ବାସିନ୍ଦାଙ୍କ ସହଯୋଗର ଆବଶ୍ୟକତା ଅଛି । ଅକ୍ଷୟ ଶକ୍ତିର ବିକାଶ ଏକ ବିକଳ୍ପ ହୋଇପାରିବ ବୋଲି ମତପ୍ରକାଶ ପାଇଛି ।

ତାୱାଙ୍ଗରେ ସନ୍ଧ୍ୟାପୂର୍ବରୁ ମୁଁ ହୋଟେଲକୁ ଫେରିଥିଲି । ଧୀରେଧୀରେ ବିଜୁଳି ଆଲୋକରେ ରାସ୍ତାଘାଟ ଓ ଘରଦ୍ୱାର ଆଲୋକିତ ହେଲା । ଝର୍କା ଦେଇ ମୁଁ ଦେଖୁଥାଏ ବଦଳୁ ଥିବା ରାତିର ଦୃଶ୍ୟ । ମୋ ଭିତରେ କିନ୍ତୁ ଅନେକ ଚିନ୍ତା ଉଦ୍‌ବେଳିତ ହେଉଥାଏ । ଜୀବନ ଓ ମୃତ୍ୟୁ ଭିତରେ ମଣିଷ ଖୋଜୁଛି ପ୍ରଶାନ୍ତି । ମଣିଷ ଖୋଜୁଛି ବନ୍ଧୁତା ଓ ଭଲ ପାଇବା । ଆଉ ଆଶ୍ୱାସୂଚକ ପରିଭାଷା । ଏସବୁ ପାଇଁ ବିଭିନ୍ନ ବିକଳ୍ପ ରାସ୍ତା ରହିଛି ଯାହା ଋଷି ମହାପ୍ରଭୁମାନେ ଆବିଷ୍କାର କରିଛନ୍ତି । ଏହି ବିକଳ୍ପ ରାସ୍ତାର ତାଲିକା ବଢ଼ିବାରେ ଲାଗିଛି । ଜଣେ ସବୁ ବିକଳ୍ପ ସହ ପରିଚିତ ନହେଲେ ନୂତନ ବିକଳ୍ପ ଆବିଷ୍କାର କରିପାରିବ ନାହିଁ । ମୁଁ ମୋର ଅତୀତ ଓ ଭବିଷ୍ୟତକୁ ଦୃଷ୍ଟିପାତ କରୁଥିଲି । ଏଇ ବିକଳ୍ପ ସନ୍ଧାନ ପାଇଁ ସମଭାବାପନ୍ନମାନଙ୍କ ସହ ବାର୍ତ୍ତାଳାପ ଓ ସଂଯୋଜନାର ଘୋର ଆବଶ୍ୟକତା ରହିଛି । ତାୱାଙ୍ଗର ରାତ୍ରି ଯେତିକି ନିବିଡ ହେଉଥିଲା ମୋର ଚିନ୍ତାର ସ୍ରୋତ ସେତିକି ପ୍ରଖର ହେଉଥିଲା । କିନ୍ତୁ ସମଦୃଷ୍ଟି ରଖୁଥିବା ବନ୍ଧୁମାନେ ଆଜି କେଉଁଠି ? କେଉଁ ପୃଥିବୀରେ ସେମାନେ ବସବାସ କରୁଛନ୍ତି ? କି ଅନ୍ୱେଷଣରେ ହଜି ଯାଇଛନ୍ତି ? ତାଙ୍କର ଜୀବନ ଯନ୍ତ୍ରଣା ଓ ଅନୁସନ୍ଧିତ୍ସାର ପରିସର କ'ଣ ? ମୁଁ ଉତ୍ତର ପାଇନଥିଲି ।

□□□

**୨**

# ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର(୨)

ସ୍କୁଲରେ ପାଠ ପଢୁଥିବା ବେଳେ ଆମେ କେତେ ଜଣ ବନ୍ଧୁ ଭାବୁକ ଓ ପ୍ରକୃତିପ୍ରେମୀ ଥିଲୁଦ । ଯୁବରାଜ ହାଇସ୍କୁଲରେ ଆମେ ଯେମିତି ସବୁ ସ୍ୱପ୍ନର ରାଜକୁମାର ଥିଲୁ । ଷାଠିଏ ଦଶକର କଥା ଆଜି ମଧ୍ୟ ସ୍ମୃତିରେ ଅଲିଭା ହୋଇ ରହିଛି । ମୋର ବନ୍ଧୁମାନେ ହେଲେ ସୁଧାକର, ପ୍ରଫୁଲ୍ଲ, ଲକ୍ଷ୍ମୀନିବାସ । ଦୁଇଜଣ ଶିକ୍ଷକ କେବଳ ଶିକ୍ଷକ ନଥିଲେ, ସେମାନେ ମୋର ପରମ ମିତ୍ର ଥିଲେ । ଜଣେ ସ୍ୱର୍ଗତ ସତ୍ୟବ୍ରତ ମହାନ୍ତି ଆଉ ଜଣେ ଶ୍ରୀ ବିରଞ୍ଚି ନାରାୟଣ ମହାପାତ୍ର । ଉଭୟେ କବି ଓ ସୁଲେଖକ । ଅନେକ ବହି ପଢନ୍ତି ଓ ଆମକୁ ସେ ବହି ସବୁ ପଢିବାରେ ସୁଯୋଗ ସୃଷ୍ଟି କରନ୍ତି । କବିର କଳ୍ପନା ରାଜ୍ୟକୁ ବିଚରଣ କରିବାକୁ ପରିବେଶ ସୃଷ୍ଟି କରନ୍ତି । ସାହିତ୍ୟ ଓ ସଂସ୍କୃତିର ଆଲୋଚନା ହୁଏ । ସାହିତ୍ୟ ସଂସଦ ମଧ୍ୟ ଆମେ ଗଢିଥିଲୁ । କିନ୍ତୁ ଶ୍ରେଣୀକକ୍ଷର ଝରକା ଦେଇ ଆମେ ବାହାର ପୃଥିବୀର ଦୃଶ୍ୟରାଜି ଓ ପରିବର୍ତ୍ତନଶୀଳ ଚିତ୍ରପଟ ଦେଖିବାକୁ ଉତ୍କଂଠାର ସହ ଅପେକ୍ଷା କରୁଥିଲୁ । ସ୍କୁଲ ସୀମା ସେପାଖେ ରାଣୀ ପାର୍କ । ସୁଉଚ୍ଚ ପାଚେରୀ ଓ ତା' ଉପରେ ତାରବାଡ । ତାକୁ ନମାନି ଆମେ ଭିତରକୁ ଅନୁପ୍ରବେଶ କରୁ । ଭିତରେ ବିସ୍ତୃତ ପୋଖରୀ । ଘଞ୍ଚ ଜଙ୍ଗଲ ଭିତରେ ଆମକୁ ସ୍ୱପ୍ନ ରାଜ୍ୟରେ ବିଚରଣ କରିଲା ଭଳି ଲାଗେ । ହରିଣ ଦଳଦଳ ହୋଇ ଆସନ୍ତି । ନାନା ଜାତିର ପକ୍ଷୀ କଳରବ କରୁଥାଆନ୍ତି । ଉଚ୍ଚ ଗଛରେ ହନୁମାଙ୍କଡ ମଧ୍ୟ ଚିତ୍କାର କରି ନିସ୍ତବ୍ଧତାକୁ ଭାଙ୍ଗିବାକୁ ଚେଷ୍ଟା କରୁଥାଏ । ଆମେ ସବୁ ନୀରବରେ ବସି ରହୁ । କ୍ଲାସ୍‌ର ବିଷୟବସ୍ତୁ ବା ସ୍କୁଲର ପିରିଅଡ୍ ଆରମ୍ଭର ଘଣ୍ଟା ଆମେ ଭୁଲିଯାଉ । ଆମେ ନିଜକୁ ହଜାଇ ଦେଉ । ସ୍କୁଲର ପଶ୍ଚିମ ପଟେ କିଛି ଦୂରରେ ବିସ୍ତୀର୍ଣ୍ଣ ଖଜୁରୀ ବଣ । ଖଜୁରୀବଣ ସେପାଖେ ଛୋଟଛୋଟ ପାହାଡ । ସୂର୍ଯ୍ୟାସ୍ତ ଆମେ କେତେଥର ଦେଖିଥିବୁ । ସନ୍ଧ୍ୟାପୂର୍ବରୁ ଆମେ ଅନେକ କିଛି ସେଠାରେ ଆଲୋଚନା କରି ଘରକୁ ଫେରୁ । ଏସବୁର ମଧୁର ଅନୁଭୂତି ଆମର ପ୍ରିୟ ସାରଙ୍କ ପାଖରେ ବର୍ଣ୍ଣନା କରୁ । କିଏ ଆମ ଭିତରୁ କବିତା ଲେଖିଲାଣି ତ ଆଉକିଏ ହାସ୍ୟରସାତ୍ମକ ଗପ ରଚନା

କରିଲାଣି । ସବୁ ଅଦ୍‌ଭୂତ ଓ ଅଭିନବ । ଆମକୁ 'ସାର୍'ମାନେ କହୁଥିଲେ ଯେ ହେନେରୀ ଥୋରୋ ଏଇଭଳି 'ୱାଲ୍‌ଡେନ୍'(WALDEN) ହ୍ରଦ କୂଳରେ ଭାବବିହ୍ୱଳ ହୋଇଯାଉଥିଲେ । ଆଉ ଲେଖୁଥିଲେ ଆତ୍ମଲିପି । 'ୱାଲ୍‌ଡେନ୍' ବହିଟି ମହାତ୍ମାଗାନ୍ଧୀଙ୍କୁ ଖୁବ୍ ପ୍ରଭାବିତ କରିଥିଲା ବୋଲି ସେ ନିଜେ ଅନେକବାର ଉଲ୍ଲେଖ କରିଛନ୍ତି । ଆମେ ସାର୍‌ମାନଙ୍କୁ ପଚାରୁ ଥିଲୁ ଯେ 'ୱାଲଡେନ୍' ଭଳି ଆଉ କେଉଁକେଉଁ ବହି ଅଛି ଯେଉଁଠି ସାହିତ୍ୟ, ଦର୍ଶନ, ପ୍ରକୃତି ଉପାସନା ଆଦିର ବର୍ଣ୍ଣନା ରହିଛି । ସେମାନେ ବିଶ୍ୱ ସାହିତ୍ୟରୁ ନାନା ଉଦାହରଣ ସବୁ ଅବଶ୍ୟ ଦେଉଥିଲେ । ଭାବବିହ୍ୱଳତା ଓ ସୃଜନାତ୍ମକ ସାହିତ୍ୟ ଛଡା ଏଇଭଳି ଯେ ଅନେକ ଅନ୍ୱେଷା ଯୁଗଯୁଗ ଧରି ମଣିଷ କରିଛି ତାହାର ସୂଚନା ଆମକୁ ଦେଉଥିଲେ । ମୁଁ ସେଇ ଦିନରୁ ସୁଯୋଗ ପାଇଲେ ହ୍ରଦମାନଙ୍କୁ ଆବିଷ୍କାର କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ । ଆମର ଚିଲିକା ହେଉ ବା ନୈନିତାଲର ହ୍ରଦମାନେ ହୁଅନ୍ତୁ ବା ଉଦୟପୁରର ହ୍ରଦମାନେ ହୁଅନ୍ତୁ ବା ତୀର୍ଥସ୍ଥାନ ପୁଷ୍କର ହ୍ରଦ ହେଉ, କୋଡାଇକେନାଲର ସୁନ୍ଦର ହ୍ରଦ ହେଉ ବା ମଣିପୁରର ଲୋହତକ୍ ହ୍ରଦ ହେଉ ସବୁଠାରେ ମୁଁ ଏକାନ୍ତ ଭାବରେ ବିଚରଣ କରିଛି ଓ ନିଜକୁ ବିଭିନ୍ନ ଢ଼ଙ୍ଗରେ ଆବିଷ୍କାର କରିଛି । ବ୍ୟସ୍ତତାର ଜୀବନ ଭିତରେ କିଛି କ୍ଷଣ ପାଇଁ ଅଟକି ଯାଇ ମଣିଷର ଜୀବନ ଓ ଜିଜ୍ଞାସା, ପ୍ରଭାବ ଓ ପ୍ରତିଷ୍ଠା ସବୁ ମନେ ମନେ ବିଶ୍ଳେଷଣ କରିଛି । ଅତୀତକୁ ଫେରିଛି କେତେବାର ଓ ଭବିଷ୍ୟତର ପୃଥିବୀକୁ ଯିବା ପାଇଁ କେତୋଟି ପାହାଚ ମଧ୍ୟ ଗଢିଛି । ଗୋଟାଏ ପୃଥିବୀରେ ସୁଖ ଶାନ୍ତି ଓ ସହାବସ୍ଥାନର ଅଭାବ ହେଲେ ମଣିଷ ସ୍ୱତଃସ୍ଫୂର୍ତ୍ତ ଭାବେ ଅନ୍ୟ ଏକ ପୃଥିବୀ ଖୋଜିବସେ । ଯାହାକିଛି ଅନ୍ୟାୟ ଓ ଅସଙ୍ଗତ ତାହା ବିରୋଧରେ ସ୍ୱର ଉତ୍ତୋଳନ କରେ । ଏହା ଭାବନାରେ ଯେତିକି ସମ୍ଭବ ହୁଏ, କାର୍ଯ୍ୟକ୍ଷେତ୍ରରେ ସେତିକି ମଧ୍ୟ ହୁଏ । ଏଇଥିପାଇଁ ସବୁବେଳେ ମଣିଷ ଶାନ୍ତି ଓ ଆନନ୍ଦର ଅନ୍ୱେଷଣରେ ଲାଗିଥାଏ ।

ମୁଁ ମହାତ୍ମାଗାନ୍ଧୀଙ୍କ ସତ୍ୟାଗ୍ରହ ବିଷୟରେ ଯେତିକି ଯେତିକି ପଢିଲି ଓ ଆତ୍ମସମୀକ୍ଷା କରିଲି ଏହା ପଛରେ ଥିବା ଇତିହାସକୁ ଜାଣିଲି । ଗାନ୍ଧୀଜୀ ରସ୍କିନ୍, ଥୋରୋ ଏବଂ ଟଲଷ୍ଟୟଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛନ୍ତି । ଅନ୍ୟାୟ ବିରୋଧରେ ଅହିଂସ ପ୍ରତିରୋଧର ରଣନୀତି ସେ ଏଇ ଲେଖକଙ୍କର ରଚିତ ବହିଗୁଡିକରୁ ପାଇଛନ୍ତି । ହେନେରୀ ଥୋରୋ (Henry Thoreau)ଙ୍କ "ୱାଲ୍‌ଡେନ୍ ଏଣ୍ଡ ରେଜିଷ୍ଟାନ୍‌ସ ଟୁ ସିଭିଲ୍ ଗଭର୍ଣ୍ଣମେଣ୍ଟ" (Walden and Registance to Civil Government ) ମୂଳଲେଖା ମୁଁ କେତେଦିନରୁ ପଢିସାରିଛି ଓ ପ୍ରଭାବିତ ହୋଇଛି ମଧ୍ୟ । ରେଭେନ୍‌ସା କଲେଜରେ ପ୍ରାକ୍ ବିଶ୍ୱବିଦ୍ୟାଳୟ କ୍ଲାସ୍‌ରେ ଇଂରାଜୀ କବିତାମାନଙ୍କ ଭିତରେ ଗୋଟାଏ କବିତା ବେଶ ଭଲ ଲାଗୁଥିଲା ଯାହାର ନାମ ଥିଲା 'ଦି ଲେକ୍ ଆଇଲ୍ ଅଫ୍ ଇନିସ୍‌ଫ୍ରୀ' (The Lake Isle of Innisfree) ଲେଖକ ହେଉଛନ୍ତି କବି ଡବ୍ଲ୍ୟୁ.ବି.ୟେଟ୍‌ସ(W.B. Yeats) । ଆମର ଅଧ୍ୟାପକ ଥିଲେ ସ୍ୱର୍ଗତ ପ୍ରଫେସର ବିଧୁଭୂଷଣ ଦାସ । ମୋର ଆଜି ମନେ ଅଛି

ସେ ଚମତ୍କାର ଭାବେ ବୁଝାଇ କବିର ସ୍ୱପ୍ନ ଓ ଭାବ ବିହ୍ୱଳତାକୁ ବର୍ଣ୍ଣନା କରୁଥିଲେ । ଆମକୁ ସତେ ଯେମିତି ନେଇ ଯାଇଥିଲେ ଇନିସ୍‌ଫ୍ରୀ ହ୍ରଦକୂଳକୁ ।

କିନ୍ତୁ ଅସଲ କଥା ହେଉଛି ଯେ ହେନେରୀ ଥୋରୋ ବଣ ଜଙ୍ଗଲ ଓ ସବୁଜ ବନାନୀ ଘେରା ୱାଲ୍‌ଡେନ୍ ହ୍ରଦକୂଳରେ କ'ଣ ଖୋଜୁଥିଲେ ? ସେଠାକୁ ଯାଇଥିଲେ କାହିଁକି ? ଏକାକୀ ଘରଟିଏ ତିଆରି କରି ବସବାସ କରିବା ପଛରେ ମାନସିକତା କ'ଣ ? ଜନବସତି ଠାରୁ ଦୂରରେ ରହିଲେ ଅନେକ ପ୍ରଶ୍ନ ଉଠିପାରେ ବୋଲି ସେ ନିଜେ ସଚେତନ ଥିଲେ ? କ'ଣ ଖାଉଛନ୍ତି, ସମୟ କିପରି କଟୁଛି, ଇତ୍ୟାଦି ଅନେକ ପ୍ରଶ୍ନ କେହି କେହି ପଚାରିଛନ୍ତି ମଧ୍ୟ । ସେ ମୁନିଋଷିଙ୍କ ଭଳି କେଉଁ ଏକ ଆଧ୍ୟାତ୍ମିକ ଅନ୍ୱେଷଣ କରୁଛନ୍ତି କି ବୋଲି ଅନେକଙ୍କ ମନରେ କୌତୂହଳ ଜାତ ହୋଇଥିଲା । ଥୋରୋଙ୍କ ଜନ୍ମ ୧୮୧୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ମ୍ୟାସାଚୁସେଟ୍ ପ୍ରଦେଶର କଙ୍କୋର୍ଡ ଠାରେ । ସେ ଥିଲେ କବି, ଦାର୍ଶନିକ ଓ ଟ୍ରାନ୍‌ସଣ୍ଡେଣ୍ଟାଲିଜିମ୍- ଅନ୍ତର୍ଜ୍ଞାନଲବ୍ଧ ଅନୁଭୂତିର ପ୍ରଚାରକ । ଗ୍ରାମ୍ୟ ପରିବେଶରେ ସେ ମୁଗ୍ଧ ହୋଇଥିଲେ ପିଲାଟି ଦିନରୁ ଓ ସବୁଜ ବନାନୀ ଓ ଅରଣ୍ୟର ଶୋଭା ତାଙ୍କୁ ଜୀବନ ସାରା ଆକର୍ଷଣ କରିଥିଲା । ହାର୍‌ଭାର୍ଡ(Harvard) ବିଶ୍ୱବିଦ୍ୟାଳୟରୁ ସେ ଡିଗ୍ରୀ ହାସଲ କରିବା ପରେ କିଛି ଦିନ ଅଧ୍ୟାପନା କରିଥିଲେ ନିଜର ପୁରୁଣା ସ୍କୁଲରେ । ପରିବାରର ପେନ୍‌ସିଲ ତିଆରି ବ୍ୟବସାୟରେ ନିଜକୁ ସମ୍ପୃକ୍ତ କରିଥିଲେ । କିନ୍ତୁ ଏହା ସମ୍ଭବତଃ ତାଙ୍କୁ ଭଲ ଲାଗିନଥିଲା । ସେ ନିଜ ଭାଇଙ୍କ ସହ ମିଶି ଗୋଟିଏ ସ୍କୁଲ ପ୍ରତିଷ୍ଠା କରିଥିଲେ । ଏହା ତିନିବର୍ଷ ଚାଲିଥିଲା ଓ ତାଙ୍କ ଭାଇ ଅସୁସ୍ଥ ହେବାରୁ ତାହାକୁ ବନ୍ଦ କରିବାକୁ ପଡିଥିଲା । ଗାଁ ପାଖ କଙ୍କୋର୍ଡ ଓ ମେରିମାକ୍ ନଦୀରେ ସେ ନୌକାଚାଳନା କରିବା ପରେ ୧୮୩୯ ମସିହାରେ ଅନୁଭବ କରିଥିଲେ ଯେ କବି ହେବାକୁ ସେ ବେଶି ପସନ୍ଦ କରିବେ । କବିତା ଲେଖିବା ଆରମ୍ଭ କରିଲା ପରେ ତାଙ୍କର ପରିଚିତ ହୋଇଥିଲା ବିଶିଷ୍ଟ କବି ଏମର୍ସନ (Emerson)ଙ୍କ ସହ ଏବଂ ତାଙ୍କ ଦ୍ୱାରା ସେ ଖୁବ୍ ପ୍ରଭାବିତ ହୋଇଥିଲେ । ଆରମ୍ଭ ହେଲା ଟ୍ରାନ୍‌ସେଣ୍ଡେଣ୍ଟାଲିଜିମ୍ (Transcendentalism)ର ଏକ ନୂତନ ଅଧ୍ୟାୟ । ଏହାର ମୂଳତତ୍ତ୍ୱ ଥିଲା ଯେ ମଣିଷ ସମାଜ ଠାରୁ ଉର୍ଦ୍ଧ୍ୱରେ । ଆହୁରି ମଧ୍ୟ ଆବେଗ ତର୍କ ଠାରୁ ଉର୍ଦ୍ଧ୍ୱରେ, ପ୍ରକୃତି ମଣିଷ ଠାରୁ ଉପରେ । ସବୁର ସାରାଂଶ ହେଉଛି ଯେ ବସ୍ତୁଠାରୁ ପ୍ରାଣ ଉପରେ । ନିଜର ସୃଜନାତ୍ମକ ଲେଖାକୁ ଭିତ୍ତିକରି ସେ ଏକ ଆତ୍ମଲିପି ବା ଜର୍ଣ୍ଣାଲ୍ (Journal) ଆରମ୍ଭ କରିଥିଲେ ୧୮୩୭ ମସିହାରେ ଏବଂ ଶେଷ ନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଲେଖି ଚାଲିଥିଲେ ଏହି ଜର୍ଣ୍ଣାଲ୍‌ରେ । ଏମର୍ସନଙ୍କ ସହ 'ଦି ଡାୟାଲ୍' (The Dial) ବୋଲି ଗୋଟିଏ ସାହିତ୍ୟ ପତ୍ରିକା ଛପାଇଥିଲେ ୧୮୪୨ ମସିହାରେ । ଏହା ମଧ୍ୟ ଦୀର୍ଘ ଦିନ ତିଷ୍ଠି ନଥିଲା । ତାଙ୍କର ଭାଇଙ୍କ ମୃତ୍ୟୁ ତାଙ୍କର ଲେଖନୀ ଚାଳନାରେ ବାଧା ପକାଇଥିଲା । ତେଣୁ ସେ ସହରର ମୋହ ଛାଡି ପୁଣି ନିଜର ଗାଁକୁ ଫେରିଥିଲେ । ହାର୍‌ଭାର୍ଡରେ ଅଧ୍ୟୟନ କରିଲା ବେଳେ ଜଣେ ସହପାଠୀ

ତାଙ୍କୁ ହ୍ରଦକୂଳରେ କୁଡିଆଟିଏ ତିଆରି କରି ରହିବାର ପ୍ରେରଣା ଦେଇଥିଲେ । ଏପରି କରିଲେ ସେ ମୁକ୍ତ ଭାବେ ବିଚରଣ କରିବେ ଅଥବା ବହି ପଢାପଢ଼ି କରିବେ । ବାହାରର ପ୍ରଭାବରୁ ନିଜକୁ ରକ୍ଷା କରିପାରିବେ । ୨୭ ବର୍ଷ ବୟସରେ ଅରଣ୍ୟକ ସେ ୱାଲ୍‌ଡେନ୍ ପଣ୍ଡ୍ ବୋଲି ଚଉଷଠି ଏକରର ଏକ ହ୍ରଦ ପାଖରେ କାଠ କୁଡିଆଟିଏ ତିଆରି କରି ବନବାସ ଆରମ୍ଭ କଲେ । ଏହା ତାଙ୍କୁ ଆଣି ଦେଇଥିଲା ଚରମ ଆତ୍ମସନ୍ତୋଷ । ଜଙ୍ଗଲରୁ ମିଳୁଥିବା ଫଳ ଖାଇଲେ । ନିଜେ ଚାଷ କରି ଉତ୍ପାଦନ କରିଲେ ବିନ୍‌ସ । ବିନ୍‌ସ ବଗିଚାରେ ସେ ସମୟ କାଟୁଥିଲେ, ମାଛ ଧରୁଥିଲେ ଅଥବା ପ୍ରକୃତିକୁ ସେ ବହୁ ସମୟ ଧରି ଅତି ନିକଟରୁ ଅନୁଭବ କରୁଥିଲେ । କିନ୍ତୁ ରୀତିମତ ଆତ୍ମଲିପି ବା ଜର୍ଣ୍ଣାଲ୍ ଲେଖୁଥିଲେ କୁଡିଆ ପାଖରେ । 'ୱାଲ୍‌ଡେନ' ପୁସ୍ତକ ଏଇଭଳି ଜନ୍ମ ନେଇଥିଲା । ୧୮୫୪ ମସିହାରେ 'ୱାଲ୍‌ଡେନ୍' ପ୍ରକାଶିତ ହେଲା । ଏଥିରେ ଥିଲା ୧୮ଟି ପ୍ରବନ୍ଧ ଓ ବଞ୍ଚିବାର ନିର୍ଯ୍ୟାସ ବର୍ଣ୍ଣନା କରାଯାଇଥିଲା । କେତୋଟି ପ୍ରବନ୍ଧରେ ପରିଶ୍ରମ ଓ ମନଖୋଲା ଆନନ୍ଦର ବର୍ଣ୍ଣନା କରାଯାଇଛି । ଆଉ କେତୋଟି ପ୍ରବନ୍ଧରେ ସରଳ ଜୀବନ ଏବଂ ସ୍ୱାବଲମ୍ବନର ବିଶ୍ଳେଷଣ କରାଯାଇଛି । 'ୱାଲ୍‌ଡେନ୍ ପଣ୍ଡ୍'ଠାରେ ସେ ବନ୍ଧୁତା ବାନ୍ଧିଛନ୍ତି ପ୍ରାଣୀ ଓ ଉଦ୍ଭିଦ ଜଗତ ସହ । ପ୍ରକୃତି କୋଳରେ ସେ ଗଭୀର ଭାବେ ଅନୁଭବ କରିଛନ୍ତି ଅଭିନବ ସଙ୍ଗୀତର ଭାଷା ବାସ୍ନା, ଜଙ୍ଗଲର ମନଲୋଭା ଦୃଶ୍ୟ, ପାଣି ଉପରେ ପ୍ରତିଫଳନ । ଭୌତିକ ଜୀବନର ଉର୍ଦ୍ଧ୍ୱରେ ରହିଛି ଆଉ ଏକ ମନୋହର ପୃଥିବୀ । ଥୋରୋ ଏହାକୁ ଖୋଜି ପାଇଛନ୍ତି ୱାଲ୍‌ଡେନ୍ ପଣ୍ଡ୍ ନିକଟରେ ଦୁଇବର୍ଷ ରହି । ତାଙ୍କୁ ଦିନକ ପାଇଁ ଜେଲ୍ ଯିବାକୁ ପଡିଥିଲା । କାରଣ ସରକାରଙ୍କ କ୍ରୀତଦାସତ୍ୱର ସମର୍ଥନ ପାଇଁ ସେ ଟିକସ ଦେବାକୁ ବିରୋଧ କରିଥିଲେ । ସେ କହୁଥିଲେ ଏଥିପାଇଁ ତାଙ୍କର ବିବେକ ମନା କରୁଛି । ଏହା ଥିଲା ଅସହଯୋଗ ବା ସିଭିଲ୍ ଡିସ୍‌ଓବିଡିଏନ୍‌ସ(Civil Disobedience)ର ବଳିଷ୍ଠ ଉଦାହରଣ । ୧୮୪୯ ମସିହାରେ ଏହା ଉପରେ ଏକ ପ୍ରବନ୍ଧ ଲେଖିଥିଲେ ଯାହା ଆଜି ପର୍ଯ୍ୟନ୍ତ ଅନେକଙ୍କୁ ଆନ୍ଦୋଳିତ ଓ ଅନୁପ୍ରାଣିତ କରିଛି । ମହାତ୍ମାଗାନ୍ଧୀ ଏହି ଅସହଯୋଗ ବା ସିଭିଲ ଡିସ୍‌ଓବିଡିଏନ୍‌ସକୁ ଅସ୍ତ୍ରକରି ବ୍ରିଟିଶ ଶାସନକୁ ଏ ଦେଶରୁ ହଟେଇଥିଲେ । ଅସହଯୋଗ ଆନ୍ଦୋଳନ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ମାଇଲଖୁଣ୍ଟ ହୋଇ ରହିଛି ।

ଥୋରୋ ଥିଲେ ରୋମାଣ୍ଟିକ୍ ଓ ପ୍ରକୃତି ପୂଜାରୀ । "ୱାଲ୍‌ଡେନ୍ ପଣ୍ଡ୍"ପାଖରେ କୁଡିଆରେ ରହନ୍ତୁ ବା କାରାଗାରର ନିବୁଜ କଠୋରିରେ ବନ୍ଦୀ ହୁଅନ୍ତୁ, ଏକ ଅନ୍ୱେଷଣ ଓ ଉଚ୍ଚତର ଜୀବନର ସନ୍ଧାନରେ ସେ ନିଜକୁ କାୟମନବାକ୍ୟରେ ସଂଶ୍ଳିଷ୍ଟ କରିଥିଲେ । ତାଙ୍କ ପାଇଁ ସଫଳ ଜୀବନର ସଂଜ୍ଞା ଅଲଗା ଥିଲା । ଏକ ବିଳମ୍ବ ଓ ସ୍ୱାବଲମ୍ବନଶୀଳ ଜୀବନ ସହ ତାଙ୍କର ଯେଉଁ ଆତ୍ମପରୀକ୍ଷା ହୋଇଥିଲା, ତାହା ପୃଥିବୀର ଅନେକ ମଣିଷଙ୍କ ପାଇଁ ନୂଆ ଚଲାବାଟ ସୃଷ୍ଟି କରିଥିଲା । ସେ ହୃଦବୋଧ କରିଥିଲେ ଯେ ସମାଜରେ

ସହରୀ ମୂଲ୍ୟବୋଧ ଓ ଶିଳ୍ପ କାରଖାନାର ପରିବେଶ ପ୍ରବେଶ କରି ସାରିଛି । କିନ୍ତୁ ମଣିଷ କ'ଣ ଚାହେଁ ? ସେ ନିଜର ସଂସ୍କୃତି ବଜାୟ ରଖିବାକୁ ଚାହେଁ । ପ୍ରତ୍ୟେକ ମଣିଷର ନିଜସ୍ୱ ମୂଲ୍ୟବୋଧ ଓ ଚିନ୍ତାଧାରା ଅଛି ଓ ସେ ଅବାଧରେ ତାହାକୁ ସୁରକ୍ଷା ଦେଉ । ଜୀବନର କବିତାରେ ଉଲ୍ଲାସ ଅଛି ଓ ଅଦ୍ୱିତୀୟ କଳା ଭରି ରହିଛି । ସମାଜ ଅଶାନ୍ତ ଓ ଉଦ୍‌ବେଳିତ ହେଲେ ମଧ୍ୟ ସେ ନିଜକୁ ବଞ୍ଚାଇ ପାରିବ । ଆପଣାର ନିଜତ୍ୱ ସବୁବେଳେ ଉଚ୍ଚରେ ରହିବ ।

ଥୋରୋଙ୍କ ଦୀର୍ଘ ଆତ୍ମଲିପି ବା ଜର୍ଣ୍ଣାଲ ଏକୋଇଶ ଖଣ୍ଡ ପୁସ୍ତକରେ ପ୍ରକାଶିତ ହୋଇଛି । ଆମେରିକୀୟ ସାହିତ୍ୟରେ ଏହା ଅମର କୃତି ଓ ସାହିତ୍ୟ ରୂପେ ମାନ୍ୟତା ପାଇଛି । ୱାଲ୍‌ଡେନ୍ ପୁସ୍ତକ ଓ ଏଇ ଆତ୍ମଲିପି ଭିତରେ ଏକ ନିବିଡ ସମ୍ପର୍କ ରହିଛି । ଆତ୍ମଲିପି ଏକାନ୍ତ ନିଜସ୍ୱ । କିନ୍ତୁ ଥୋରୋ ଏହା ଅନ୍ୟ ବନ୍ଧୁମାନଙ୍କୁ ସମ୍ଭବତଃ ପଢିବାକୁ ଦେଉଥିଲେ । ସେ ତାଙ୍କର ମନର କଥା ନିଜ ଭିତରେ ନଲୁଚାଇ ଅନ୍ୟମାନଙ୍କ ଆଗରେ ଏଇ ଜର୍ଣ୍ଣାଲ୍ ମାଧ୍ୟମରେ ପ୍ରକାଶ କରୁଥିଲେ । ମୁଁ ସେ ଜର୍ଣ୍ଣାଲ୍‌ରୁ କିୟଦାଂଶ ପାଠକମାନଙ୍କ ଜାଣିବା ପାଇଁ ଉଦ୍ଧାର କରୁଛି ।

"ଜୀବନର ସତ୍ୟତା ମୁଁ ଜାଣିବାକୁ ଚାହିଁଛି ସବୁବେଳେ । ଭଗବାନ ଚରମ ସତ୍ୟକୁ ବିଭିନ୍ନ ବାଟରେ ପ୍ରଦର୍ଶନ କରିଥାଆନ୍ତି । ବେଳେବେଳେ ଏହା ମୁହାଁମୁହିଁ ହୋଇପଡେ । ଏଇଥିପାଇଁ ମୁଁ ଏଠାକୁ ଆସିଛି । ଜୀବନ-ଏହା କ'ଣ ? ଏହାର ଉଦ୍ଦେଶ୍ୟ କ'ଣ ? ମୁଁ ଯଦି ଏଠାକୁ ଆସି ସମ୍ପୂର୍ଣ୍ଣ ଠିକ୍ କରିନାହିଁ, ତେବେ ଭୁଲ୍ ବି କରି ନାହିଁ । ଦେଖାଯାଉ ଜୀବନ କେତେଦୂର ଆଗେଇବ ?"

(ଜୁଲାଇ ୧୬-୧୮୪୫)

"ଜଙ୍ଗଲୀ ସେଓ ଆଉ ଦେଖିବାକୁ ମିଳିବ ନାହିଁ । ପୁରୁଣାବଗିଚା ଧ୍ୱଂସ ପାଇଲାଣି । ଏବେ ସବୁଆଡେ କଲମୀ ସେଓ ଗଛ ଲଗା ଚାଲିଛି । ଜଙ୍ଗଲରେ ଓ ବିସ୍ତୀର୍ଣ୍ଣ ପଡିଆରେ ସ୍ଥାନୀୟ ସେଓ ଗଛ ଲୁପ୍ତ ପ୍ରାୟ । ଆସନ୍ତା ଶହେବର୍ଷ ପରେ ଯିଏ ଏହି ଜଙ୍ଗଲ ପାହାଡରେ ପଦଯାତ୍ରା କରିବ, ଜଙ୍ଗଲ ସେଓର ସୁଆଦ ଚାଖିବାକୁ ସୁଯୋଗ ପାଇବ ନାହିଁ । ହାୟରେ ମଣିଷ ! ଅନେକ ଆନନ୍ଦ ଆଉ ଉପଭୋଗ କରିହେବ ନାହିଁ ।"

(ନଭେମ୍ବର ୧୬, ୧୮୫୦)

ଏ ସ୍ତମ୍ଭରେ ଥୋରୋଙ୍କ ବିଷୟରେ ପୁଣି ଲେଖିବାକୁ ମୁଁ ସୁଯୋଗ ଖୋଜିବି ।

❑❑❑

## ୩

# ନଦୀ ଓ ଜୀବନ ଜିଜ୍ଞାସା

ନଦୀଟିଏ ଦେଖିଲା ମାତ୍ରକେ ମୋର ମନକୁ ଆସେ ଯେ ନୌଚାଳନା କରି ହେଉ ବା ପଦଯାତ୍ରାରେ ହେଉ, ନଦୀର ଉତ୍ପତ୍ତିସ୍ଥଳରେ ପହଞ୍ଚିବାକୁ ହେବ । ବାହାର ପୃଥିବୀକୁ ଚିହ୍ନିବାକୁ ଯାଇ ମୁଁ ପ୍ରଥମେ ନଦୀଟିକୁ ଚିହ୍ନିଥିଲି । ଆମ ସହର ପାଖରେ ବ୍ରାହ୍ମଣୀ ନଦୀ ବହି ଯାଉଛି କେତେ ଶହ ବର୍ଷଧରି । ସାରା ସହର ତାହା ଉପରେ ନିର୍ଭର କରି ଗଢ଼ି ଉଠିଛି । ବର୍ଷା ଦିନେ ପ୍ରବଳ ବଢ଼ି ଆସେ ଓ ଖରାଦିନେ ଜଳସ୍ରୋତ ଅନେକ କମି ଯାଏ । ପୂର୍ଣ୍ଣଗର୍ଭା ନଦୀ ଓ ବାଲୁକା ରାଶିର ବିସ୍ତୀର୍ଣ୍ଣ ଶଯ୍ୟା ନଦୀର ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ରୂପର ନମୁନା ହୋଇଯାଏ । ଆମେ ଯେଉଁ ବନ୍ଧୁମାନେ ନିଜକୁ ଖୋଜିବାକୁ ପ୍ରୟାସ କରୁ, ନଦୀ କୂଳରେ ବସିରହୁ ଘଣ୍ଟା ଘଣ୍ଟା ଧରି ଅଥବା କେବେକେବେ ନୌକାବିହାର କରିବାକୁ ଆଗ୍ରହ ପ୍ରକାଶ କରୁ । ହାଇସ୍କୁଲକୁ ଗଲାବେଳେ ନଦୀ କୂଳେ କୂଳେ ପ୍ରାୟ ଦୁଇ କି.ମି. ରାସ୍ତା ଯିବାକୁ ହୁଏ । ଚାଲି ଚାଲି ଗଲେ ଅନେକ ଭାବାନ୍ତର ମନ ଭିତରେ ସୃଷ୍ଟି ହୁଏ । ସ୍କୁଲରେ ଠିକ୍ ସମୟରେ ପହଞ୍ଚିବାକୁ ହେଲେ ଶୀଘ୍ର ଚାଲିବାକୁ ହୁଏ । ନଦୀ ଯେଉଁଠି ପୂର୍ବକୁ ବାଙ୍କିଛି, ରାସ୍ତା ସେଇଠି ପଶ୍ଚିମକୁ ବାଙ୍କି ଥାଏ । ନଦୀଟି କିନ୍ତୁ ପ୍ରତ୍ୟେକ ଦିନ ନୂତନ ଭାବେ ଏକ ରେଖାଚିତ୍ର ଆଙ୍କି ଦେଇଥାଏ ମାନସପଟରେ । ମୋର ସବୁଦିନେ ଇଚ୍ଛାହୁଏ ନଦୀ ତୀରରେ ଆଗକୁ ଆଗକୁ ଚାଲିବାକୁ । ଅଙ୍କାବଙ୍କା ନଦୀର ଗତିପଥ ନିର୍ଣ୍ଣୟ କରିବାକୁ ଜଣେ ଭୂଗୋଳ ବିଶାରଦ ହେବାର ପ୍ରବଳ ଇଚ୍ଛା ଜାଗରିତ ହୁଏ । ନଦୀର କିଛି ଦୂରରେ ବାଲି ଲାଇନ୍, ଯେଉଁଠାରୁ ରେଳ ଯୋଗେ କୋଇଲା ଖଣିକୁ ବାଲି ନିଆଯାଏ । କୋଇଲା ବାହାର କରିଲା ପରେ ଭୂଗର୍ଭରେ ଥିବା ଖାଲି ସ୍ଥାନକୁ ଭରିବାକୁ ପ୍ରଚୁର ବାଲି ଦରକାର ହୁଏ । ବାଲି ଲାଇନ୍ ବ୍ରିଟିଶ ଇଞ୍ଜିନିୟରମାନେ ତିଆରି କରିଥିଲେ । ଏହା ଏପରି ସ୍ଥାନରେ ସ୍ଥାପିତ ହୋଇଛି ଯେ ପ୍ରତିବର୍ଷ ଯେତେ ବାଲି ସେଠାରୁ ସଂଗ୍ରହ କରିଲେ ବି ପ୍ରଥମ ବନ୍ୟାରେ ପୁଣି ନୂଆ ବାଲି ସେଠାରେ ପଡିଯାଏ । ମୋର ଜଣେ ଶିକ୍ଷକ ସୂଚନା ଦେଇଥିଲେ ଯେ ପଦାର୍ଥ ବିଜ୍ଞାନର ନିୟମ ଅନୁସାରେ, ଏଠାରେ ବାଲି ପ୍ରତିବର୍ଷ ହଜାର ହଜାର ଟନ ଜମା ହେବ । ବାଲି ଲାଇନ୍ ନଦୀର ଦୁଇଟି ବାଙ୍କ ଭିତରେ ଅବସ୍ଥିତ ଓ ନଦୀର ପ୍ରବାହ ଆପଣା ଛାଏଁ ବାଲିସବୁ ଆଣି ଖୋଳିଥିବା ଜାଗାକୁ ପୋତି ପକାଇବ ।

ବ୍ରାହ୍ମଣୀ ନଦୀ ଖାଲି କବିତା ସୃଷ୍ଟି କରେ ନାହିଁ, ଅନେକ ବୈଜ୍ଞାନିକ ତତ୍ତ୍ୱକୁ ଆମର ସ୍କୁଲ ଜୀବନରେ ସହଜରେ ବୁଝିବାକୁ ସାହାଯ୍ୟ କରେ । ନଦୀର ଉପରି ଭାଗରେ ରେଙ୍ଗାଲୀ ଗାଁରେ ମୋର ମାମୁଁଘର । କେବେ କେମିତି ମୁଁ ସେଠାକୁ ଯାଏ । ସେଠାରେ ଡ୍ୟାମ୍ ହେବାର ସୂଚନା ଷାଠିଏ ଦଶକରେ ଆଲୋଚିତ ହେଉଥାଏ । ଉପକୂଳ ଜିଲ୍ଲାରେ ବନ୍ୟା ନିୟନ୍ତ୍ରଣ ପାଇଁ ରେଙ୍ଗାଲୀଠାରେ ନଦୀବନ୍ଧ ଯୋଜନା କରାଯିବାକୁ ଗୁରୁତ୍ୱର ସହ ବିଚାର କରାଯାଉଥାଏ । ମାମୁଁଙ୍କ ଘରକୁ ଗଲେ ନଦୀ ଭିତରେ ଡଙ୍ଗାରେ ବସି ମାଛ ଧରିବାର ଦୃଶ୍ୟ ଦେଖିବାକୁ ମିଳେ । ସେଠାରେ ଗଭୀର ଜଳରେ ବହୁତ କୁମ୍ଭୀର ଥାଆନ୍ତି । କିନ୍ତୁ ମୁଁ କେବେ ଦେଖିନାହିଁ । ମୋର ବଡ ଭଉଣୀ ଘର ବଲାଙ୍ଗୀ ଗାଁରେ, ସମଲ ଗାଁକୁ ଲାଗି । ପିଲାଦିନେ ସବୁ ଖରାଦିନ ଛୁଟିରେ ମୁଁ ସେଠାକୁ ଯାଏ । ନଦୀର କୂଳକୁ ଲାଗି ମୋ ଭଉଣୀ ଘରର ବିରାଟ ଆମ୍ବତୋଟା ଥାଏ । ବଗିଚାରେ ବିଭିନ୍ନ କିସମର ସୁସ୍ୱାଦୁ ଆମ୍ବ ମିଳେ, ଯାହା ମୁଁ ଏ ପର୍ଯ୍ୟନ୍ତ ଅନ୍ୟ କେଉଁଠାରେ ଦେଖିନାହିଁ । ସମଲ ବ୍ୟାରେଜ ନିର୍ମାଣ ହେଲାପରେ ବଲାଙ୍ଗୀ ଗାଁ ଓ ସେ ଆମ୍ବତୋଟା ଆଜି ଜଳମଗ୍ନ । ମନେପଡେ ଯେ ତାଳଚେରରୁ ଆମେ ବନ୍ଧୁମାନେ ସାଇକେଲରେ ଯାଇ ସେଠାରେ କେତେଥର ବଣଭୋଜି କରି ଅନେକ ତାରୁଣ୍ୟର ମଜା ନେଇଛୁ । ଆଜି ସବୁ କିନ୍ତୁ ଅଲଗା । ରେଙ୍ଗାଲୀ ବନ୍ଧ ଯୋଜନାରେ ନଦୀ ଓ ତାହାର ସୁନ୍ଦର ଦୃଶ୍ୟ ଆଜି ହଜି ଯାଇଛି । ସମଲ ବ୍ୟାରେଜ ଯେମିତି ଆମର ପିଲାଦିନର ଅନେକ ସ୍ମୃତିକୁ କରୁଣ କରିଦେଇଛି । ବ୍ରାହ୍ମଣୀ ନଦୀ ଆଜି ସବୁଠାରୁ ପ୍ରଦୂଷିତ ଓ ଅନେକ ଶିଳ୍ପ କାରଖାନା ଦ୍ୱାରା ରୋଗଗ୍ରସ୍ତ । ସମୟ ଯେମିତି ସବୁ କିଛି ବଦଳେଇ ଦେଇଛି । ଆଉ ମୋ ମନରେ ଆଣି ଦେଇଛି ଅନେକ ଉଦାସୀ ଭାବନା ଓ ଅନୁଶୋଚନା । ବିକାଶ ଓ ଅଭିବୃଦ୍ଧିର ଯାନ୍ତବ ପ୍ରକ୍ରିୟା ନଦୀଟିକୁ ମାରି ଦେଇଛି ।

ମୁଁ ଅତି ନିଶ୍ଚିତ ଭାବେ ସ୍ୱୀକାର କରିଛି ଯେ ଆମ ସମସ୍ତଙ୍କୁ ନଦୀମାନେ ଅନେକ ଭାବେ ପ୍ରଭାବିତ କରିଛନ୍ତି । ଗୋଟାଏ ବହମାନ ନଦୀ ପାଖରେ ବସି ବସି ଭାବନାର ସୁନ୍ଦର ଓ ଛବିଳ ପୃଥିବୀରେ ବିଚରଣ କରିବା ଏକ ଚରମ ଅନୁଭୂତି । ଅନେକ ବିଶ୍ୱ ସାହିତ୍ୟ ସୃଷ୍ଟି ହୋଇଛି ନଦୀ ତୀରରୁ ବା ନଦୀରେ ନୌବିହାର ଜନିତ ଆତ୍ମନିରୀକ୍ଷଣରୁ । ନିଜକୁ ଚିହ୍ନିବାକୁ ହେଲେ ଏ ବିଶ୍ୱ ସାହିତ୍ୟକୁ ବାରମ୍ବାର ପଢ଼ିବାକୁ ହେବ ଏବଂ ଏଥିରେ ଅଭିଭୂତ ହେବାକୁ ସମୟ ଲାଗିବ ନାହିଁ । ପୃଥିବୀର ପ୍ରତ୍ୟେକ ଦେଶର ସାହିତ୍ୟରେ ନଦୀ ଉପନଦୀକୁ ନେଇ ଅନେକ କିଛି ଅନବଦ୍ୟ କୃତି ରହିଛି, ଯାହାକୁ ପଢିବା ସବୁବେଳେ ଆକର୍ଷଣ ହୋଇଯାଇଛି । ମୁଁ କିନ୍ତୁ ପାଠକମାନଙ୍କ ଆଗରେ ବିଶିଷ୍ଟ ଲେଖକ ହେନେରୀ ଡାଭିଡ ଥୋରୋ (Henry David Thoreau)ଙ୍କ ପୁସ୍ତକ 'ଏ ଉଇକ୍ ଅନ୍ ଦି କଙ୍କୋର୍ଡ ଆଣ୍ଡ ମେରିମାକ୍ ରିଭରସ୍' (A Week on the Concord and Merrimack Rivers) କୁ ଆଲୋଚନା କରିବାକୁ ଚାହିଁବି । ଏ ବହିଟି ଯଦିଓ ପ୍ରସିଦ୍ଧ 'ୱାଲଡେନ୍' (Walden) ଭଳି ଏତେ ଲୋକପ୍ରିୟ ନୁହେଁ, ତଥାପି ଏହା

ଲେଖକଙ୍କ ଏକ ଅଭିନବ ସୃଜନଶୀଳତା ବୋଲି ସ୍ୱୀକୃତି ଲାଭ କରିଛି । ଏବେ ପଢ଼ିଲା ପରେ ଅନେକ ପାଠକ ଏ ବହିଟିକୁ ଉନବିଂଶ ଶତାବ୍ଦୀର ଏକ ଅଦ୍ୱିତୀୟ ସାହିତ୍ୟ ବୋଲି ଅନୁଭବ କରୁଛନ୍ତି । ଲେଖକ ଥୋରୋ ଓ ତାଙ୍କ ଭାଇ ଜନ୍ ୧୮୩୯ ମସିହାରେ ଉଭୟ ନିଜ ଗାଁ କଙ୍କୋର୍ଡ (Concord)ରୁ ଆରମ୍ଭ କରିଛନ୍ତି ଏ ନଦୀ ଯାତ୍ରା । ନଦୀର ନିମ୍ନଗାମୀ ସ୍ରୋତରେ ଡଙ୍ଗାରେ ଯାଉଛନ୍ତି ଅନେକ ଦୂର ଯେଉଁଠି କଙ୍କୋର୍ଡ ନଦୀ ମେରିମାକ୍ (Merrimack) ନଦୀ ସହ ମିଶିଛି । ସେଇଠାରୁ ଦୁଇଭାଇ ମେରିମାକ ନଦୀର ସ୍ରୋତର ବିପରୀତ ଦିଗରେ ଅନେକ ବାଟ ଯାଇଛନ୍ତି ଏବଂ ନଦୀକୂଳରେ ଥିବା ହ୍ୱାଇଟ୍ ମାଉଣ୍ଟେନ୍ (White Mountain) ଆରୋହଣ କରିଛନ୍ତି । ପୁଣି ସେଠାରୁ ଫେରି ଆସି ନଦୀରେ ନୌକାଚାଳନା କରି ନିଜ ଗାଁରେ ପହଞ୍ଚିଛନ୍ତି । ଗୋଟାଏ ସପ୍ତାହ ଭିତରେ ଦୁଇଭାଇ ଅନେକ କିଛି ଅନୁଭବ କରିଛନ୍ତି ଓ ଅନେକ କିଛି ଉପଲବ୍ଧି କରିଛନ୍ତି । ଥୋରୋ ପ୍ରତିଦିନ ଯାହାକିଛି ଦେଖିଛନ୍ତି, ଅଙ୍ଗେ ନିଭେଇଛନ୍ତି ଏବଂ ନିଜର ଆତ୍ମଦୃଷ୍ଟିରେ ଯାହାକିଛି ଉଦ୍‌ଭାସିତ ହୋଇଛି ତାହା ସେ ବର୍ଣ୍ଣନା କରିଛନ୍ତି ଅଦ୍ୱିତୀୟ ଶୈଳୀରେ । ବର୍ଣ୍ଣନାରେ ରୋମାଣ୍ଟିକ୍ ଭାବନା ଛଡା ଦର୍ଶନ, ଇତିହାସ, ଭଗବତ୍ ଗୀତା ଏବଂ ପ୍ରାଚ୍ୟଜଗତର ଆଧ୍ୟାତ୍ମିକତା, ପାରମ୍ପରିକ ଖ୍ରୀଷ୍ଟିଆନ ଧର୍ମର ସମାଲୋଚନା ମଧ୍ୟ ଭରି ରହିଛି । ନଦୀ ଭିତରେ ନୌଚାଳନା କରୁଥିବା ବେଳେ ଥୋରୋ ଅନେକ କିଛି ଅବଲୋକନ କରିଛନ୍ତି ଓ ତାହା ସହିତ ପ୍ରତିଫଳନ ମଧ୍ୟ । ନଦୀତଟରେ ଗାଁକୁ ଦେଖିଛନ୍ତି, କୃଷି ଖେତକୁ ଦେଖିଛନ୍ତି ଓ ଦେଖିଛନ୍ତି ସ୍ଥାନୀୟ ଦୃଶ୍ୟ ବିଭବ । ଏହାକୁ ଦେଖି ତାଙ୍କର ଭାବାନ୍ତର ସୃଷ୍ଟି ହୋଇଛି । ଆଗେ ଥିଲା କ'ଣ ଏବଂ ଏବେ ହେଲା କ'ଣ ? କେବଳ କାହାଣୀ ଓ କିମ୍ବଦନ୍ତୀ ନୁହେଁ, ସବୁ ବିଷୟରେ । ସେ ଅଞ୍ଚଳ ଶହେ ବର୍ଷ ପୂର୍ବେ ଥିଲା ଆମେରିକୀୟ ଭାରତୀୟ (ଇଣ୍ଡିଆନ୍)ମାନଙ୍କ ରାଜ୍ୟ । କିନ୍ତୁ ଗୋରା ଲୋକମାନେ ଅନୁପ୍ରବେଶ କରିଥିଲେ ଧୀରେ ଧୀରେ । ରକ୍ତାକ୍ତ ସଂଘର୍ଷ କିପରି ହୋଇଥିବ ଥୋରୋ କଳ୍ପନା କରିଛନ୍ତି । ଇତିହାସକୁ ନୂତନ ଭାବେ ସେ ଯେମିତି ଜୀବନ ଦେଇଛନ୍ତି । ଏ ପୁସ୍ତକ ଲେଖି ଯେମିତି ସେ ଇତିହାସ ସୃଷ୍ଟି କରିଛନ୍ତି । ଅତୀତ ସବୁବେଳେ ସମୃଦ୍ଧ ଓ ବର୍ତ୍ତମାନ ସବୁବେଳେ ଦରିଦ୍ର ଓ ଦୁର୍ବଳ । ଡଙ୍ଗାସ୍ରୋତରେ ଭାସିଗଲାବେଳେ ସେ ଯେମିତି ଅନୁଭବ କରିଛନ୍ତି ଯେ ଗୋଟାଏ ଐତିହ୍ୟ ଭାସିଯାଉଛି ନିମ୍ନକୁ, ଆହୁରି ନିମ୍ନକୁ । ସେତେବେଳେ ମଣିଷମାନେ ଥିଲେ, ଏବେ ବି ଅଛନ୍ତି । କିନ୍ତୁ ଯେମିତି ଅନେକ ବଦଳିଯାଇଛି । ସବୁକିଛି ଧ୍ୱଂସାଭିମୁଖୀ । ଥୋରୋ ମନେ କରୁଛନ୍ତି ଯେ କର୍ପୂର ଉଡିଯାଇଛି କିନ୍ତୁ କନା ପଡି ରହିଛି ମାତ୍ର । ସମୟ ବିତିଯାଇଛି ଓ ସ୍ମୃତି ଯେମିତି ପଡି ରହିଛି ।

ଥୋରୋ ଶନିବାର ଦିନ ନିଜର ନୌକା ଯାତ୍ରା ଆରମ୍ଭ କରିଛନ୍ତି ଓ ଶୁକ୍ରବାର ପର୍ଯ୍ୟନ୍ତ ପ୍ରତିଦିନ କିଛି କିଛି ବିବରଣୀ ଲେଖିଛନ୍ତି । ପ୍ରତ୍ୟେକ ଦିନର ଦିନଲିପିରୁ କିଛି ଉଦ୍ଧାର କରିବା ମୁଁ ଉଚିତ ମନେ କରୁଛି ।

ଶନିବାର: ଶେଷରେ ଆଜିର ୭ ମାଇଲ୍ ଦୀର୍ଘ ଯାତ୍ରା ଆମକୁ ବିଲେରିକା ପର୍ଯ୍ୟନ୍ତ ପହଞ୍ଚାଇଥିଲା । ନଦୀର ପଶ୍ଚିମପଟେ ଏକ ଦ୍ୱୀପ ଭଳି ସ୍ଥାନ ଥିଲା ଓ ସେଠାରେ ଆମେ ଡଙ୍ଗାଟିକୁ ବାନ୍ଧିଦେଲୁ । ବୁଦାମାନଙ୍କରେ କୋଳି ସବୁ ଝୁଲୁଥାଏ ଯେମିତି ଆମେ ଖାଇବା ପାଇଁ ସ୍ୱତନ୍ତ୍ର ଭାବେ ପାଚିଛି । ପାଉଁରୁଟି, ଚିନି ଓ କୋକା ପାଉଡରକୁ ଗରମ ପାଣିରେ ପକାଇ ତିଆରି କରିଥିବା ସ୍ୱତନ୍ତ୍ର ପାନୀୟ ଆମର ରାତ୍ରି ଭୋଜନ ଥିଲା । ଖାଇବା ପୂର୍ବରୁ ଆଞ୍ଜୁଳାଏ ପାଣି ନଦୀରୁ ଆଣି ଆମେ ମୁହଁ ଧୋଇଲୁ । ଏହାଦ୍ୱାରା ନଦୀ ଦେବତାଙ୍କୁ ମନେ ପକାଇଲୁ । ଆଖି ମଧ୍ୟ ସଫା ରହିଲା । ସୂର୍ଯ୍ୟ ଅସ୍ତ ହେଉଥିଲା ଏବଂ ଆମର ଛାଇକୁ ରାତ୍ରିର ଆଗମନ ପର୍ଯ୍ୟନ୍ତ ଲମ୍ୱାଇଥିଲା ।

ରବିବାର: ସବୁ ଦେଶର ଲୋକେ ଏକା କାହାଣୀ ଓ ହସ କୌତୁକ କଥାକୁ ଭଲ ପାଆନ୍ତି । ଇହୁଦୀ ବା ଖ୍ରୀଷ୍ଟିଆନ ବା ମୁସଲମାନ ସମସ୍ତଙ୍କ ପାଇଁ ଅନୁବାଦିତ କଥା ଏକାଭଳି । ଏ ପୃଥିବୀରେ ସବୁ ମଣିଷ ଗୋଟିଏ ପରିବାରର ସନ୍ତାନ । ଏଇସବୁ କାହାଣୀ ସବୁପିଲାଙ୍କୁ ଶୁଆଇ ପକାଇଥାଏ । ରବିନ୍‌ସନ୍ କ୍ରୁଶୋଙ୍କ ବହିକୁ ଯେତେବେଳେ ଆରବୀୟ ଭାଷାରେ ଅନୁବାଦ କରାଯାଇ ଲୋକଙ୍କୁ ବଣ୍ଟାଗଲା, ଆରବବାସୀ ଏକାଥରେ କହୁଥିଲେ ଯେ ରବିନ୍‌ସନ୍ କ୍ରୁଶୋ ସତରେ ଭଗବାନଙ୍କ ଅବତାର ।

ସୋମବାର: ବନାନୀ ସମସ୍ତଙ୍କର ପ୍ରିୟ ଓ ସୁନ୍ଦର । ପ୍ରାଚୀନ ଗାଁମାନେ ବାଡି ବଗିଚା ଠାରୁ ନିକଟସ୍ଥ ବଣ ଜଙ୍ଗଲମାନଙ୍କ ପାଖରେ ବେଶୀ ଋଣୀ । ସହର ପାଖରେ ଜଙ୍ଗଲ ଥିଲେ ବେଶ୍ ସୁନ୍ଦର ଦେଖାଯାଏ । ଜଙ୍ଗଲର ଉଚ୍ଚା ଉଚ୍ଚା ପାଇନ୍ ଗଛ ପ୍ରକୃତିର ଶକ୍ତି ଓ ନ୍ୟାୟ ପରାୟଣତା ପ୍ରଦର୍ଶନ କରିଥାଆନ୍ତି । ଜଙ୍ଗଲ ଓ ବଢନ୍ତି ପାଇନ୍ ଗଛ ଆମ ଜୀବନରେ ଶାନ୍ତି ଓ ଆନନ୍ଦ ପାଇଁ ଖୁବ୍ ଦରକାର ।

ବୁଧବାର: ନଭେମ୍ୱରର ସୂର୍ଯ୍ୟାସ୍ତ ମୋତେ ଏକ କୋମଳ ପୃଥିବୀରେ ପହଞ୍ଚାଇ ଦେବ ଏବଂ ମନେ ପକାଇଦେବ ମୋର ଉକ୍ରାନ୍ତ ଯୌବନକୁ । ଦୁର୍ବଳ କାନରେ ଶେଷ ସଙ୍ଗୀତର ସ୍ୱର ପଡିଲେ ଯେମିତି ବୟସ ଭୁଲି ହୋଇଯାଏ, ସେଇଭଳି ପ୍ରକୃତିର ପ୍ରଭାବ ଆମ ଉପରେ ପଡିଥାଏ । ମୋର ବନ୍ଧୁମାନେ ସବୁଦିନର ବନ୍ଧୁ । ସେମାନେ ଐଶ୍ୱରିକ ଭାବନା ସୃଷ୍ଟି କରିବା ସମୟ ଚିରନ୍ତନ କରିଦେବ ଏଇ ବନ୍ଧୁତ୍ୱକୁ ।

ଗୁରୁବାର: ଆମର ଯାତ୍ରା ଆଜି ଯଥେଷ୍ଟ ନଥିଲା । କେଇ ଘଣ୍ଟାର ବର୍ଷା ଭିତରେ ବି ଆମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ଥାଆନ୍ତୁ । କିନ୍ତୁ ନଦୀ ସାରା ଛୋଟ ଛୋଟ ପ୍ରପାତ । ଭାରି ଡଙ୍ଗାକୁ ଟାଣି ଟାଣି ନେବା କଠିନ । ଆମେ କୂଳେ କୂଳେ ଚାଲିଲୁ । ଗୋଡ ନ ଖସିବା ପାଇଁ ହାତରେ ବାଡି ଧରିଥାଉ । ବର୍ଷା ଓ କୁହୁଡି ପ୍ଲାବିତ ପରିବେଶ । କିନ୍ତୁ ଆମକୁ ଲାଗୁଥିଲା ଆମେ ଯେମିତି ସୂର୍ଯ୍ୟାଲୋକ ଭିତରେ ଅଛୁ । ସବୁଆଡେ ପାଇନ୍ ଓ ଓଦା ମାଟିର ବାସ୍ନା । ଆମକୁ ଅସଂଖ୍ୟ ଜଳପ୍ରପାତ ଯେମିତି ଉତ୍ସାହ ଦେଉଛନ୍ତି ଆଗେଇବାକୁ ।

ଶୁକ୍ରବାର: ଆମେ ପୌରୁଷତ୍ୱରେ ରହିବାକୁ ଚାହୁଁ ବେଶି ସମୟ କାରଣ, ଆମେ ଆମ ପିଲାଦିନର ସ୍ୱପ୍ନକୁ ବେଶୀ କହିବାକୁ ଚାହୁଁ । ସେସବୁ ଅଧା ଭୁଲି ହୋଇଯାଇଥାଏ । ... ପବନ ଜୋରରେ ବହିଲା ଓ ଆମେ ପାଲ ଟାଣି ନେଲୁ । ଆମର ଡଙ୍ଗା ସକାଳୁ ଦ୍ୱିପହର ପର୍ଯ୍ୟନ୍ତ ଚାଲିଥିଲା ଜୋର୍‌ରେ । ଆମେ ଡଙ୍ଗାର ମଙ୍ଗ ଠିକ୍ ଧରିଥିଲୁ । ଆମ ଧମନୀରେ ରକ୍ତର ପ୍ରବାହ ତୀବ୍ରତର ହୋଇଥିଲା । ଆମର ଚିନ୍ତାର ସ୍ରୋତ ନଦୀର ବାଙ୍କ ଭଳି ଦିଗ ବଦଳାଉ ଥିଲା । ମନକୁ ନୂଆ ନୂଆ କଥା ଆସୁଥିଲା ।

ଥୋରୋ ୧୮୩୯ ମସିହାରେ ସାତ ଦିନର ଅଭିଜ୍ଞତାକୁ ନେଇ ଏ ବହି ଲେଖିଛନ୍ତି । ଆମର ଦୁଃସାହସିକ ଯୁବକ ଯୁବତୀମାନେ କେବେକେବେ କ୍ଷିପ୍ରଗତିରେ ବୋହୁଥିବା ହିମାଳୟର ଝରଣାରେ ନୌଯାତ୍ରା କରିଥାଆନ୍ତି । ବ୍ରହ୍ମପୁତ୍ରରେ ନୌଯାତ୍ରା କରି ସଞ୍ଜୟ ହଜାରିକା (Sanjoy Hazarika) ଏକ ଚଳଚ୍ଚିତ୍ର ନିର୍ମାଣ କରିଛନ୍ତି । ନଦୀ ବୋହି ଚାଲିଛି ଓ ନଦୀର ତୀର ଏବଂ ସେଠାର ବସତିସବୁ ବଦଳିବାରେ ଲାଗିଛି । ନଦୀ ଅଟକି ନାହିଁ । ଏ ମଣିଷର ଅନ୍ୱେଷା ମଧ୍ୟ ଅଟକି ନାହିଁ ।

❐ ❐ ❐

## ୪

# ତିନୋଟି ଜୀବନ ଓ ଗୋଟିଏ ମୃତ୍ୟୁ – ୧

ମୋର ଆପଣାର ଅନ୍ତରଙ୍ଗ ସାଥୀ ସୋଦରମାନେ ମରିଗଲା ପରେ ବହୁବାର ମନେ ପଡନ୍ତି । ବେଳ ଅବେଳରେ ତାଙ୍କର ସ୍ମୃତିଚାରଣ ମୁଁ କରିଥାଏ ଅତିକ୍ରାନ୍ତ ସମୟରେ । ସେମାନଙ୍କର ମୁହଁ ବାରମ୍ବାର ଆଖି ଆଗରେ ନାଚି ଉଠେ । ସେମାନଙ୍କର ସ୍ୱର କର୍ଣ୍ଣଗହ୍ୱର ଭିତରେ ଗୁଞ୍ଜରଣ ସୃଷ୍ଟି କରେ । ଅନେକ ମିଠା ଓ ମନଲୋଭା ସ୍ମୃତି ସହ ତିକ୍ତ ଓ ଦୁଃଖଦ ଘଟଣା ଗୁଡିକ ଚଳଚ୍ଚିତ୍ରର ଦୃଶ୍ୟଭଳି ଭାସିଯାଏ । ମୁଁ ଅଧୀର ଓ ଅସ୍ଥିର ହୋଇପଡେ । ବଞ୍ଚିଥିବା ସମୟର ଅନୁଭୂତି ଓ ମରିଗଲା ପରେ ସ୍ମୃତିଭିତରେ ଅନେକ ପାର୍ଥକ୍ୟ ଅନୁଭବ କରିହୁଏ । ଜିଅନ୍ତା ମଣିଷର କଥା ଓ ମରିଗଲା ପରେ ସେଇ ମଣିଷଟିର ପରିକଳ୍ପନା ଭିତରେ ଅନେକ ରଙ୍ଗଭେଦ ହୋଇପଡେ ।

କିନ୍ତୁ କେଉଁମାନେ ମରିଯାଇ ମଧ ଏବେ ମଧ ମୋ ଭିତରେ ଉଦ୍‌ଜୀବିତି ହୋଇ ରହିଛନ୍ତି ବେଳେବେଳେ ମୁଁ ଗଣିବସେ । ସେମାନଙ୍କର କ୍ରମବର୍ଦ୍ଧିଷ୍ଣୁ ସଂଖ୍ୟାକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେବାକୁ ଚେଷ୍ଟାକରେ । ସେମାନେ ଆସନ୍ତି ବିଭିନ୍ନ ପରିପ୍ରେକ୍ଷୀରେ ଓ ବିଭିନ୍ନ ଛନ୍ଦପତନ ବେଳେ । 'ବାପାଙ୍କ ବଜ୍ର ପୃଥିବୀ' ସହ ଆସେ ଓ 'ମାଆଙ୍କ ସ୍ନେହାନୁକଥା' ଯାହା ବିଦଗ୍ଧ ଜର୍ଜରିତ ପ୍ରାଣରେ ପ୍ରଶାନ୍ତି ଆଣିଦିଏ । ଏଇଭଳି ଅନେକ ମାମୁଁ ମାଇଁ, ଦାଦା ଖୁଡୀ, ମଉସା ମାଉସୀ ଆଦିଙ୍କ ମୋ ପ୍ରତି ସ୍ନେହବନ୍ଧନ କଥା ଖୁବ୍ ମନେ ପଡେ ଯେତେବେଳେ ମୁଁ ସୁସ୍ଥ ଥାଏ ଓ ଅତୀତ କଥା ମନେ ପକାଇବାକୁ ସମୟ ପାଇଥାଏ ।

ମନେପଡେ ଆଉ ସବୁ ବନ୍ଧୁମାନଙ୍କ କଥା ଯେଉଁମାନଙ୍କ ସହ ସଙ୍ଗାତ ବସିବାକୁ ପିଲାଦିନରୁ ଏକ ସୁପ୍ତ ପରିକଳ୍ପନା ବାରମ୍ବାର ଜାଗିଉଠେ । ମୋର ତୃତୀୟ ଶ୍ରେଣୀ ହୋଇଥାଏ । ବନ୍ଧୁ ବାବୁଲି ମୋ ସହ ଖୁବ୍ ବୁଲେ, ଖେଳେ, ଯୁକ୍ତି କରେ ଓ ମାଡ ଲାଗେ । ମୁଁ ପହଁରି ଜାଣେ ନାହିଁ ବୋଲି ଥଟାକରେ ଓ ଗୀତ ଗାଇ ଜାଣେ ନାହିଁ ବୋଲି ଛୋଟ କରି ଦେଖେ । ସେ ଭାବେ ବଡ ଓ ବୟସ୍କମାନେ ଖେଳୁଥିବା ଫୁଟବଲକୁ ସେ ମୋଠାରୁ ଜୋରରେ ମାରିପାରିବ ଓ ସେଣ୍ଟର ଫରୱାର୍ଡ ଖେଳିପାରିବ । ସେ ନଦୀର ଏପଟ ସେପଟ ପହଁରି ଯାଏ । ଅଚାନକ ତା'ଭଳି ପୋଖତ ପହଁରାଳି ଦିନେ ନଦୀରେ ବୁଡିଗଲା । କେତେକେତେ ବୁଡାଳି ଆସିଲେ କିନ୍ତୁ ଶବ ମିଳିଲା ନାହିଁ । ଦିନେ ଦୁଇ ଦିନ ପରେ ଶବ ଆପଣାଛାଏଁ ଫୁଲିଯାଇ ଭାସିଲା । ସମସ୍ତେ କହିଲେ କେଉଁ ଖାଲ

ଭିତରେ ଲାଗିଯାଇଥିଲା ବୋଲି । ମୁଁ ବିଶ୍ୱାସ କରିପାରିଲି ନାହିଁ ଯେ ଏତେ ଭଲ ପହଁରା ଜାଣି ମଧ୍ୟ ଗୋଟାଏ ସ୍ରୋତବିହୀନ ନଦୀରେ କେମିତି ମୋର ବନ୍ଧୁ ବୁଡିଗଲା । ବାବୁଲି ଚାଲିଗଲା ସବୁଦିନ ପାଇଁ । ତା'ର କଳା ଦେହରେ ମାଟିଆ ପ୍ୟାଣ୍ଟ୍ ଓ ନେଳିଆ ସାର୍ଟ ଶ୍ମଶାନକୁ ଯିବା ପର୍ଯ୍ୟନ୍ତ ଲାଗିଥିଲା । ମୋର କେତେ ଖଣ୍ଡ ଗପ ବହି ତା'ପାଖରେ ରହିଯାଇଥିଲା ଓ ତା'ର କେତୋଟି ଭଙ୍ଗା ପେନ୍‌ସିଲ୍ କେତେଦିନ ପର୍ଯ୍ୟନ୍ତ ମୋର ବହିବସ୍ତାନି ଭିତରେ ରହିଥିଲା । ସମ୍ଭବତଃ ମୋର ବହିସବୁ ଶ୍ମଶାନରେ ପାଉଁଶ ହୋଇଗଲା ଏବଂ ତା'ର ସେହି ଭଙ୍ଗାପେନ୍‌ସିଲ ଗୁଡିକୁ କେଉଁଠି ଅଜାଣତରେ କେଉଁ ମନ୍ଦିର ପାଖରେ ମୁଁ ଥୋଇଦେଇଥିବି ଏକ ବନ୍ଧୁତ୍ୱର ଉପସଂହାର ଭାବେ । ବାବୁଲି ଚାଲିଗଲା ସତ, ସବୁଦିନ ପାଇଁ କିନ୍ତୁ ଆସିବାକୁ ଇଙ୍ଗିତ ଦେଇଥିଲା ।

ଏକଥା ଲେଖିବି ଲେଖିବି ବୋଲି ମୁଁ କେତେଦିନରୁ ଅଣ୍ଟା ଭିଡିଛି । କେତେଥର ଶପଥ ନେଇଛି ଓ ଅନେକ ଥର ବି କେଇ ଧାଡି ଲେଖିଦେଇଛି । ଲେଖିବାକୁ ଇଛାହୁଏ ପ୍ରତିଥର ଯେତେବେଳେ ମୁଁ ଜ୍ୱରରେ ପ୍ରଳାପ କରୁଥାଏ ଏବଂ ମୁଣ୍ଡ ବ୍ୟଥାରେ ଅଚେତ ହେବା ଅବସ୍ଥାରେ ପହଞ୍ଚି ଯାଇଥାଏ । ଲେଖିଦେଇ ମନର ଭାରକୁ ଲାଘବ କରିଦେବା ପାଇଁ ମୁଁ ଯେମିତି ଏକ ଜ୍ୟାମିତିକ ସତ୍ୟକୁ ପ୍ରମାଣିତ କରୁଥାଏ । କିନ୍ତୁ କେଜାଣି କାହିଁକି ଲେଖିଦେଇ ଏକ ଅସମାପ୍ତ ଅଧ୍ୟାୟକୁ ଶେଷ କରିବାକୁ ମୁଁ ଅଭିନୟ କରେ ।

ଆଉ ଏକ ସତ୍ୟ ଘଟଣା ଏବଂ ବାରମ୍ୱାର ମୋ ମାନସପଟରେ ଅଙ୍କିତ ହେଉଥିବା ସେଇ ପ୍ରତିଛବିଟି ଏକ ଅପରିକଳ୍ପିତ ମଣିଷର କଥା । ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ମରିଗଲେ ଓ ସତ କହିବାକୁ ଗଲେ ସେ ଆତ୍ମହତ୍ୟା କରିଲେ । କାହିଁକି ଜାଣନ୍ତି ? ସେତେବେଳେ ଆମେ ସମସ୍ତେ ଭାବୁଥିଲୁ ମରିବା ସହଜ ଓ ବଞ୍ଚିବା କଠିନ । ଜୀବନ ସହ ଖେଳିବା ଏକ ଆହ୍ୱାନ, ବାଜି ଲଗାଇବା ଏକ କ୍ଷଣିକ ଉତ୍ତେଜନା । ବଞ୍ଚିରହିବାକୁ ଯୋଜନା କରିବା ଅସମ୍ଭବ କିନ୍ତୁ ନିମିଷେକ ମାତ୍ରକେ ନିଜକୁ ନିଶ୍ଚିହ୍ନ କରିଦେବା ନିଜର ଏକମାତ୍ର ସାମର୍ଥ୍ୟ । ସେ ପର୍ଯ୍ୟନ୍ତ ଆମେ ସମସ୍ତେ ହୁଏତ ବିଖ୍ୟାତ ଫରାସୀ ଔପନାସିକ ଆଲବର୍ଟ କାମ୍ୟୁଙ୍କୁ ପଢ଼ିନଥିଲୁ ଓ ଜାଣିନଥିଲୁ ଯେ, ନିଜ ହାତରେ ପ୍ରାଣ ନେଇପାରିବାଟା କାପୁରୁଷତା ନୁହେଁ ।

ସେ ଆତ୍ମହତ୍ୟା କରିଥିଲେ ବୋଲି ସାଧାରଣ ଅର୍ଥରେ କହିହେବ କି ? ଯେଉଁ ବ୍ୟକ୍ତିଟି ଏକ ଭୀଷଣ ବର୍ଷଣମୁଖର ରାତ୍ରିରେ ଏକ ଖୋଲା କୋଠରୀରେ ଦୁଇବୋତଲ ଟିକ୍‌ଟ୍ୱେଣ୍ଟି ପିଇ ଓ ଶକ୍ତ ରସି ବେକରେ ଝୁଲାଇ ନିଜର ପ୍ରାଣଟିକୁ ନିଜ ହାତରେ ଶେଷ କରିଦେଲା, ସେ ଜାପାନ୍‌ର ସାମୁରାଇ ଭଳି ହାରାକିରି କରିନଥିଲା ବା କେଉଁ ବିଦଗ୍ଧ ପ୍ରେମିକ ଭଳି ନୈରାଶ୍ୟରେ ବୁଡି ନଥିଲା । ସେ ନିଜ ଜ୍ଞାତସାରରେ ହିଁ ଏ ସବୁ କରିଥିଲା । ମେଡିକାଲ ଜର୍ଣ୍ଣାଲ ସେ ପଢ଼ିଥିଲା ଓ ନିଜର ଡାକ୍ତର ଭାଇ ସହ ମତ ବିନିମୟ କରିଥିଲା । ତା'ର ଜଣେ ବନ୍ଧୁ (ଯିଏ ଦସ୍ତୋଭସ୍କିଙ୍କ ଏକ ପ୍ରିୟ ପାଠକ) ତାକୁ ଯନ୍ତ୍ରଣାବିହୀନ ମୃତ୍ୟୁ

କଥା କହି କୁଆଡେ ମରିବାର ସହଜ ବାଟ ଦେଖାଇ ଦେଇଥିଲେ । ଆଉ ଜଣେ ବନ୍ଧୁ କୁଆଡେ ତା'ସହ ବାଜି ମାରିଥିଲେ ଯେ ବଞ୍ଚିବା ଓ ମରିବା ଖେଳରେ ସେ ହାରିଯିବ କାରଣ ସେ ନିଜକୁ ଶେଷ ମୁହୂର୍ତ୍ତରେ କେଉଁ ଏକ ରୋମାଣ୍ଟିକ୍ ନାୟକ ଭଳି ଅଦ୍‌ଭୂତ ଢ଼ଙ୍ଗରେ ବଞ୍ଚାଇ ଦେବ ।

ମୋର ବନ୍ଧୁ ବଞ୍ଚିବାକୁ ଓ ନିଜକୁ ଆତ୍ମହତ୍ୟାରୁ ବଞ୍ଚାଇବାକୁ ଚେଷ୍ଟା କରିନଥିଲେ ନିଶ୍ଚିତ, ଯଦି ସେ ଚାହିଁ ଥାଆନ୍ତେ ସେ ଗୋଡ ବଢ଼ାଇ ଖଟ ବା ଚୌକିର ସହାୟତାରେ ରସିର ବନ୍ଧନକୁ ହୁଗୁଳା କରିଦେଇ ଥାଆନ୍ତେ । ସେ ଚାହିଁଥିଲେ ଚିତ୍କାର କରି ପାଖ ରୁମ୍‌ରେ ଥିବା ବନ୍ଧୁମାନଙ୍କୁ ଉଠାଇ ଦେଇଥାଆନ୍ତେ, ସେ ଚାହିଁଥିଲେ କୌଣସି ନା କୌଣସି ବାଟରେ ନିଜର ପ୍ରାଣରକ୍ଷା କରିପାରିଥାଆନ୍ତେ । କିନ୍ତୁ ସେ ସ୍ଥିର ଚିତ୍ତରେ ମରିଥିଲେ । ବେକରେ ଲଗାଇଥିବା ରସି ଉଦ୍ଦେଶ୍ୟରେ ଶେଷକଥା ସେ ଲେଖିଥିଲେ ଯେ ସେ ଯେମିତି ନଛିଡେ ଶେଷ ମୁହୂର୍ତ୍ତରେ । କାରଣ ଛିଡିଗଲେ ସେ ବଞ୍ଚିଯିବ ଓ ଲୋକହସା ହେବ ଏବଂ ତାହା ମରିବା ଠାରୁ ଆହୁରି ଯନ୍ତ୍ରଣାଦାୟକ ହେବ ।

ସେ ଅଦ୍ୱିତୀୟ ଥିଲେ । ଆମେ ସବୁ ଜାତୀୟ ବୃତ୍ତି ପାଇଥିଲା ବେଳେ ସେ ଜାତୀୟ ବିଜ୍ଞାନ ପ୍ରତିଭା ବୃତ୍ତି ପାଇଥିଲେ ଓ ସବୁକ୍ଷେତ୍ରରେ ମେଧାବୀ ବୋଲି ପ୍ରମାଣିତ ହେଉଥିଲେ । ଚେସ୍ ଖେଳୁଥିଲେ, କ୍ୟାରମ୍ ଖେଳୁଥିଲେ ଆମ କଲେଜ୍ ହଷ୍ଟେଲ୍‌ର ଫୁଟବଲ ଟିମ୍‌ରେ ଗୋଲକିପର ବି ହୋଇଥିଲେ । ଦୁଃସାହସୀ ଥିଲେ କଥାକେ କଥାକେ । ଚଳନ୍ତା ଟ୍ରେନ୍‌ଟି ଯେତେବେଳେ କୁଆଖାଇ ନଦୀ ପୋଲ ଉପରେ ଯାଉଥାଏ ସେ ଓହ୍ଲାଇପଡନ୍ତି ଓ ଟ୍ରେନ୍ ସହ କିଛି ସମୟ ଦୌଡି ପୁଣି କମ୍ପାର୍ଟମେଣ୍ଟ ଭିତରକୁ ପଶିଆସନ୍ତି । ନନ୍ଦନକାନନରେ ବାଘ ନିଶରେ ଯନ୍ତା ପାଖକୁ ଯାଇ ହାତମାରନ୍ତି । ହଷ୍ଟେଲ ଛାତକୁ ଯାଇ ପାରାପେଟ୍ ଉପରେ ଅନ୍ଧାରରେ ଦୌଡନ୍ତି । ମନୋଜ ଦାସଙ୍କ "କଥା ଓ କାହାଣୀ"ରୁ ଭୂତୁଣୀ ଏକ କ୍ରମଶ ବିଦାୟ 'ପଢ଼ି ଭୂତୁଣୀମାନଙ୍କୁ ଖୋଜିବାକୁ' ଶ୍ମଶାନରେ ରାତି କଟାଇ ଦିଅନ୍ତି । ହଷ୍ଟେଲର ଖାଇବା ପ୍ରତିଯୋଗିତାରେ ସବୁଠାରୁ ବେଶୀ ରୋଟି ଓ ମାଂସ ଖାଆନ୍ତି । ଡ୍ରାମାରେ ନାୟିକା ଭୂମିକା କରିବାକୁ ସମସ୍ତେ ନାରାଜ ହେଉଥିଲା ବେଳେ ମୁହଁରେ ପାଉଡର, ଲିପ୍‌ଷ୍ଟିକ୍ ମାରି ସେ ଆଗକୁ ଆସନ୍ତି ଅଭିନୟ କରିବାକୁ ।

ସ୍ନାତକ ଦୁଇଟି ବର୍ଷ ଆମେ ହଷ୍ଟେଲର ଗୋଟିଏ ରୁମ୍‌ରେ ରହିଥିଲୁ । ସେ ରସାୟନ ବିଜ୍ଞାନର ଛାତ୍ର ଏବଂ ମୁଁ ପଦାର୍ଥ ବିଜ୍ଞାନର । ପ୍ରଫେସର୍ ରାଉତ ମିଳିତ କ୍ଲାସରେ ସବୁ ବିଜ୍ଞାନ ଛାତ୍ରଙ୍କୁ ଏକାଠି ପଢ଼ାନ୍ତି । ଆମେ ସେତେବେଳେ ପଛ ବେଞ୍ଚରେ ବସିଥାଉ । ବେଳେବେଳେ ସୁବିଧା ଦେଖି ଚମ୍ପଟ ମାରୁ ଓ ଗୁଲୁରାଟୀ ଦୋକାନକୁ ଯାଇ ପକୁଡି ଖାଉ । ଆମେ କିନ୍ତୁ କ୍ଲାସ୍ ଶେଷ ହେଲେ ସାଉଥ୍ ଇଣ୍ଡିଆନ୍ ହୋଟେଲରେ ଦୋସା ହାଲୁଆ ଖାଇ କଲେଜ ପଡିଆ ପାଖ ସିମେଣ୍ଟ ବେଞ୍ଚରେ ସନ୍ଧ୍ୟା ଶେଷ ହେବା ପର୍ଯ୍ୟନ୍ତ ବସୁ । ବେଳେବେଳେ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ସେଇଠି ବସିଥାଉ, ବେଳେବେଳେ କଥାବାର୍ତ୍ତା

ହେଉ । ଆଉ କେତେବେଳେ ଆମେ ଚୁପ୍‌ଚାପ କେବଳ ସମୟ କାଟିଥାଉ । ଜୀବନ ଯୌବନର ସବୁ କବିତା ଆମେ ଯେମିତି ସେଇଠି ପରସ୍ପରକୁ ଶୁଣାଇଥାଉ ।

ମୋର ବନ୍ଧୁ ଦୁଇଥର ନୋବେଲ ପୁରସ୍କାରପ୍ରାପ୍ତ ରସାୟନବିତ୍ ଓ ବୈଜ୍ଞାନିକ ଲାଇନସ୍ ପଉଲିଙ୍ଗଙ୍କୁ ଆମକୁ ପରିଚିତ କରାନ୍ତି ଓ ବିଶ୍ୱକୁ ତାଙ୍କର ଅବଦାନ ବର୍ଣ୍ଣନା କରନ୍ତି । ଆମେ ସବୁ କିନ୍ତୁ ତାଙ୍କର ପିଲାଦିନର କଥା ଶୁଣିବାକୁ ବେଶୀ ଇଚ୍ଛା କରୁ । ତାଙ୍କ ଘର ପାଖ ଗୁମ୍ଫା ଓ ସେଗୁଡିକର କିମ୍ବଦନ୍ତୀ ଶୁଣିବାକୁ ଅଡିବସୁ । ସେ ଗୁମ୍ଫା ଭିତରେ ଗୁମ୍ଫା ଓ ତା'ଭିତରେ ଥିବା ଅଶରୀର ମାନଙ୍କର ସହ କଥୋପକଥନ କଥା ବେଳେବେଳେ କହନ୍ତି ।

କେଜାଣି କାହିଁକି ଆମର ଅବଚେତନ ମାନସିକତାରେ ପରସ୍ପର ପ୍ରତି ଆହ୍ୱାନ ଲୁକ୍‌କାୟିତ ଥାଏ । ସେ ନୋବେଲ୍ ପୁରସ୍କାର ପ୍ରାପ୍ତ ବିଖ୍ୟାତ୍ ରସାୟନବିତ୍ ଲାଇନସ୍ ପଉଲିଙ୍ଗଙ୍କ କଥା କହୁଥିଲାବେଳେ ମୁଁ ନୋବେଲ୍ ପୁରସ୍କାର ବିଜେତା ଏ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ବୈଜ୍ଞାନିକ ରିଚାର୍ଡ ଫିନ୍‌ମାନ୍‌ଙ୍କ ଗୁଣ ଗାଉଥାଏ । ମୁଁ 'ମନୋଜ ଦାସଙ୍କ କଥା ଓ କାହାଣୀ' ବହିଟି ଧରି ବୁଲିଲା ବେଳେ ସେ ଅଖିଳ ମୋହନ ପଟ୍ଟନାୟକଙ୍କ 'ଝଡର ଇଗଲ ଓ ଧରଣୀର କୃଷ୍ଣସାର' ବହିଟି ଟେବୁଲ ଉପରେ ରଖି ଥାଆନ୍ତି । ସେ ତାଙ୍କ ଘର ପାଖ ଗୁମ୍ଫା କଥା କହିଲାବେଳେ ମୁଁ ଆମ ଘର ପାଖ ବହମାନ ନଦୀ କଥା କହିଥାଏ । ସେ ନକ୍ଷତ୍ରଖଚିତ ଆକାଶକୁ ଭଲପାଇଲା ବେଳେ ମୁଁ ହଳଦିଆ ଫୁଲମାନଙ୍କୁ ଭଲ ପାଏ । ସେ କେମେଷ୍ଟ୍ରୀ ଅଫ୍ ଲାଇଫ୍ କହିଲା ବେଳେ ମୁଁ ମେଟାଫିଜିକ୍‌ସରୁ କଥା କହିଥାଏ । ଏଇଭଳି ଏକ ସମାନ୍ତରାଳ ତର୍କ ଆମ ଭିତରେ ଚାଲିଥାଏ ।

ମୋର ବ୍ୟର୍ଥତା ଓ ବିମର୍ଷତାର ଅନେକ ସ୍ତର ଭିତରେ ମୁଁ ବୁଡିଯାଇଥିଲା ବେଳେ ତାଙ୍କର ଚିର ପ୍ରଫୁଲ୍ଲ ବ୍ୟକ୍ତିତ୍ୱ ମୋତେ ମୋହଗ୍ରସ୍ତ କରେ । ଆମ ସମସ୍ତଙ୍କର ଆଡ୍‌ଭେଞ୍ଚରରେ ସେ ନେତୃତ୍ୱ ନେଇଥିଲେ । କୋଣାର୍କର ନିର୍ଜନ ବେଳାଭୂମିରେ ରାତି କଟାଇବା ବା ଚଣ୍ଡିଖୋଲର ପାହାଡ ଚଢ଼ିବାରେ ସେ ଆଗରେ ଥିଲେ । ସବୁ ନିୟମ କାନୁନ ଭାଙ୍ଗିବାରେ ସେ ଆମ ଭିତରେ ପ୍ରଥମ ଥିଲେ । ବିଜ୍ଞାନଗାରରେ ଏସିଡ୍ ସହ ଖେଳିବା ତାଙ୍କର ଏକ ତୀବ୍ର ଆଗ୍ରହ ଥିଲା । ଜାତୀୟ ବିଜ୍ଞାନ ଶିବିରମାନଙ୍କରେ ଓଡ଼ିଆ ବୋଲି ଗର୍ବକରି କୁଆଡେ ଅଣଓଡ଼ିଆଙ୍କ ସହ ସେ ହାତାହାତି କରୁଥିଲେ । ବସ୍ତିର ସମସ୍ତ ଗୁଣ୍ଡାମାନଙ୍କ ସହ ମିଶୁଥିଲେ ଓ କଲେଜର ସବୁ ମେଧାବୀ ଛାତ୍ରଙ୍କ ଭିତରେ ସେ ଅଗ୍ରଗଣ୍ୟ ଥିଲେ । ବନ୍ଧୁତା ଓ ଭଲ ପାଇବାର ସ୍ୱାଦ ସେ ପରିବାର ଭିତରେ ଓ ପରିବାର ବାହାରେ ବିଞ୍ଚି ଦେଇଥିଲେ । ଆମ ଭିତରୁ ଯେଉଁମାନେ ତାଙ୍କର ପ୍ରେମିକାମାନଙ୍କ ପାଖରେ ମନର କଥା କହିପାରୁ ନଥିଲେ ସେ ଆପଣାଛାଏଁ ସେ କଥା ସବୁ କହିପାରୁଥିଲେ; ସବୁ ପ୍ରେମ କାହାଣୀରେ ସେ ଏକ ଯୋଗାଯୋଗ ହେବାକୁ ପଛାଇ ନଥିଲେ ।

ତାଙ୍କର ଇଚ୍ଛା ଥିଲା ରସାୟନ ବିଜ୍ଞାନରେ ସେ ବୈଜ୍ଞାନିକ ହେବେ ଓ ନୂଆତତ୍ତ୍ୱ ସମସ୍ତଙ୍କ ପାଇଁ ଆଣିଦେବେ । ତାଙ୍କର ଇଚ୍ଛା ଥିଲା ସେ ଆମ ସମସ୍ତଙ୍କ ଭିତରେ ରହିବେ ଓ ଆମର ମଣିଷ ଗଢ଼ିବାର ସ୍ୱପ୍ନକୁ ସାକାର କରିବେ । କିନ୍ତୁ ସେ ଯେପରି ଅଚାନକ ଆତ୍ମହତ୍ୟା କଲେ ଆମକୁ ଜୀବନ ଓ ମୃତ୍ୟୁର ଏକ ନୂଆ ଅର୍ଥ ଦେବା ପାଇଁ ଯେପରି ଏକ ଅଭିନୟ କରୁଥିଲେ । ସତରେ !

❐ ❐ ❐

## ୪

# ତିନୋଟି ଜୀବନ ଓ ଗୋଟିଏ ମୃତ୍ୟୁ - ୨

ଆମ ସହର ଆମକୁ ଭଲ ଲାଗେ ସବୁବେଳେ । ପ୍ରଥମେ ବଜାର, ତା'ପରେ ରାଜାଙ୍କ ହାତୀଶାଳ, ତା'ପରେ ଘୋଡାଶାଳ, ଏବଂ ତା'ପରେ ମନ୍ଦିର ଓ ଶେଷରେ ରାଜାଙ୍କ ନଅର ଯେଉଁଠି ରାଜା ଓ ରାଣୀ ରହନ୍ତି । ଆଉ ରହନ୍ତି ରାଜାଙ୍କ ପୁଅଝିଅମାନେ, ସାମନ୍ତ ଓ ରକ୍ଷିତାମାନେ, ପାଇକ ଓ ପିଆଦାମାନେ । ରାଜାଙ୍କ ନଅର ସାମ୍ନାରେ ସିଂହଦ୍ୱାର ଯାହା କଳା ଓ ଭାସ୍କର୍ଯ୍ୟର ଏକ ଅଦ୍ୱିତୀୟ ସଂଭାର । ଏକ ବହମାନ ନଦୀର ସୌନ୍ଦର୍ଯ୍ୟରେ ଶୋଭା ପାଉଥିବା ରାଜାଙ୍କ ମନଖୁସି ପାଇଁ 'ହାୱା ମହଲ', ସେଇଠି ବସିବା ପାଇଁ କେତୋଟି ପଥରଚୌକୀ । ସେଇଠି ବସିଲେ ଜଣେ ହଜିଯିବ କେଉଁ ଏକ ଦୂର ଦୂରାନ୍ତରର କଳ୍ପନାରେ ମନଲୋଭା ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ସୁଦୃଶ୍ୟ ମଧ୍ୟରେ ।

ଆମ ସ୍କୁଲକୁ ରାସ୍ତା ସେଇବାଟେ । ଗଲା ଆସିଲାବେଳେ ଆମେ ସାଙ୍ଗମାନେ ସେଇଠି ଦଣ୍ଡେ ଛିଡା ହେଉ ଓ ନଦୀ ଏବଂ ନଅର ଉଭୟକୁ ଲକ୍ଷ୍ୟ କରୁ । ସନ୍ଧ୍ୟାରେ ଆସିବାକୁ ଯୋଜନା କରୁ । ସବୁ ନୀତି ନିୟମକୁ ଭାଙ୍ଗିବାର ଷଡଯନ୍ତ୍ର ପାଇଁ ଆମେ ସେଠାକୁ ଆସିଥାଉ । ଯେଉଁମାନେ ମୋ ସହ ସେଠାକୁ ଆସୁଥିଲେ, ସେଥିରେ ଜଣେ ବନ୍ଧୁ ବୟସରେ ଛୋଟଥିଲେ, ଦୁଇକ୍ଲାସ୍ ତଳେ ପଢୁଥିଲେ ସତ କିନ୍ତୁ ବୁଦ୍ଧି ବିବେକରେ ଆମ ସହ ସମାନ ସ୍ତରରେ ଥିଲେ । ଆମର ଜ୍ଞାନ ଗାରିମାରେ ସେ ଡରିଯାଉନଥିଲେ । ତାଙ୍କର ପରିବାର କାବ୍ୟତୀର୍ଥଙ୍କ ପରିବାର ଯିଏ କେତେଯୁଗରୁ ଭବିଷ୍ୟତକୁ ଦେଖି ପାରିଛି, ରାଜା ମହାରାଜାମାନଙ୍କର ଭାଗ୍ୟ ବର୍ଣ୍ଣନା କରି ପାରିଛି ଏବଂ ସାଧାରଣ ଲୋକଙ୍କ ଜାତକ ମଧ୍ୟ ଲେଖି ଆସିଛି । ସେ ସମ୍ଭବତଃ ଜ୍ୟୋତିଷଶାସ୍ତ୍ରରେ ବିଶ୍ୱାସ କରୁ ନଥିଲେ, ନଚେତ୍ ଆମଭଳି ନାସ୍ତିକ ଏବଂ ଶାସ୍ତ୍ର ବିରୋଧୀମାନଙ୍କ ସହ ମିଶିନଥାନ୍ତେ ।

ସେ ମଧ୍ୟ ସାମିଲ ହୋଇ ପାରୁନଥିଲେ 'ବ୍ରାହ୍ମଣ ଶାସନ'ର ପଣ୍ଡିତ ଓ ବୁଦ୍ଧିଜୀବୀମାନଙ୍କ ଭିତରେ । ସେ 'ଶାସନ' ବ୍ରାହ୍ମଣଙ୍କ ଭିତରେ ଥିଲେ କବି ଓ ନାଟ୍ୟକାର, ବେଦବେଦାନ୍ତର ଟୀକାକାର, ମାର୍କସ୍ ଓ ଏଂଗେଲସ୍‌ଙ୍କ ବ୍ୟାଖ୍ୟାକାର, ରାଜାଙ୍କ ସ୍ତାବକ ଓ ଦେବାଦେବୀଙ୍କ ପୂଜକ । ମୋର ବନ୍ଧୁ କାହିଁକି ସେମାନଙ୍କୁ ଛାଡି ମୋ ଆଡକୁ ଆକର୍ଷିତ ହେଲେ, ଏବେ ମଧ୍ୟ ମୁଁ ବୁଝି ପାରୁ ନାହିଁ । ମୋ ସହ ଚର୍ଚ୍ଚାକରନ୍ତି ସାହିତ୍ୟ ଓ ସଂସ୍କୃତି,

ରାଜନୀତି ଓ ଅର୍ଥନୀତି, ନ୍ୟାୟ ଓ ଅନ୍ୟାୟ, ମଣିଷତ୍ୱ ଓ ପଶୁତ୍ୱ, ବିଜ୍ଞାନ ଓ ଦର୍ଶନ । ଆମେସବୁ ସ୍କୁଲର ଛାତ୍ର, ନିଶଦାଢ଼ି ଉଠି ନାହିଁ । ତାରୁଣ୍ୟର ପ୍ରଥମ ସ୍ପର୍ଶ ଲାଗିଛି । ପ୍ରେମ ଓ ପ୍ରେମାଳପର ଏକ ଝଲକ ଆମମାନଙ୍କ ଭିତରେ କେଉଁଠି ନା କେଉଁଠି ପ୍ରତିଫଳିତ ହୋଇଛି । ସେ କିନ୍ତୁ ମୋ ଠାରୁ ଶୁଣିବାକୁ ଚାହୁଁଥିଲେ ମୋର ଦୃଷ୍ଟିକୋଣ ସବୁବିଷୟରେ, "ସମାଜର ଝିଟିପିଟି କହେ"ର ତର୍ଜମା କରୁଥିଲେ । ପ୍ରଜାତନ୍ତ୍ରର 'ଗାଁ ମଜଲିସ୍' ପଢୁଥିଲେ । ନିଆଁ ଖୁଣ୍ଟାର ଲେଖା ସବୁ ମୋର ଦୃଷ୍ଟି ଆକର୍ଷଣ କରୁଥିଲେ । ଆଜିକୁ ପ୍ରାୟ ୩୫ ବର୍ଷ ତଳର କଥା ମନେପଡୁଛି । କାରଣ ସେ ମୋର ଅତିପ୍ରିୟ ହୋଇ ମଧ୍ୟ ବଞ୍ଚି ପାରିନଥିଲେ । କିନ୍ତୁ ସେ ବଞ୍ଚିବାକୁ ଚାହୁଁଥିଲେ । ସ୍କୁଲ ପରେ କଲେଜକୁ ଗଲେ ଓ କଲେଜ ରାଜନୀତିରେ ଭାଗ ନେଲେ । ରାଜନୀତିର ପରିଭାଷା ବୁଝିଲେ ଓ କୂଟନୀତିକୁ ମଧ ଜୀବନର କେଉଁ କେଉଁ ମୋଡରେ ପ୍ରୟୋଗ କଲେ । ଦଳୀୟ ରାଜନୀତିରେ ଭାଗ ନେଲେ ଓ ନେତାମାନଙ୍କର ଦିଗଦର୍ଶକ ହେଲେ । ପେଟ ପୋଷିବାକୁ ଶିକ୍ଷକତା କଲେ । କେବେକେମିତି ରେଭେନ୍‌ସା କଲେଜ ବା ବାଣୀବିହାରରେ ଅଚାନକ ଆସି ପହଞ୍ଚିଗଲେ ମୋ ସହ ଦସ୍ତୋଭସ୍କି, କାମ୍ୟୁ ବା ସାର୍ତ୍ତଙ୍କ କଥା ଆମର ପ୍ରିୟ 'ହାୱା ମହଲ'ରେ ଆଲୋଚନା କରୁଥିଲେ । ମୁଁ ପହଞ୍ଚିଲେ ତାଙ୍କର ସେ ଦିନର ସବୁ କାର୍ଯ୍ୟକ୍ରମ ଅଟକି ଯାଏ । ମୋ ପାଖେ ପାଖେ ସେ ଥାଆନ୍ତି ସବୁବେଳେ । ଘରଦ୍ୱାର, ପରିବାର, ସ୍କୁଲ ଓ ଅନ୍ୟ ଦାୟିତ୍ୱ ସେ ଭୁଲି ଯାଆନ୍ତି । ମୋ ତାଗିଦ୍ ସତ୍ତ୍ୱେ ସେ ମୋ ପାଖ ଛାଡନ୍ତି ନାହିଁ । ସମ୍ଭବତଃ ସେଦିନ ବହୁ କଷ୍ଟରେ ପାନ, ସିଗାରେଟ୍, ମଦକୁ ମଧ ମୋ ଖାତିରରେ ସେ ଦୂରେଇ ଦିଅନ୍ତି ।

ସେ ଏକ ଅଦ୍ୱିତୀୟ ଢ଼ଙ୍ଗରେ ଜୀବନକୁ ଭଲ ପାଉଥିଲେ, ଉପଭୋଗ କରିବାକୁ ଚାହୁଁଥିଲେ, କ୍ଷମତା ଲିପ୍‌ସୁ ଥିଲେ ସତ କିନ୍ତୁ ମାନବବାଦୀ ହେବାକୁ ପ୍ରୟାସ କରୁଥିଲେ । ଏକ ସୁସ୍ଥ ପରିବେଶ ପାଇଁ ଦଳେ ଯୁବକଙ୍କୁ ନେଇ ପରିବେଶ ସମିତି ଗଢିଥିଲେ । ତାଳଚେରର ବର୍ଦ୍ଧିଷ୍ଣୁ ପରିବେଶର ଅବକ୍ଷୟକୁ ସେ ପ୍ରତିରୋଧ କରୁଥିଲେ । ମୋ ସହ ଗ୍ରୀନ୍ ପଲିଟିକ୍‌ସ ଏବଂ ଏନଭାରନ୍‌ମେଣ୍ଟାଲିଜମ୍ ବିଷୟରେ ତର୍କ କରୁଥିଲେ । ସ୍ୱାର୍ଥାନ୍ୱେଷୀଙ୍କ ସହ ସେ ଲଢୁଥିଲେ, ଆଉ ସମାଜ ବିରୋଧୀଙ୍କ ସହ ମଧ ।

ସେ ସଂସାରୀ ହେବାକୁ ଚାହିଁଥିଲେ ଓ ହେଲେ ମଧ । ବିବାହ କରି ମଧ ପରିବାର ବାହାରେ ସେ ଆଉ ଏକ ପରିବାର ଗଢ଼ିବାକୁ ଚାହୁଁଥିଲେ । ନିଜର ଉପାର୍ଜିତ ଅର୍ଥ ଓ ଶିକ୍ଷାକୁ ସେ ଗବେଷଣାରେ ବିନିଯୋଗ କରିବାର ଯୋଜନା କରୁଥିଲେ । ମୁଁ ତାଙ୍କ ପାଇଁ ଥିଲି ହେଡ ଅଫିସ ଏବଂ ମୋର ଅନୁଭବ ତାଙ୍କ ପାଇଁ ଥିଲା ଅପରିହାର୍ଯ୍ୟ । ମୋ ପ୍ରତି ଆନୁଗତ୍ୟ ଥିଲା ଯେମିତି ତାଙ୍କ ଜୀବନର ଏକ ମିଶନ୍ ।

ସେ କିନ୍ତୁ ଅଚାନକ କ୍ୟାନ୍‌ସର ରୋଗରେ ପଡିଲେ ଓ ସବୁ ଚିକିତ୍ସା ସତ୍ତ୍ୱେ ବଞ୍ଚି ପାରିଲେ ନାହିଁ । କେଇଦିନ ଭିତରେ ମରିଗଲେ ଓ ଅନେକ କଷ୍ଟ ପାଇଲେ ମରିବା

ପୂର୍ବରୁ । ତାଙ୍କର ମରିବା ଖବର ମୁଁ ଖବରକାଗଜରୁ ଜାଣିଥିଲି । ମୁଁ ସ୍ତମ୍ଭୀଭୂତ ହୋଇପଡିଥିଲି । ମୋର ଜନ୍ମ ସ୍ଥାନ, ମୋର ସ୍କୁଲ ଜୀବନ, ମୋର ଜୀବନ ଓ ଯୌବନର ଏକ ଜୀବନ୍ତ ସାକ୍ଷୀ, ଆମର ପ୍ରିୟ ହାଓ୍ୱା ମହଲର ଏକ ଅଭୁଲା ଚରିତ୍ର ସବୁଦିନ ପାଇଁ ଇତିହାସ ହୋଇଗଲେ ।

ଅନେକ ଦିନ ଧରି ମୁଁ ମୋର ପ୍ରିୟଜନଙ୍କ ମୃତ୍ୟୁରେ ବ୍ୟଥିତ ହୋଇଛି । ମୃତ୍ୟୁ ମୋତେ ଭୟଙ୍କର ଜଣାପଡିନାହିଁ ସତ, ମୁଁ କିନ୍ତୁ ପ୍ରତିରୋଧାତ୍ମକ ଭାବରେ ବାରମ୍ବାର ଉଲ୍ଲସିତ ହୋଇଛି । 'ମୃତ୍ୟୁ'ଉପରେ ଲେଖାଯାଉଥିବା କବିତା, ଦର୍ଶନ, ମନସ୍ତତ୍ତ୍ୱର ଆଭିମୁଖ୍ୟ ମୁଁ ବୁଝିବାକୁ ଚେଷ୍ଟା କରିଛି । ଜଣେ ବନ୍ଧୁ ମରିଗଲା ପରେ ମୁଁ ନିଜେ ମୃତ୍ୟୁ ସହିତ ଲଢ଼ିବାର ଯନ୍ତ୍ରଣାରେ ଅନେକ ଦିନ ଆକ୍ରାନ୍ତ ହୋଇଛି । ମୃତ୍ୟୁକୁ ବିଶ୍ଳେଷଣ କରି ଅନେକ କଥା ଲେଖାଯାଇଛି । ବେଳେବେଳେ ଏକଥା ମୋତେ ଆଶ୍ଚର୍ଯ୍ୟ ଲାଗେ ଯେ ମୃତ୍ୟୁ ସମ୍ପର୍କିତ ବିଶ୍ୱ ସାହିତ୍ୟକୁ କାହିଁକି ମୋତେ ପଢ଼ିବାକୁ ଏତେ ଭଲ ଲାଗେ । ଭଗବତ ଗୀତା ଠାରୁ ଆରମ୍ଭ କରି ବାଇବେଲ ପର୍ଯ୍ୟନ୍ତ, ଦାନ୍ତେଙ୍କ ଠାରୁ ଆରମ୍ଭ କରି ଗେଟେଙ୍କ ପର୍ଯ୍ୟନ୍ତ, ଟେନିସନ୍‌ଙ୍କ ଠାରୁ ଆରମ୍ଭ କରି ଟାଗୋରଙ୍କ ପର୍ଯ୍ୟନ୍ତ, ରିଲ୍‌କେଙ୍କ କବିତା ଠାରୁ ଆରମ୍ଭ କରି ଲୋର୍କାଙ୍କ ପଦ୍ୟାବଳୀ ପର୍ଯ୍ୟନ୍ତ, ଦସ୍ତୋଭସ୍କିଙ୍କ ଉପନ୍ୟାସ ଠାରୁ ଆରମ୍ଭ କରି ମାର୍କ୍ୱେଜଙ୍କ ଗଳ୍ପ ପର୍ଯ୍ୟନ୍ତ, କେବେ କେମିତି ବହି ସବୁ ହସ୍ତଗତ ହୋଇଥାଏ । ପାଠ୍ୟ ପୁସ୍ତକ ବହି ଅପେକ୍ଷା ଏ ବହିଗୁଡିକୁ ମୁଁ ଆଦରି ବସେ । ଗଣିତ ବା ପଦାର୍ଥ ବିଜ୍ଞାନର ଥିଓରୀ ଅପେକ୍ଷା ଜୀବନମୃତ୍ୟୁର ରହସ୍ୟ ବେଶୀ ରୋମାଞ୍ଚକର ଲାଗେ । ମୃତ୍ୟୁ ପ୍ରତି ଆକର୍ଷିତ ହୋଇଯିବାଟା ସ୍ୱାଭାବିକ ଲାଗେ ଅନେକ ସମୟରେ । ଯୁବାବସ୍ଥାର ଜୀବନ ଓ ଯୌବନ ଯେତେବେଳେ ଅନେକ ଉଦ୍ଦାମ ଉଦ୍‌ବେଳନ ମୋ ମନରେ ଆଣି ଦେଇଥିଲା, ସେ ସମୟରେ କେତୋଟି ବହି ପଢିବାକୁ ମୋତେ ସୁଯୋଗ ମିଳିଥିଲା ଏବଂ ଯାହା ସବୁଦିନ ପାଇଁ ମୃତ୍ୟୁ ବିଷୟରେ ମୋତେ ଗୋଟାଏ ସାମଗ୍ରିକ ଚିତ୍ର ପ୍ରଦାନ କରିଥିଲା । ମନ ଓ ଜ୍ଞାନକୁ ଚହଲାଇ ଦେଇଥିବା ପ୍ରଥମ ବହିଟି ଥିଲା ଦସ୍ତୋଭସ୍କିଙ୍କର "ନୋଟ୍‌ସ ଫ୍ରମ୍ ଅଣ୍ଡରଗ୍ରାଉଣ୍ଡ" (Notes from Underground) । ୧୮୬୪ ମସିହାରେ ଲିଖିତ ଓ ପ୍ରକାଶିତ ଏହି ଛୋଟ ଉପନ୍ୟାସଟି ଋଷୀୟ ସାହିତ୍ୟାକାଶରେ ଏକ ଝଡ ସୃଷ୍ଟି କରିଥିଲା । ଅନେକ କହନ୍ତି ଯେ ସ୍ଥିତିବାଦକୁ ନେଇ ଏହା ପ୍ରଥମ ଉପନ୍ୟାସ ଥିଲା । ଜଣେ ଏକୁଟିଆ ତିକ୍ତ ଏବଂ ଯନ୍ତ୍ରଣାବିଦ୍ଧ ମଣିଷର ସ୍ମୃତି ଉପରେ ଆଧାରିତ ଏକ ବଳିଷ୍ଠ କୃତି ସୃଷ୍ଟି କରିଛନ୍ତି ଦସ୍ତୋଭସ୍କି । ଉପନ୍ୟାସଟି ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ଯନ୍ତ୍ରଣା ଓ ଯନ୍ତ୍ରଣା ପାଇବାର ଆନନ୍ଦକୁ ଉପନ୍ୟାସର ନାୟକ ଯିଏ କି ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ବର୍ଣ୍ଣନା କରିଛି । ଦ୍ୱିତୀୟ ଭାଗରେ ନାୟକ କେତୋଟି ଘଟଣା ସହ ତାହାର ସମ୍ପୃକ୍ତି ଏବଂ ମାନସିକ ପ୍ରତିକ୍ରିୟାକୁ ଉଲ୍ଲେଖ କରିଛି । ପୋଲିସ ତା'କୁ ଏକ ଗଣ୍ଡଗୋଳରେ ଅପମାନିତ କରିଛି । ଏକ ବନ୍ଧୁମିଳନରେ ସେ ତା'ର ବାଲ୍ୟବନ୍ଧୁମାନଙ୍କ ସହ ଯୁକ୍ତିତର୍କ

କରିଛି ଓ ସମାଜ ପ୍ରତି ତା'ର ଘୃଣା ବ୍ୟକ୍ତ କରିଛି । ବାଲ୍ୟବନ୍ଧୁମାନେ ପ୍ରଚଳିତ ସମାଜର ସମର୍ଥକ ବୋଲି ମନେ କରି, ସେ ତା'ର ଯୁକ୍ତିକୁ ତୀବ୍ର କରିବାକୁ ଚାହିଁଛି । କିନ୍ତୁ ବାଲ୍ୟବନ୍ଧୁମାନଙ୍କ ପ୍ରତିବଦଳରେ ସେ ଭେଟିଛି ଜଣେ ବେଶ୍ୟାକୁ ଯିଏ ଅଧୋଗତିର ସର୍ବନିମ୍ନ ପାହାଚରେ ପହଞ୍ଚିଛି । ସେ ଅନୁଭବ କରିଛି ଯେ ବେଶ୍ୟାଟି ଦିନେ କାହାକୁ ଆକର୍ଷଣ କରିପାରିବ ନାହିଁ ଓ ଲଜ୍ଜା ଏବଂ ଅବହେଳାରେ ସେ ମୃତ୍ୟୁର ଦ୍ୱାର ଦେଶରେ ଉପସ୍ଥିତ ହେବ । ସେ ବେଶ୍ୟାଟିକୁ ତା'ର ଠିକଣା ଦେଇଛି । କିନ୍ତୁ ଯେତେବେଳେ ବେଶ୍ୟାଟି ତା'ର ଘରେ ପହଞ୍ଚିଛି, ସେ ତା'କୁ ଅପମାନ ଦେଇଛି । ତା'ର ଦୟନୀୟ ପରିସ୍ଥିତିକୁ ଉପହାସ କରିଛି । ତାକୁ କବଳିତ କରିବାକୁ ସେ ଯେମିତି ନାଟକ କରିଛି କିନ୍ତୁ ଅସଲରେ ସେ ନିଜେ ଗରିବ ଓ ଅସହାୟ । ସମାଜ ସହ ତାଳଦେଇ ପାରୁନଥିବା ମଣିଷ ହିସାବରେ ସେ କେବଳ ଦୁଃଖ ଯନ୍ତ୍ରଣା ପାଉଛି ।

ଏଇ ସମୟରେ ମଧ୍ୟ ଆଉ ଗୋଟିଏ ଛୋଟ ଉପନ୍ୟାସ ମୋତେ ପଢ଼ିବାକୁ ସୁଯୋଗ ମିଳିଥିଲା । ଟଲଷ୍ଟୟଙ୍କ "ଡେଥ୍ ଅଫ ଇଭାନ୍ ଇଲିଚ୍" (Death of Ivan Ilych) ବହିଟିକୁ ଯେଉଁ ଦିନ କିଣିଥିଲି, ସେଇ ଦିନ ରାତିରେ ପଢ଼ି ତା'କୁ ମୁଁ ଶେଷ କରିଥିଲି । ୧୮୮୬ ମସିହାରେ ପ୍ରକାଶିତ ଏ ରଷୀୟ ଉପନ୍ୟାସ ଟଲଷ୍ଟୟଙ୍କ 'ୱାର୍ ଏଣ୍ଡ ପିସ୍' ଏବଂ 'ଆନା କାରାନିନା' ଭଳି ଲୋକପ୍ରିୟ ନହେଲେ ମଧ୍ୟ, ସାହିତ୍ୟର ପୃଥିବୀରେ ଏହା ଉଚ୍ଚ ସ୍ଥାନ ଅଧିକାର କରିଛି । ଟଲଷ୍ଟୟ ଏ ଉପନ୍ୟାସ ଜରିଆରେ ଜୀବନ ଓ ମୃତ୍ୟୁର ସଂଜ୍ଞା ଓ ବିଚାରକୁ ବର୍ଣ୍ଣନା କରିଛନ୍ତି । ମୃତ୍ୟୁ ଏକାନ୍ତ ଅନିବାର୍ଯ୍ୟ ତାହା ମଣିଷ ଉପଲବ୍ଧି କରି ନିଜକୁ ସଚେତନ କରିପାରିବ ଏକଥା ଟଲଷ୍ଟୟ ଉପସ୍ଥାପନା କରିଛନ୍ତି । ଉପନ୍ୟାସର ନାୟକ ଇଭାନ୍ ଇଲିଚ୍ ଜଣେ ଅବସରପ୍ରାପ୍ତ ବିଚାରପତି । ସ୍ତ୍ରୀ ଓ ପରିବାରକୁ ନେଇ ଜୀବନ ସୁଖମୟ ଭାବେ ଅତିବାହିତ ହେଉଥିଲା । ଅଚାନକ ସେ ପିଠିରେ ଯନ୍ତ୍ରଣା ଅନୁଭବ କରିଲେ ଓ ତାହା ତାଙ୍କର ଜୀବନର ଆଭିମୁଖ୍ୟକୁ ବଦଳେଇ ଦେଲା । ସେ ପରିବାର ପ୍ରତି ବିମୁଖ ହୋଇ ପଡିଲେ । ଡାକ୍ତରଙ୍କୁ ପରାମର୍ଶ କରିଲା ପରେ ଜଣା ପଡିଲା ଯେ ସେ ଆଉ ବେଶିଦିନ ବଞ୍ଚିବେ ନାହିଁ । କିନ୍ତୁ ତାଙ୍କର ମନରେ ପ୍ରଶ୍ନ ଉଠିଲା ଯେ, ତାଙ୍କର ଜୀବନ ତ ଠିକ୍ ବାଟରେ ଚାଲିଛି କିନ୍ତୁ ଏ ଅହେତୁକ ଓ ଅଯୌକ୍ତିକ ମୃତ୍ୟୁ ଯନ୍ତ୍ରଣା କାହିଁକି ? ସେ ତ କିଛି ଭୁଲ କରିନାହାନ୍ତି । କିନ୍ତୁ ଏ ଯନ୍ତ୍ରଣା ଓ ମୃତ୍ୟୁ କାହିଁକି ତାଙ୍କ ପାଇଁ ଉଦ୍ଦିଷ୍ଟ ? ନିଜର ଆତ୍ମୀୟସ୍ୱଜନ ଓ ପରିବାରକୁ ସେ ଘୃଣା କରିବାକୁ ଆରମ୍ଭ କରିଛନ୍ତି । ଏ ଦୁଃସମୟରେ ତାଙ୍କୁ ସାହଚର୍ଯ୍ୟ ଓ ସମର୍ଥନ ଦେଇଛି ଗାଁରୁ ଆସିଥିବା ଚାକର ପିଲାଟିଏ । ଏ ପିଲାଟି ମୃତ୍ୟୁକୁ ଡରେ ନାହିଁ ବୋଲି ଇଭାନ୍‌ଙ୍କର ନିକଟସ୍ଥ ହୋଇପାରିଛି । ଗୋଟାଏ ପଟେ ପରିବାର ଓ ବନ୍ଧୁମାନଙ୍କୁ ନେଇ ଏକ କୃତ୍ରିମ ଜୀବନ ଓ ଅନ୍ୟପଟେ ଚାକର ପିଲାଟିକୁ ନେଇ ଏକ ସଚ୍ଚୋଟ ଜୀବନ-ସେ ଯେମିତି ସବୁକିଛିର ଅର୍ଥ ହଠାତ୍ ବୁଝି ସାରିଛନ୍ତି । ଏହା ପରେ ସେ ଏକ ଅଜଣା ଆଲୋକରେ ଆଲୋକିତ ହୋଇ ସାରିଛନ୍ତି ।

କଲେଜରେ ଇଂରାଜୀ ଅଧ୍ୟାପକମାନେ ଆମକୁ ପଢାଉଥିଲା ବେଳେ ସୂଚନା ଦେଇଥିଲେ ଯେ, ଜଣେ ବନ୍ଧୁଙ୍କ ବିୟୋଗରେ ବିଖ୍ୟାତ ଇଂରାଜୀ କବି ଲର୍ଡ଼ ଟେନିସନ୍ 'ଇନ୍ ମେମୋରିଆମ' (In Memoriam) ବୋଲି ଏକ ଦୀର୍ଘ କବିତା ଲେଖିଛନ୍ତି ଏବଂ ଏହା ସମସ୍ତେ ପଢ଼ିବା ଉଚିତ୍ । ମୁଁ ଇଂରାଜୀ ସାହିତ୍ୟର ଛାତ୍ର ନହୋଇ ମଧ୍ୟ ଟେନିସନ୍‌ଙ୍କ କଲେକ୍‌ଟେଡ ୱାର୍କସ(Collected Works) ବହିଟି କିଣିଥିଲି ଏ କବିତାଟିକୁ ପଢିବା ପାଇଁ । ଟେନିସନ୍ କୁଆଡେ ଦୀର୍ଘ ୧୭ ବର୍ଷ ନେଇଥିଲେ ଏ କବିତାକୁ ପୂର୍ଣ୍ଣାଙ୍ଗ ଭାବେ ରଚନା କରିବା ପାଇଁ । ବନ୍ଧୁ ମରିଗଲେ- କିନ୍ତୁ ସ୍ମୃତିଚାରଣ ଦିନକର କଥା ନୁହେଁ । ବାରମ୍ବାର ମନରେ ଆଉ ସ୍ମୃତିରେ ଆସୁଥିଲେ ବୋଧେ । ଅନ୍ତରଙ୍ଗ ବନ୍ଧୁ ଜଣକ ମରିଗଲେ ଜୀବନରେ ଏକ ଅପୂରଣୀୟ ଅଭାବ ସୃଷ୍ଟି ହୋଇଯାଏ । ବନ୍ଧୁତା ଓ ଭଲ ପାଇବାର ସବୁ କବିତାରେ ଦୁଃଖ ଓ ଯନ୍ତ୍ରଣାର ଶବ୍ଦ ଭରିଯାଏ ।

ସମସାମୟିକ ବିଶ୍ୱ ସାହିତ୍ୟରେ ନୋବେଲ୍ ପୁରସ୍କାରପ୍ରାପ୍ତ ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍ ଗୋଟାଏ ଚମତ୍କାର ଗଳ୍ପ ଲେଖିଛନ୍ତି- "ଇନ୍ ଡେଥ୍ କନ୍‌ଷ୍ଟାଣ୍ଟ ବିୟଣ୍ଡ ଲଭ୍" (In Death Constant Beyond Love) ଯେଉଁଥିରେ ସେ ସିନଟଟ୍ ସାଞ୍ଚେଜ୍‌ଙ୍କ ଅସଲ ମନସ୍ତତ୍ତ୍ୱକୁ ବର୍ଣ୍ଣନା କରିଛନ୍ତି । ସିନେଟଟ୍ ସାଞ୍ଚେଜ ଜଣେ ଅର୍ଥଲୋଭୀ, କ୍ଷମତାଲୋଭୀ ମଣିଷ, କିନ୍ତୁ ହଠାତ୍ ଅନୁଭବ କରିଛନ୍ତି ଯେ ସେ ମରିବାକୁ ଯାଉଛନ୍ତି । ସେ ଆକର୍ଷିତ ହୋଇଛନ୍ତି ଲରା ଫରିନା ନାମ୍ନୀ ଜଣେ ତରୁଣୀଙ୍କ ଆଡକୁ । ପ୍ରେମ ସମ୍ଭାଷଣ ପରେ ସେ ଅନୁଭବ କରିଛନ୍ତି ଯେ ଲରା ତାଙ୍କର ଅର୍ଥ ପାଇଁ ସବୁକିଛି ନାଟକ କରୁଛି । ତଥାପି ଲରାର ସାହଚର୍ଯ୍ୟ ମୃତ୍ୟୁକୁ ସହନୀୟ କରିପାରିଛି । ଅନ୍ୟ ପକ୍ଷରେ ଆଫ୍ରିକୀୟ ନୋବେଲ୍ ପୁରସ୍କାରପ୍ରାପ୍ତ ଓଲେ ସୋୟିଙ୍କା (Wole Soyinka) ଡେଥ୍ ଆଣ୍ଡ ଦି କିଙ୍ଗସ୍ ହର୍ସମେନ୍ (Death and The Kings Horsemen) ନାମକ ଏକ ନାଟକ ଜରିଆରେ ଉଲ୍ଲେଖ କରିଛନ୍ତି ଯେ ନାଇଜେରିଆରେ ଜଣେ ରାଜାଙ୍କ ଅଶ୍ୱାରୋହୀ ସୈନ୍ୟ ଏଲେସିନ୍ ନିଷ୍ପତ୍ତି ନେଇଥିଲା ଯେ ରାଜାଙ୍କ ମୃତ୍ୟୁପରେ ସେ ଆତ୍ମହତ୍ୟା କରିବ । କିନ୍ତୁ ସେ ଆତ୍ମହତ୍ୟା କରିଲା ନାହିଁ । ସେ ସମୟରେ ବ୍ରିଟିଶ ଉପନିବେଶବାଦୀମାନେ ସମ୍ଭବତଃ ଏହା କରିବାକୁ ଦେଲେ ନାହିଁ । ସୋୟିଙ୍କା କିନ୍ତୁ ଅଶ୍ୱାରୋହୀ ସୈନ୍ୟ କାହିଁକି ତାହାର କର୍ତ୍ତବ୍ୟ କରିଲା ନାହିଁ, ତାହା ଉପରେ ଗୁରୁତ୍ୱ ଦେଇଛନ୍ତି ।

ବିଶ୍ୱ ସାହିତ୍ୟରେ ମୃତ୍ୟୁକୁ ନେଇ ଯେତେ କଥା ଲେଖାଯାଇଛି ଜୀବନକୁ ନେଇ ସେତିକି ବା ତାହାଠାରୁ ଅଧିକ ଲେଖାଯାଇଛି । ଆମକୁ ନିଷ୍ପତ୍ତି ନେବାକୁ ହେବ ଯେ ଜୀବନ ଓ ମୃତ୍ୟୁ ଭିତରେ କେଉଁଟି ଅଧିକ ଶ୍ରେୟସ୍କର । ମୋର ତିନିଜଣ ଅନ୍ତରଙ୍ଗ ବନ୍ଧୁ ବାବୁଲି ମାଝୀ, ଲଳିତ ପଟ୍ଟନାୟକ, ସୁଧାଂଶୁ ମିଶ୍ରଙ୍କ ବିୟୋଗ ଉଭୟ ଜୀବନ ଓ ମୃତ୍ୟୁର ସଂଜ୍ଞାକୁ ମୋ ପାଇଁ ସ୍ପଷ୍ଟ କରିଦେଇଛନ୍ତି ।

□□□

## ୬

# ଭଗବାନ ସତରେ ଅଛନ୍ତି କି ? - କ

ଭଗବାନ ଅଛନ୍ତି ? ପୁଣି ଭଗବାନ ନାହାନ୍ତି । ଏହାର ସତ୍ୟତା ଓ ସଠିକତା ଏଯାବତ୍ ପ୍ରମାଣିତ ହୋଇ ନାହିଁ । ମଣିଷ ଭଗବାନଙ୍କୁ ସୃଷ୍ଟି କରିଛି କି ଭଗବାନ ମଣିଷକୁ ସୃଷ୍ଟି କରିଛି ଏ ପ୍ରଶ୍ନର ମଧ୍ୟ ସଠିକ୍ ଉତ୍ତର ମିଳି ନାହିଁ । ଭଗବତ୍ ବିଶ୍ୱାସରେ ଆସ୍ଥା ରଖିଥିବା ମଣିଷ ଯୁଗଯୁଗ ଧରି ଭଗବାନ ଅଛନ୍ତି ବୋଲି ଯୁକ୍ତି ବାଢ଼ିଛି । ସେଇଭଳି ନାସ୍ତିକମାନେ ମଧ୍ୟ ଅକାଟ୍ୟ ଯୁକ୍ତି ଉପସ୍ଥାପନା କରି ପ୍ରମାଣିତ କରିଛନ୍ତି ଯେ ଭଗବାନ ନାହାନ୍ତି । ଅନେକ ପ୍ରଶ୍ନ ଓ ଅନେକ ଉତ୍ତର । ଅନେକ ଯୁକ୍ତି ଓ ତର୍କ, ସପକ୍ଷରେ ଓ ବିପକ୍ଷରେ । ଯେଉଁ ଶିଶୁଟି ଜନ୍ମ ହେଉଛି, ସତ୍ୟ କ'ଣ ? ସମ୍ଭବତଃ ସେ ଜାଣିବା ଅବସ୍ଥାରେ ନାହିଁ । କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଓ ସାମଗ୍ରିକ ଚେତନାର ଅଭିବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେ ବିଶ୍ୱାସ ଓ ଅବିଶ୍ୱାସର ଦ୍ୱନ୍ଦ୍ୱ ଭିତରକୁ ଟାଣି ହୋଇଯାଉଛି । ମୁଁ ପିଲାଦିନରୁ କେଜାଣି କାହିଁକି ପ୍ରଶ୍ନ ପଚାରିବାକୁ ଭଲ ପାଇଛି । ସତ୍ୟ କ'ଣ ଅନୁସନ୍ଧାନ କରିବାକୁ ଆଗେଇ ଆସିଛି । କିନ୍ତୁ ପ୍ରଶ୍ନ ପଚାରିବା ଓ ସତ୍ୟ ଅନୁସନ୍ଧାନ କରିବା ସାଧାରଣ କଥା ନୁହେଁ । ମୋର ଆଜି ଝାପ୍‌ସା ମନେ ଅଛି ପିଲାଦିନେ ଆମ ଘର ସାମ୍ନା ବଡ ଦାଣ୍ଡରେ ରଥଯାତ୍ରା ଦିନ ରଥଟଣା ହେବା ବେଳେ ମୁଁ ଓ ମୋର ବନ୍ଧୁମାନେ କେତେଥର ତିନି ଠାକୁରଙ୍କୁ ମୁଣ୍ଡ ନୁଆଇଁ ନମସ୍କାର କରିବା କଥା । ଶହଶହ ଲୋକଙ୍କ ସାଷ୍ଟାଙ୍ଗ ପ୍ରଣାମ ନିଶ୍ଚିତ ଆମକୁ ଚମତ୍କୃତ କରିଥିଲା । ଆଜି ମନେ ପଡୁଛି ଗଣେଶ ପୂଜା ଦିନ ମୋର ଖଡିଛୁଆଁ ହେବାର ଉତ୍ତେଜନା । ମୁଁ ଭୁଲି ନାହିଁ ମୋର ବାପାଙ୍କର ଏକାଦଶୀ ପାଳନ ଓ ଭାଗବତର ଏକାଦଶ ସ୍କନ୍ଧ ଉଚ୍ଚସ୍ୱରରେ ପଠନ । ଘରେ ଓ ବାହାରେ ଦିଅଁ ଦେବତାଙ୍କ ଉପସ୍ଥିତି ଯେମିତି ମୋର ପିଲାଦିନକୁ ଅନେକ ଋଦ୍ଧିମନ୍ତ କରିଥିଲା । ପି.ସି. ମଡେଲ୍ ସ୍କୁଲକୁ ଗଲା ବେଳେ ହିଙ୍ଗୁଳା ଠାକୁରାଣୀଙ୍କ ମନ୍ଦିର ବାଟ ଦେଇ ଯିବାକୁ ପଡିଥାଏ । ବଜାରକୁ ଗଲେ ପଞ୍ଚମୁଖୀ ଶିବ ମନ୍ଦିର ବାଟରେ ପଡିଥାଏ । ସ୍କୁଲ ପାଖରେ ଅରାଚଣ୍ଡୀଙ୍କ ଛୋଟ ମନ୍ଦିର ଓ ପାଖରେ ମାଟିର କଳାକଳା ଘୋଡା । ମୋର ସାଙ୍ଗସାଥୀମାନେ ଖେଳଛୁଟିରେ ମନ୍ଦିର ପାଖକୁ ଯାଇ ମୋତେ ମୁଣ୍ଡ ନୁଆଇଁ ନମସ୍କାର କରିବାକୁ ବାଧ୍ୟ କରୁଥିଲେ । ବ୍ରାହ୍ମଣୀ ନଦୀ କୂଳରେ ରାଜାଙ୍କ ନଅରକୁ ଲାଗି ଜଗନ୍ନାଥ ମନ୍ଦିର । ସହରର ଉପକଣ୍ଠରେ କିଛି ଦୂରଗଲେ ପଣ୍ଡିମେଶ୍ୱରଙ୍କ ମନ୍ଦିର ଯେଉଁଠି କାର୍ତ୍ତିକ

ପୂର୍ଣ୍ଣିମା ଦିନ ବଡ ଜନ ସମାଗମ ହୁଏ । ମୁଁ କେତେଥର ପିଲାଦିନେ ଚାଲିଚାଲି ପଞ୍ଚିମେଶ୍ୱର ମନ୍ଦିର ଦେଖିଛି । ଗଣେଶ ପୂଜା ଓ ସରସ୍ୱତୀ ପୂଜା ଦିନ ସକାଳୁ ଉଠି ଗାଧୋଇବାକୁ ହୁଏ । ପୁଷ୍ପାଞ୍ଜଳି ଦେବା ପର୍ଯ୍ୟନ୍ତ ଅଖିଆଅପିଆ ପୂଜାପାଠ କରିବାକୁ ହୁଏ । ଗଣେଶ ପୂଜା ମେଢ଼ ତାଳଚେରରେ ସେତେବେଳେ ଅନେକ ଚମକ ସୃଷ୍ଟି କରୁଥିଲା । ସନ୍ଧ୍ୟାରେ ସବୁମେଢ଼ ଦେଖି ନମସ୍କାର କରିବା ଏକ ସୌଭାଗ୍ୟ ଥିଲା ଆମର । ଦଶହରା ପୂର୍ବରୁ ମଧରାତ୍ରିରେ ଦେବୀଙ୍କ ସହର ଭ୍ରମଣ ହୁଏ । ରାଜାଙ୍କ ନଅରରୁ ସୁସଜ୍ଜିତ ପାଲିଙ୍କିରେ ଦେବୀଙ୍କୁ ବସାଇ ଘଣ୍ଟ ମାଦଳ ସହ ବ୍ରାହ୍ମଣମାନେ ବୋହି ଥାଆନ୍ତି । ମୋର ବୟସ୍କ ଅଭିଭାବକମାନେ କୁହନ୍ତି ଯେ ମଧ ରାତ୍ରିରେ ଦେବୀଙ୍କୁ ଦେଖିବା ଅଶୁଭ । ମୁଁ କିନ୍ତୁ କେବେକେମିତି ଲୁଚଛପିରା ଭାବେ ଦେବୀଙ୍କର ରୂପାମୂର୍ତ୍ତିକୁ ଦେଖିଥାଏ । ମିଞ୍ଜିମିଞ୍ଜି ଆଲୁଅରେ ଦେବୀ ମୂର୍ତ୍ତିଟି ଝଲସୁ ଥାଏ । ହିଙ୍ଗୁଳା ପୂଜା ଆମ ଅଞ୍ଚଳରେ ଖୁବ୍ ସାବଧାନତାର ସହ କରାଯାଏ । ଦେବୀ ବଡ ପ୍ରତ୍ୟକ୍ଷ । ପଶୁବଳି ଦେବାକୁ ପଡିଥାଏ । ଶହ ଶହ ବ୍ୟକ୍ତିଙ୍କ ସାମନାରେ ବୋଦା ଓ ପୋଢ଼ମାନଙ୍କୁ ପୂଜାରୀ ଦି'ଗଡ଼ କରେ । ଯଦି ଗୋଟାଏ ଚୋଟରେ ବୋଦା ଓ ପୋଢ଼ର ମୁଣ୍ଡଟି ନଛିଡେ ହିଙ୍ଗୁଳା ଦେବୀ ଅସନ୍ତୁଷ୍ଟ ଅଛନ୍ତି ବୋଲି ସମସ୍ତେ କଥାବାର୍ତ୍ତା ହେଉଥିଲେ । ମୋର ମନେ ଅଛି ଅନେକ ଲୋକ ମନସ୍କାମନା ପୂର୍ଣ୍ଣ କରିବାକୁ ଆମ ଅଞ୍ଚଳରେ ହିଙ୍ଗୁଳା ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ପଶୁବଳି ଯାଚୁଥିଲେ । କେତେ ଯେ ମନସ୍କାମନା ପୂର୍ଣ୍ଣ ହୁଏ ବା ହୁଏ ନାହିଁ ତାହାର କେହି ହିସାବ ରଖୁନଥିଲେ । ପଶୁବଳି ଦେଖିବାକୁ ଆମେ ପିଲାଦିନେ ଭାରି ଆଗ୍ରହ ଦେଖାଉଥିଲୁ । ମୋର ଜନ୍ମଦିନ ଜନ୍ମାଷ୍ଟମୀ ଦିନ ହୋଇଥିବାରୁ ମୋର ପରିବାର ଏବଂ ସାଙ୍ଗସାଥୀମାନେ ଜନ୍ମାଷ୍ଟମୀକୁ ମନେ ରଖୁଥିଲେ । ସେଦିନ ବି ମନ୍ଦିରକୁ ଯିବାକୁ ପଡୁଥିଲା ମୋତେ ନୂଆ ପୋଷାକ ପିନ୍ଧି । ମୋ ଚାରିପାଖେ ଦିଅଁ ଦେବତା ଓ ସେମାନଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ ମୋତେ ଗୋଟାପଣେ ଆଛନ୍ନ କରି ରଖିଥିଲା । କେଉଁଠି ମନ୍ଦିର ବା ସେଇଭଳି କିଛି ଦେଖିଲେ ବା କେଉଁ ଗଛତଳେ ଭଙ୍ଗା ମାଟିର ଘୋଡା ବା ସିନ୍ଦୂରଲଗା ପଥରଟିଏ ଦେଖିଲେ ଯୋଡହସ୍ତ କରି ନମସ୍କାର କରିବାକୁ ପଡେ । ଏହା ସ୍ୱାଭାବିକ ମନେ ହେଉଥିଲା ସବୁବେଳେ । ଯଦି ଏଥିରେ କିଛି ବି ମନରେ ପ୍ରଶ୍ନ ଉଠେ ତାହା ଭିତରେ ଚାପିଦେବାକୁ ହୁଏ । ଯାହା ଗୁରୁଜନ ଓ ସାଙ୍ଗସାଥୀ କରୁଛନ୍ତି ଓ ମାନୁଛନ୍ତି, ତାହାର ବ୍ୟତିକ୍ରମ ହେବ କେମିତି ?

ଦେବାଦେବୀମାନଙ୍କ ସହ ସଂଶ୍ଳିଷ୍ଟ ଅନେକ କାହାଣୀ ଓ କିମ୍ବଦନ୍ତୀ ଶୁଣିବାକୁ ବା ପଢ଼ିବାକୁ ସୁଯୋଗ ମିଳୁଥିଲା । ଘରେ ମହାଭାରତ, ରାମାୟଣ ଓ ଭାଗବତର ପୂରା ସେଟ୍‌ଟିଏ ଥିଲା । ପଡିଶା ଘରମାନଙ୍କଠାରୁ ମଧ ବେଳେବେଳେ ଅନେକ ପୁରାଣ ମୋର ବଡ ଭଉଣୀମାନେ ଆଣୁଥିଲେ । ଆମ ଘର ସାମ୍ନାରେ ଥିବା ଦନେଇ ପଣ୍ଡିତେ ବି ଉଚ୍ଚ ସ୍ୱରରେ ସନ୍ଧ୍ୟାରେ ଭାଗବତ, ରାମାୟଣ ଆଦି ବିଭିନ୍ନ ପୁରାଣ ପଢୁଥିଲେ । ମୁଁ

କୌତୂହଳ ହୋଇ ସବୁ ପୁରାଣ ଓ ଧର୍ମଶାସ୍ତ୍ର ଗୁଡ଼ିକୁ ପଢ଼ିବାକୁ ବ୍ୟଗ୍ର ହୋଇ ପଡୁଥିଲି । ମୋର କୋମଳମତି ମନ କାଳେ ଦୁଷ୍ଚିନ୍ତାରେ ପଡିଯିବ ବା ପାଠ ପଢ଼ାରେ ବିଭ୍ରାଟ ହେବ, ସବୁ ପୁରାଣ ଧର୍ମଶାସ୍ତ୍ର ପଢ଼ିବା ମୋ ପାଇଁ ଗୋଟାଏ ପ୍ରକାରର ନିଷେଧ ହୋଇଥିଲା । ତଥାପି ଲୁଚିଛପି ସବୁ ମୁଁ ପଢୁଥିଲି । ଦେବତାଙ୍କ ଭିତରେ ବିଭିନ୍ନ ସମ୍ପର୍କ ଓ ସଂଘର୍ଷ, ଦେବତା ଓ ଅସୁରଙ୍କ ଭିତରେ ଯୁଦ୍ଧ, ଦୈବୀଶକ୍ତିର ମାହାତ୍ମ୍ୟ ସବୁ ବୁଝିବାକୁ ମୋତେ ସମୟ ଲାଗୁଥିଲା । କିନ୍ତୁ ଯୁଦ୍ଧ ବେଳେ ଅସ୍ତ୍ରଶସ୍ତ୍ରର ବ୍ୟବହାର ଓ ରଣ କୌଶଳର ପ୍ରୟୋଗ ଅବାକ୍ ଲାଗୁଥିଲା । ଗୋଟାଏ ଶରକୁ ଆଉ ଗୋଟାଏ ଶର କେମିତି କାଟୁଥିଲା, ଆଗ୍ନେୟାସ୍ତ୍ର, ବ୍ରହ୍ମାସ୍ତ୍ର, ପାଶୁପତ ଅସ୍ତ୍ର ଆଦିର ଶକ୍ତି ଓ ଅଭେଦ୍ୟତା ଚମତ୍କାର ଲାଗୁଥିଲା । ଏଣୁ ରାମାୟଣ ୭ କାଣ୍ଡ ଓ ମହାଭାରତ ୧୮ ପର୍ବ ଦୁଇଥର ପଢିବା ପରେ ତୃତୀୟଥର ପଢ଼ିବାକୁ ମନ ଉଚାଟ ହେଉଥିଲା । କୃଷ୍ଣଗୋପୀଲୀଳା ମନରେ ଯେତିକି ମଧୁର ଭାବ ସୃଷ୍ଟି କରୁଥିଲା, ବରପ୍ରାପ୍ତ ଅସୁରମାନଙ୍କ ଅନ୍ୟାୟ ଅତ୍ୟାଚାର ସେହିପରି ଘୃଣାଭାବ ସୃଷ୍ଟି କରୁଥିଲା । ଦେବତାମାନେ ସ୍ୱର୍ଗରେ ରହନ୍ତି ଓ ଅସୁରମାନେ ପାତାଳରେ ରହନ୍ତି, ଏକଥା ସହଜରେ କଳ୍ପନା କରିହେଉଥିଲା । ଭଗବାନଙ୍କ ନାମ ସ୍ମରଣ କରି ବାଲ୍ମିକୀ ଯେ ରାମାୟଣ ଲେଖି ପାରିଥିଲେ, ତାହା ଏକ ଅଭିନବ ବିଶ୍ୱାସ ସୃଷ୍ଟି କରୁଥିଲା । ସବୁଠାରେ ଗୋଟିଏ କଥା ଲକ୍ଷ୍ୟ କରିହେଉଥିଲା । ଭଗବାନଙ୍କ ପାଖରେ ଆଶ୍ରୟ ନେଲେ ବା ନିଜକୁ ସମର୍ପଣ କଲେ ସବୁ ଅସାଧ ସମ୍ଭବ କରିହୁଏ । ଏଣୁ ମନ୍ଦିର ଯିବା ଓ ଦେବାଦେବୀଙ୍କୁ ବିଶ୍ୱାସ କରିବା କିଛି ଅପ୍ରାକୃତିକ ବା ଅସ୍ୱାଭାବିକ ମନେ ହେଉନଥିଲା । ଶୈଶବ କାଳରେ ନାରଦଙ୍କ ଠାରୁ ଆରମ୍ଭ କରି ଗଣେଶଙ୍କ ମୂଷା ପର୍ଯ୍ୟନ୍ତ ଅନେକ କାହାଣୀ ସବୁ ପଢ଼ିବାକୁ ଭଲ ଲାଗୁଥିଲା । ସମୁଦ୍ର ମନ୍ଥନ ଠାରୁ ଆରମ୍ଭ କରି ମହିଷାସୁର ମର୍ଦ୍ଦନ ପର୍ଯ୍ୟନ୍ତ ସତକଥା ଭଳି ପ୍ରତୀୟମାନ ହେଉଥିଲା । ଭଗବାନ ବିଷ୍ଣୁଙ୍କ ଚାରିହାତ ଏବଂ ରାବଣର ଦଶମୁଣ୍ଡ ବି କଳ୍ପନା କରି ହେଉଥିଲା । ମୋର ବାପା ଯେତେବେଳେ ଦଶାବତାର ଉଚ୍ଚ ସ୍ୱରରେ ଗାଉଥିଲେ, ମୁଁ ମନେ ମନେ ବି ଗୁଣୁଗୁଣୁ କରୁଥିଲି । ମୋର ପିଲାଦିନେ ପାଲା ପ୍ରତିଯୋଗିତା ଦେଖିବାକୁ ରାତି ସାରା ଉଜାଗର ରହିଲେ ବି କ୍ଲାନ୍ତ ଲାଗୁନଥିଲା, କାରଣ ଗାୟକମାନେ ଦେବାଦେବୀଙ୍କୁ ନେଇ ବିଭିନ୍ନ ଶ୍ଳୋକ ଭଜନ ଗାନ କରୁଥିଲେ । କଥା କଟାକଟି କରି ଗାୟକମାନେ ଯେମିତି ପାଣ୍ଡିତ୍ୟର ଏକ ପରିଚୟ ଦେଇଥିଲେ । ରାମ ଓ ସୀତା, ହର ଓ ପାର୍ବତୀ, କୃଷ୍ଣ ଓ ରାଧା, ବିଷ୍ଣୁ ଓ ଲକ୍ଷ୍ମୀଙ୍କୁ ନେଇ ଯେମିତି ଅସରନ୍ତି କାହାଣୀ ସବୁ ଲେଖା ଯାଇଛି । ମିଳନ ଓ ବିଚ୍ଛେଦରେ ସ୍ୱର୍ଗୀୟ ଚେତନା ରହିଛି ଓ ଅତିମାନବୀୟ କଳ୍ପନାମାନ ରହିଛି । ଆମ ଧର୍ମରେ ତେତିଶ କୋଟି ଦେବତା ଅଛନ୍ତି । ଏକଥା କଳ୍ପନା କରି ହେଉଥିଲା । ସତ ବି ମନେ ହେଉଥିଲା । ଦେବାଦେବୀଙ୍କ ଆସ୍ଥାନ, ବିଭିନ୍ନ ଧର୍ମପାଠ ଓ ଚାରିଧାମର ମାହାତ୍ମ୍ୟ, ନଦନଦୀ ତଥା

ପାହାଡ ପର୍ବତମାନଙ୍କ ସହ ସଂଶ୍ଳିଷ୍ଟ କଥା ଓ କାହାଣୀ ଏକା ନିଶ୍ୱାସରେ ପଢ଼ିବାକୁ ପଡୁଥିଲା । ଧର୍ମଗୁରୁମାନେ ବେଳେବେଳେ ପ୍ରବଚନ ଦେବାକୁ ଆମ ଅଞ୍ଚଳକୁ ଆସୁଥିଲେ । ସେମାନଙ୍କର ଭକ୍ତମାନଙ୍କର ଭଜନ କୀର୍ତ୍ତନ ସବୁ ଆକର୍ଷଣୀୟ ଥିଲା । ଧର୍ମଗୁରୁମାନେ ମଧ୍ୟ ଭଗବାନଙ୍କ ବିଷୟରେ ସୁନ୍ଦର ସୁନ୍ଦର ଉଦାହରଣ ଦେଇ ଜଟିଳ ଧର୍ମତତ୍ତ୍ୱମାନଙ୍କର ବ୍ୟାଖ୍ୟା କରୁଥିଲେ । ପ୍ରଶ୍ନୋତ୍ତର ଜରିଆରେ କେତେ ଲୋକଙ୍କର ମନରୁ ବିଭିନ୍ନ ସନ୍ଦେହ ସୃଷ୍ଟି କରୁଥିଲେ । ପାପପୁଣ୍ୟ, ଜନ୍ମମୃତ୍ୟୁ ଓ ପୁର୍ନଜନ୍ମ, ସ୍ୱର୍ଗନର୍କ, ମାୟାମୋହ ଆଦି ବିଭିନ୍ନ ଶବ୍ଦମାନଙ୍କୁ ସାଧାରଣ ଲୋକଙ୍କୁ ବୁଝାଇବାକୁ ଯେମିତି ସେମାନେ ସ୍ୱତନ୍ତ୍ରଭାବେ ଜନ୍ମ ନେଇଛନ୍ତି । ସବୁ ଅବାକ୍ ଲାଗେ ।

ଧର୍ମ ଓ ଈଶ୍ୱର ବିଶ୍ୱାସ ରହିଲେ ସବୁ କଥା ସମ୍ଭବ । ମଣିଷ ଦୁଃଖର ସମୁଦ୍ରକୁ ଅତିକ୍ରମ କରିପାରିବ । ପଙ୍ଗୁ ଅଲଂଘ୍ୟ ଗିରି ପର୍ବତ ଆରୋହଣ କରିପାରିବ । ସବୁ ଅସାଧ୍ୟ ସାଧନ ହୋଇପାରିବ । ପିଲାଦିନେ ମୁଁ କପିଳାସ ଯାଇଥିଲି ମୋର ବଡ ଭାଇ ସହ । ୧୩୦୦ ପାହାଚ ଚଢି ମନ୍ଦିର ଦର୍ଶନ କିରବା ଓ ଶୀତଳ ପାଣିରେ ଗାଧୋଇବା ଓ ଚତୁଃପାର୍ଶ୍ୱର ଅବର୍ଣ୍ଣନୀୟ ଶୋଭା ଉପଭୋଗ କରିବା ଉଦ୍ଦେଶ୍ୟ ଥିଲା । ସେଦିନ ରାତିରେ ଆମେ ଅତିଥି ଗୃହରେ ରହିଥିଲୁ । ସକାଳୁ ଚହଳ ପଡିଲା ଯେ ଆମ ପାଖ କୋଠରୀରେ ରହୁଥିବା ଜଣେ ବ୍ୟକ୍ତିଙ୍କର ହାତବନ୍ଧା ଘଣ୍ଟା ଚୋରି ହୋଇଯାଇଛି । ଏ ଅଘଟଣ ମନ୍ଦିର ମୁଖ୍ୟ ପୂଜକଙ୍କ ପାଖରେ ପହଞ୍ଚିଲା । କପିଳାସ ଭଳି ଧର୍ମକ୍ଷେତ୍ରରେ ଚୋରୀ ଓ ଅନ୍ୟ ପାପ କାର୍ଯ୍ୟ କଳ୍ପନାତୀତ । ସେ ଅତି ଉଚ୍ଚସ୍ୱରରେ ଘୋଷଣା କରିଲେ ଯେ ଯିଏ ଘଣ୍ଟାଚୋରୀ କରିଛି, ସେ ଯଦି ଘଣ୍ଟାଏ ଭିତରେ ନମାନେ ଓ ଘଣ୍ଟାଟି ଫେରସ୍ତ ନଦିଏ ତେବେ ସେ ମନ୍ଦିର ହତା ଡେଇଁ ବାହାରକୁ ଯାଇ ପାରିବ ନାହିଁ । ଖୋଦ୍ ଶିବ ଭଗବାନ ସବୁ କଥା ଜାଣନ୍ତି । ଚୋରକୁ ଚରମ ଦଣ୍ଡ ଦେବେ ସେ । ଏସବୁ ଘୋଷଣା ପରେ ଯେଉଁ ଭଦ୍ରବ୍ୟକ୍ତିଙ୍କର ଘଣ୍ଟା ଚୋରୀ ହୋଇଥିଲା ସେ ଆଶ୍ୱସ୍ତ ଓ ସନ୍ତୁଷ୍ଟ ଥିଲେ । ପୂଜକଙ୍କ ଆଗରେ ଜଣଜଣ କରି ସମସ୍ତଙ୍କୁ ଶପଥ କରି କହିବାକୁ ହେଲା ଯେ ସେ ଘଣ୍ଟା ଚୋରୀ କରିନାହିଁ । ଏହାର କିଛି ସମୟ ପରେ ଜଣା ପଡିଲା ଯେ ଚୋରୀ କରିଥିବା ବ୍ୟକ୍ତିଟି ମାନିଛି ଓ ହାତ ଘଣ୍ଟାଟି ଫେରାଇ ଦେଇଛି । ସେ ପ୍ରକୃତରେ ଯେଉଁ ଭଦ୍ରବ୍ୟକ୍ତିଙ୍କର ଚୋରୀ ହୋଇଥିଲା, ତାଙ୍କର ଜଣେ ଆତ୍ମୀୟ । ଭଦ୍ରବ୍ୟକ୍ତି ଗାଧୋଇଗଲା ବେଳେ ସେ ଘଣ୍ଟାଟି ତାଙ୍କ କୋଠରୀରେ ଛାଡି ଦେଇଥିଲେ । ଚୋରୀ କରିଥିବା ବ୍ୟକ୍ତିଟି ମୁଖ୍ୟ ପୂଜକଙ୍କ ଘୋଷଣାରେ ଡରି ଯାଇଥିଲା । ପ୍ରକୃତରେ ଈଶ୍ୱର ବିଶ୍ୱାସ ଓ ଭୟ ଥିବାରୁ ହାତ ଘଣ୍ଟାଟି ବିନା ପୋଲିସ୍ ସହାୟତାରେ ଫେରି ପାଇଥିଲେ ଭଦ୍ରବ୍ୟକ୍ତି । ଏକଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ଓ ଭାବୁଥିଲି ଯେ ଚୋର ଯଦି ସତରେ ମନ୍ଦିରର ହତା ଡେଇଁ ପଳାଇ ଥାଆନ୍ତା, ସତରେ କ'ଣ ମରି ଯାଇଥାଆନ୍ତା ।

କୋମଳମତି ବାଳକ ହିସାବରେ ମୋ ମନରେ ଅନେକ ପ୍ରଶ୍ନ ସେଦିନ ଉଠିଥିଲା । ପୃଥିବୀ କାହାର ହସ୍ତଚାଳନାରେ ଏପରି ଆତଯାତ ହେଉଛି ? ମଣିଷର ଜଟିଳ ମସ୍ତିଷ୍କ ଗଢ଼ାଯିବା ପଛରେ କାହାର ହାତ ଅଛି ? ଜୀବନ ମୃତ୍ୟୁ, ଦୁଃଖ ଓ ଆନନ୍ଦ କେମିତି ସୃଷ୍ଟି ହେଉଛି ? ଜୀବଜଗତ ଓ ସଚ୍ରାଚ୍ର ବଞ୍ଚି ରହିବା ପଛରେ କି ରହସ୍ୟ ରହିଛି ? ପୃଥିବୀ ବାହାରେ ମହାଜାଗତିକ ଶକ୍ତିଟି କ'ଣ ? ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରୁଛନ୍ତି ବା କରୁନାହାନ୍ତି ଉଭୟ ବଡ ଆନନ୍ଦରେ ଜୀବନ ଅତିବାହିତ କରୁଛନ୍ତି । ଯେଉଁମାନେ ଈଶ୍ୱର ନାହାନ୍ତି ବୋଲି ଯୁକ୍ତି ବାଢୁଛନ୍ତି ସେମାନେ ବି ତ ମଣିଷ । ସବୁ ପ୍ରଶ୍ନର ସମାଧାନ ଖୋଜିବା ପାଇଁ ମୁଁ ଯେମିତି ପିଲା ଦିନରୁ କେଉଁ ଏକ ଅନ୍ୱେଷଣରେ ବାହାରି ପଡିଛି । ଅନ୍ୱେଷଣ ଆଜି ପର୍ଯ୍ୟନ୍ତ ଶେଷ ହୋଇନାହିଁ ।

❑ ❑ ❑

୭

# ଭଗବାନ ସତରେ ଅଛନ୍ତି କି ? - ଖ

ମୁଁ ଜାଣେ ମୋ ଭଳି ଅନେକ ବ୍ୟକ୍ତି ପିଲାଦିନେ ଭଗବାନଙ୍କୁ ବିଶ୍ୱାସ କିରବାକୁ ବାଧ ହୋଇଥିବେ । ସ୍କୁଲ୍ ଆରମ୍ଭରେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ପଡିଥାଏ ଉଚ୍ଚସ୍ୱରରେ । ଧାଡି ଧାଡି କରି ଛିଡାହୋଇ ଛାତ୍ର ଜୀବନସାରା ଯୋଡହସ୍ତରେ ଓ ମୁଦ୍ରିତ ନୟନରେ ତଥା ଏକଲୟରେ ପ୍ରାର୍ଥନା ନକରିଲେ ଶ୍ରେଣୀଗୃହକୁ ପ୍ରବେଶ କରିହୁଏ ନାହିଁ । ଆମ୍ଭମାନଙ୍କ ସହ ହେଡ୍‌ମାଷ୍ଟ୍ରଙ୍କ ଠାରୁ ଆରମ୍ଭ କରି ଅନ୍ୟ ଶିକ୍ଷକବୃନ୍ଦ ମଧ ପ୍ରାର୍ଥନା କରନ୍ତି । ଏହା ଗୁରୁକୁଳ ସମୟରେ ଥିଲା ଓ ଆଜି ବି ଅଛି । ଶିକ୍ଷାଲାଭ ସହ ଭଗବତ୍ ପ୍ରାର୍ଥନା ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ । ଖାଲି ହିନ୍ଦୁଧର୍ମରେ ନୁହେଁ, ପୃଥିବୀର ସବୁ ଧର୍ମରେ ଏହା ଅଛି, ସବୁ ସମାଜରେ ଅଛି । ଆଜିକାଲି ପ୍ରାର୍ଥନା ସମୟରେ ଅଦ୍ୱିତୀୟ ପରିବେଶ ନାହିଁ । କାରଣ ସବୁ ଉପଚାରରେ ପରିଣତ ହୋଇଯାଇଛି । ପିଲାଦିନରେ ରଥଯାତ୍ରା ପରେ ଆମ ସହରରେ ଗୁଣ୍ଡିଚାଘରେ ତିନିଠାକୁରଙ୍କ ଅବତାର ଓ ବେଶଭୂଷା ମୋର ଆଜିପର୍ଯ୍ୟନ୍ତ ମନେଅଛି । ମୁଁ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରିଥାଏ ଓ ବଡ଼ ଭଉଣୀମାନଙ୍କ ସହ ଅବତାରମାନଙ୍କୁ ଯାଇ ନିରୀକ୍ଷଣ କରେ । ସେମାନଙ୍କୁ ଅନେକ ପ୍ରଶ୍ନ ପଚାରେ - ମତ୍ସ୍ୟ ଅବତାର ଠାରୁ ଆରମ୍ଭ କରି କଲ୍‌କୀ ଅବତାର ପର୍ଯ୍ୟନ୍ତ । ପ୍ରତ୍ୟେକ ଅବତାର ପଛରେ ଥିବା କାହାଣୀଗୁଡିକ ଥରେ ନୁହେଁ ଅନେକ ଥର ଶୁଣିବାକୁ ଭଲ ଲାଗେ । ଆଗୁର କହିରଖିଛି ଯେ ମୋର ବାପା ଭୋର୍ ସକାଳୁ ଦଶାବତାର ଓ ବିଷ୍ଣୁ ସହସ୍ରନାମ ଗାନ କରନ୍ତି ଓ ଶୁଣି ଶୁଣି ମୁଁ ବି ମୁଖସ୍ଥ କରିଦେଇଥାଏ । ଦିନେ ମୁଁ ତାଙ୍କୁ ସାହସ କରି ପଚାରିଥିଲି ଯେ ଭଗବାନଙ୍କ ଦଶାବତାର ନହୋଇ ଶହେ ଅବତାର କାହିଁକି ହେଲା ନାହିଁ ଓ ବିଷ୍ଣୁଙ୍କ ସହସ୍ରନାମ ପଛରେ କି ଗୂଢ଼ ରହସ୍ୟ ରହିଛି ? ସେ ଗୋଟିଏ ବାକ୍ୟରେ ଉତ୍ତର ଦେଇଥିଲେ, ପଢ଼ିଲେ ସବୁ ଜାଣିପାରିବ । ସମ୍ଭବତଃ ସେଥିପାଇଁ ପିଲାଦିନରୁ ମୋର ବହି ପଢ଼ିବା ପ୍ରତି ଅହେତୁକ ଆଗ୍ରହ ବଢ଼ିଯାଇଛି, ଯାହା ଆଜିପର୍ଯ୍ୟନ୍ତ ଶେଷ ହୋଇନାହିଁ ।

ପିଲାଦିନେ ପୁରାଣ ଗପଗୁଡିକୁ ବାରମ୍ବାର ପଢ଼ିବା ମୋର ଏକ ଅଭ୍ୟାସ ହୋଇଯାଇଥିଲା । ମୁଁ ବି ମୋର ବନ୍ଧୁମାନଙ୍କୁ ନେଇ ଛୋଟ ପାଠାଗାରଟିଏ ତିଆରି କରିଥିଲି । ସେଥିରେ ଏହି ପୁରାଣ ଗପଗୁଡିକ ବିଶେଷ ସ୍ଥାନ ପାଇଥିଲା । ପକେଟ୍‌କୁ ଗୁରୁଜନମାନଙ୍କ ପାଖରୁ ସହଜରେ ପଇସା ଆସିଯାଉଥିଲା । ସେଗୁଡିକ ବହିକିଣାରେ

ଲାଗୁଥିଲା । ଆମର ପଞ୍ଚମ ଶ୍ରେଣୀ ପାସ୍ ପର୍ଯ୍ୟନ୍ତ ଏ ଉଦ୍ୟମ ଲାଗି ରହିଥିଲା । ପୁରାଣ ଗପଗୁଡିକରୁ ତିନି/ଚାରୋଟି ଗପ ଖୁବ୍ ମୋର ପ୍ରିୟ ଥିଲା । ଶିକ୍ଷକ ଗପଟିଏ କହିବାକୁ ଆଦେଶ ଦେଲେ, ଏଗୁଡିକ କହିବାକୁ ପଡୁଥିଲା ଓ ପ୍ରଫୁଲ୍ଲଚିତ୍ତରେ ତାହା ସମସ୍ତଙ୍କୁ ଶୁଣାଇବାକୁ ଖୁବ୍ ଭଲ ଲାଗୁଥିଲା । ପ୍ରଥମ ଗପଟି ଥିଲା, ଭକ୍ତ ପ୍ରହ୍ଲାଦ ବିଷୟରେ ।

ପ୍ରବଳପ୍ରତାପୀ ହିରଣ୍ୟକଶ୍ୟପୁଙ୍କ ପୁତ୍ରରୂପେ ଜନ୍ମ ନେଇଥିଲା ପ୍ରହ୍ଲାଦ । ଭଗବାନ ବିଷ୍ଣୁଙ୍କ ଭକ୍ତ ଥିଲା । ଗୁରୁକୁଳରେ ଛାତ୍ର ଥିବା ସମୟରେ ସେ ବେଦ ଓ ପୁରାଣ ପଢୁଥିଲା ଏବଂ ଭଗବାନ ବିଷ୍ଣୁଙ୍କ ମହିମା ସମସ୍ତଙ୍କୁ ଶୁଣାଉଥିଲା । ନିଜର ପିତା ହିରଣ୍ୟକଶ୍ୟପୁର ଗୁଣଗାନ ସେ କେବେ କରୁ ନଥିଲା । ପ୍ରହ୍ଲାଦର ଅସୀମ ଗୁଣ ତା'ର ଶିକ୍ଷକମାନେ ହିରଣ୍ୟକଶ୍ୟପୁକୁ ଶୁଣାଇଲା ପରେ ସେ ଖୁବ୍ ରାଗି ଯାଇଥିଲା ଯେ, ତାହାର ନିଜର ପୁତ୍ର ତାହାର ଗୁଣଗାନ ନକରି ଭଗବାନ ବିଷ୍ଣୁଙ୍କ ଗୁଣଗାନ କରୁଛି । ପ୍ରହ୍ଲାଦକୁ ସେ ଅନେକ ଯନ୍ତ୍ରଣା ଦେଇଥିଲା । ହିରଣ୍ୟକଶ୍ୟପୁ ବ୍ରହ୍ମାଙ୍କ ଠାରୁ ବରଲାଭ କରିଥିଲା ଯେ, ତାକୁ କେହି ମଣିଷ ବା ପଶୁ ଦିନ ବା ରାତି ସମୟରେ, ନଅରରେ ବା ବାହାରେ ମାରିପାରିବେ ନାହିଁ ।

ପ୍ରହ୍ଲାଦ କହୁଥିଲା ଯେ, ଭଗବାନ ସବୁଠି ଅଛନ୍ତି, ଏପରିକି କାଷ୍ଠସ୍ତମ୍ଭ ଭିତରେ । ହିରଣ୍ୟକଶ୍ୟପୁ ସ୍ତମ୍ଭକୁ ହାଣିଦେବାରୁ ତା' ଭିତରୁ ଭଗବାନ ବିଷ୍ଣୁ ନୃସିଂହ ଅବତାରରେ ବାହାରିଆସି ତାକୁ ନିଜର କୋଳରେ ରଖି ତା'ର ପେଟ ଚିରି ମାରିଥିଲେ । ଏହା କରିବା ଦ୍ୱାରା ବ୍ରହ୍ମାଙ୍କ ବରକୁ ସେ ଅକାମି କରିଥିଲେ । ସେ ମଣିଷ ବା ପଶୁ ନଥିଲେ । ଥିଲେ ନରସିଂହ । ଅର୍ଥାତ୍ ଅଧା ମଣିଷ ଓ ଅଧା ପଶୁ । ଯେଉଁ ସମୟରେ ଭଗବାନ ଆବିର୍ଭାବ ହୋଇଥିଲେ, ତାହା ଦିନ ନଥିଲା କି ରାତି ନଥିଲା । କୋଳରେ ରଖି ପେଟ ଚିରିବା ଦ୍ୱାରା ଆକାଶ, ପାତାଳ, ମର୍ତ୍ତ୍ୟ କେଉଁଠି ନଥିଲା । ଏହା ଏକ ଚମତ୍କାର ଗଳ୍ପ ଥିଲା ମୋ ପାଇଁ । ନୃସିଂହାବତାରକୁ ବର୍ଣ୍ଣନା କରୁଥିବା ଚିତ୍ରଗୁଡିକ ମୋ ପାଇଁ ଅଭୁଲା ହୋଇଯାଇଥିଲା । ସେହିଭଳି ଦୁଷ୍ମନ୍ତ ଓ ଶକୁନ୍ତଳା, ଧ୍ରୁବ ଓ ରାଜା ହରିଶ୍ଚନ୍ଦ୍ରଙ୍କୁ ନେଇ କାହାଣୀଗୁଡିକ ଖୁବ୍ ଭଲ ଲାଗୁଥିଲା ଓ ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ଆସ୍ଥାସୂଚକ ଭାବନା ସୃଷ୍ଟି କରୁଥିଲା ।

ପୁରାଣ ଗପଗୁଡିକରୁ ଗୋଟିଏ କଥା ସ୍ପଷ୍ଟ ପ୍ରମାଣିତ ହେଉଥିଲା ଯେ, ଭଗବାନଙ୍କ ନାମକୀର୍ତ୍ତନ କରିଲେ ପ୍ରମାଦ ଦୂର ହୋଇଯିବ । ଏହିସବୁ କାହାଣୀ ମୋ ଭଳି ଅନେକଙ୍କୁ ନିଶ୍ଚିତ ପ୍ରଭାବିତ କରିଥିବ । ଏଥିପାଇଁ ଆମେ ଗଣେଶ ପୂଜା ଓ ସରସ୍ୱତୀ ପୂଜା କେବଳ କରୁନଥିଲୁ, ପ୍ରତ୍ୟେକ ଦେବାଦେବୀଙ୍କୁ ସୁଯୋଗ ପାଇଲାମାତ୍ରକେ ପୂଜା କରିବାକୁ ଆଗେଇ ଆସିଥିଲୁ । ବିଭିନ୍ନ ପର୍ବପର୍ବାଣୀରେ ଉପବାସ କରିବା, ମୁଣ୍ଡରେ ଚନ୍ଦନ, ସିନ୍ଦୂର ଲଗାଇବା, କଥା କଥାକେ ଭଗବାନଙ୍କ ନାମ ନେବା କିଛି ଅସ୍ୱାଭାବିକ ମନେହେଉ ନଥିଲା । ବିଶ୍ୱାସ-ଅବିଶ୍ୱାସର ଦ୍ୱନ୍ଦ୍ୱ କେବେହେଲେ ସ୍ପର୍ଶ କରି ନଥିଲା । ରୀତିନୀତି, ପରମ୍ପରାଗୁଡିକ ବିଷୟରେ ପ୍ରଶ୍ନ କରିବାକୁ ସାହସ ଆସୁନଥିଲା । ଗୁରୁଜନମାନେ ଯାହା କରୁଥିଲେ, ତାହା

ଅନୁକରଣ କରିବାକୁ ପଡୁଥିଲା । ଶିକ୍ଷକମାନେ ଯାହା ପଢ଼ାଉଥିଲେ ଓ ଯେଉଁଭଳି ଆଲୋଚନା କରୁଥିଲେ, ତାହା ପ୍ରଶ୍ନ କରିବା ପାଇଁ ସାହସ ଆସୁ ନଥିଲା । ପୂଜାପାଠ, ଦେବାର୍ଚ୍ଚନା ଆଦି କେବେ ଅଯୌକ୍ତିକ ବା ମୂଲ୍ୟହୀନ ବୋଲି ଜଣାପଡୁ ନଥିଲା । ପୁରାଣର କାହାଣୀଗୁଡିକ ସବୁବେଳେ ସତ୍ୟ ଜଣାପଡୁଥିଲା । ଦେବାଦେବୀମାନଙ୍କର ସ୍ୱର୍ଗ ସତ ବୋଲି ମନେହେଉଥିଲା । ଧର୍ମ କ'ଣ - ଅଧର୍ମ କ'ଣ ବାରିହେଉଥିଲା । ପାପ କ'ଣ ଓ ପୁଣ୍ୟ କ'ଣ, ତୁଳନା କରିହେଉଥିଲା ।

ସବୁଠାରୁ ପଢ଼ିବାକୁ ଓ ଶୁଣିବାକୁ ଭଲ ଲାଗୁଥିଲା ଭାଗବତ । ବିଶେଷ କରି ଦଶମ ସ୍କନ୍ଧ ଓ ଏକାଦଶ ସ୍କନ୍ଧ । ପ୍ରତ୍ୟେକଟି ପଦର ଅନେକ ଅର୍ଥ ଥିଲା ଓ ତାହାର ଜୀବନରେ ତାତ୍ପର୍ଯ୍ୟ ରହିଥିଲା ଭଳି ମନେହେଉଥିଲା । ଯଦୁବଂଶ କିପରି ଧ୍ୱଂସ ହେଲା, ଶାମ୍ବକୁ ନାରୀବେଶ କରିବା ଅଥବା ଶ୍ରୀକୃଷ୍ଣଙ୍କୁ ଜରାଶବର ମାରିବା ଆଦି କାହାଣୀ ଖୁବ୍ ସତ ମନେହେଉଥିଲା । ଉଦ୍ଧବ ଉବାଚ ଓ ଶ୍ରୀକୃଷ୍ଣ ଉବାଚ– ଉତ୍ତର ଓ ପ୍ରତ୍ୟୁତ୍ତର ବିଶେଷ ଆକର୍ଷଣ ଥିଲା । ଉଦ୍ଧବ ଶ୍ରୀକୃଷ୍ଣଙ୍କୁ ଜୀବନ ଓ ଦର୍ଶନର ଜଟିଳ ପ୍ରଶ୍ନ ପଚାରିଥିଲେ ଓ ଶ୍ରୀକୃଷ୍ଣ ତାକୁ ସହଜରେ ଉତ୍ତର ଦେଇଥିଲେ । ସେସବୁ ଖୁବ୍ ବୋଧଗମ୍ୟ ଥିଲା । ସାଧାରଣ ଭାଷାରେ ଲେଖାଯାଇଥିବାରୁ ଭାଗବତର ପଦଗୁଡିକ ମନେରଖିବା ସହଜ ହୋଇଥିଲା । "ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି କାରଣେ ?" ଭଳି ପଦାବଳୀ ଆଜି ପର୍ଯ୍ୟନ୍ତ ମନେ ଅଛି । ଭାଗବତରେ ଗୁରୁମାନଙ୍କ କଥା ଲେଖାଯାଇଛି । କପୋତ ପକ୍ଷୀ, ବ୍ୟାଧ, ପିଙ୍ଗଳା ବେଶ୍ୟା ଆଦି ଚରିତ୍ରମାନଙ୍କ ଦ୍ୱାରା ଯେ କେହି ପ୍ରଭାବିତ ହୋଇଯିବ ସହଜରେ । ଶ୍ରୀକୃଷ୍ଣ ଏମାନଙ୍କୁ ଗୁରୁସ୍ଥାନରେ ରଖିଛନ୍ତି, ଅର୍ଥାତ୍ ଗୁରୁମାନେ କେବଳ ବିଦ୍ୟାଳୟରେ ନଥା'ନ୍ତି । ସମାଜରେ ଗୁରୁସ୍ଥାନୀୟ ବ୍ୟକ୍ତି ଅନେକ ଥାଆନ୍ତି ଓ ସେମାନଙ୍କୁ ସହଜରେ ଚିହ୍ନଟ କରାଯାଇପାରେ । ଭାଗବତରେ ଆଉ ଗୋଟିଏ ପଦ ବି ପିଲାଦିନେ ଖୁବ୍ ଭଲ ଲାଗୁଥିଲା । "କର୍ମ କଷଣ ଦୁଃଖ ସହେ, ଅରଣ୍ୟେ ଅଜଗର ପ୍ରାୟେ ।" ଏସବୁ ଜୀବନଦର୍ଶନ ଗଢ଼ିବାରେ ନିଶ୍ଚିତ ସାହାଯ୍ୟ କରିଥିଲା ।

କିନ୍ତୁ ଧୀରେ ଧୀରେ ସବୁକିଛି ବଦଳିବାରେ ଲାଗିଲା । ବିଜ୍ଞାନ ସହ ପରିଚିତ ହେବାରୁ ଅନେକ ମୌଳିକ ତତ୍ତ୍ୱ ବୁଝିହେଲା । ଅନେକ ଅନ୍ଧବିଶ୍ୱାସ ମଧ୍ୟ ତୁଟିଗଲା । ଜୀବଜଗତ ଓ ମଣିଷକୁ ଭଗବାନ ସୃଷ୍ଟି କରିନାହାନ୍ତି । ଏସବୁ ସୃଷ୍ଟି ହୋଇଛି ବିବର୍ତ୍ତନବାଦରୁ । ସାରା ଜଗତ ସୃଷ୍ଟି ହୋଇଛି 'ବିଗ୍‌ବ୍ୟାଙ୍ଗ', ଅର୍ଥାତ୍ ଏକ ମହାଜାଗତିକ ବିସ୍ଫୋରଣରୁ । ଦିନରାତି ହେବା, ଋତୁ ପରିବର୍ତ୍ତନ ହେବା, ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗ ହେବା ପଛରେ ବୈଜ୍ଞାନିକ କାରଣ ଅଛି । ଯାହାକିଛି ଘଟୁଛି ଓ ଘଟିବାକୁ ଯାଉଛି, ତାହା ସବୁ ବିଜ୍ଞାନସମ୍ମତ ନିୟମ ଅନୁସାରେ ସମ୍ଭବ ହେଉଛି । ଜନ୍ମ - ମୃତ୍ୟୁ ମଧ୍ୟ ଏହିଭଳି । ନିଉଟନ୍‌ଙ୍କ ମୁଣ୍ଡରେ ସେଓ ପଡିବା ଠାରୁ ଆରମ୍ଭ କରି ଆଇନ୍‌ଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ସମ୍ପର୍କିତ କାହାଣୀ ପ୍ରତି ଆଗ୍ରହ ଖୁବ୍ ବଢ଼ିଲା । ଏହା ସହିତ ପୁରାଣବର୍ଣ୍ଣିତ କାହାଣୀସବୁ କେମିତି ଗ୍ରହଣଯୋଗ୍ୟ ମନେହେଲା ନାହିଁ ।

ବିଜ୍ଞାନ ଓ ଧର୍ମ ଭିତରେ ଦ୍ୱନ୍ଦ୍ୱକୁ ନେଇ ମହାନ୍ ବୈଜ୍ଞାନିକ ଗାଲିଲିଓ କେମିତି ଦଣ୍ଡ ପାଇଥିଲେ, ତାହା ପଢ଼ି ଅବାକ୍ ଲାଗୁଥିଲା । ଭଗବନାଙ୍କ ଅସ୍ତିତ୍ୱ ସମ୍ପର୍କରେ ବିଜ୍ଞାନ କୌଣସି ନିର୍ଦ୍ଦିଷ୍ଟ ତତ୍ତ୍ୱ ଦେଇପାରୁ ନଥିବାରୁ ପ୍ରଶ୍ନ ସବୁ ବାରମ୍ବାର ଉଠିଛି । ଧର୍ମଗୁରୁମାନେ ଶହ ଶହ ବର୍ଷରୁ ଚାଲିଆସୁଥିବା ବିଶ୍ୱାସମାନଙ୍କୁ ସହଜରେ ଦୂର କରିପାରି ନାହାନ୍ତି । ଅନ୍ୟପକ୍ଷରେ ବୈଜ୍ଞାନିକମାନେ ପ୍ରତ୍ୟେକ ବିଶ୍ୱାସ ପଛରେ ବିଜ୍ଞାନସମ୍ମତ ଯୁକ୍ତି ଅଛି କି ନାହିଁ, ତାହା ବାରମ୍ବାର ପରୀକ୍ଷା କରିଛନ୍ତି । ବିଜ୍ଞାନ ଓ ଧର୍ମ ଭିତରେ ଲଢ଼େଇ କେତେଶହ ବର୍ଷ ଧରି ଲାଗି ରହିଛି ଏବଂ ଏବେ ମଧ ଅନେକ ବିଷୟ ଅମୀମାଂସିତ ହୋଇ ରହିଛି । ସ୍କୁଲରେ ଶିକ୍ଷକମାନଙ୍କୁ ବିଜ୍ଞାନ ଓ ଧର୍ମ ଭିତରେ ଥିବା ବୈଚାରିକ ଦ୍ୱନ୍ଦ୍ୱ ସବୁବେଳେ ପଚାରି ହେଉନଥିଲା । ଗୁରୁଜନମାନଙ୍କୁ ଧର୍ମ ଓ ଭଗବାନଙ୍କ ବିଷୟରେ ମୋର ମନରେ ଅନେକ ପ୍ରଶ୍ନ ଅଛି ବୋଲି ଜଣାଇବାକୁ ଖୁବ୍ ଭୟ ଲାଗୁଥିଲା । ସଂଶୟ ଓ ସନ୍ଦିଗ୍ଧତା ଭିତରେ ଅନେକ ସମୟ ଏହିଭଳି କଟିଯାଉଥିଲା ।

ଏକଥା ସତ ଯେ, ବେଳେବେଳେ ଆମ ଶିକ୍ଷକମାନେ କହୁଥିଲେ, ପୁରାଣବର୍ଣ୍ଣିତ ଅନେକ ଅଲୌକିକ ଘଟଣା ପଛରେ ବୈଜ୍ଞାନିକ ତଥ୍ୟ ସବୁ ରହିଛି । ଅଥର୍ବ ବେଦରେ ବିଜ୍ଞାନକୁ କେବଳ ବ୍ୟାଖ୍ୟା କରାଯାଇଛି । ରାମାୟଣ ଓ ମହାଭାରତ ଯୁଦ୍ଧରେ ଯେଉଁ ବର୍ଣ୍ଣନା କରାଯାଇଛି, ତାହା ପଛରେ ବିଜ୍ଞାନର କେମିତି ପ୍ରୟୋଗ କରାଯାଇଛି, ତାହାର ଅନେକ ବିଶ୍ଳେଷଣ ହୋଇଛି ବୋଲି ଆମର ଶିକ୍ଷକମାନେ ଆମକୁ ବୁଝାଉଥିଲେ । ମୋଟାମୋଟି କହିବାକୁ ଗଲେ, ଆମକୁ ଧର୍ମ ଓ ଭଗବତ୍ ବିଶ୍ୱାସକୁ ସମ୍ପୂର୍ଣ୍ଣ ଗ୍ରହଣ ନକରି ବିଜ୍ଞାନର ତର୍କ ଓ ତତ୍ତ୍ୱକୁ ବିଚାରକୁ ନେବାକୁ ତରୁଣ ବୟସରେ ଆହ୍ୱାନ ଆସିଥିଲା ।

ମୋର ସେଦିନ ମନେ ଅଛି, ଯେଉଁଦିନ ମୁଁ ଭଗବତ୍ ବିଶ୍ୱାସକୁ ପରିହାର କରିଥିଲି ଓ ବିଜ୍ଞାନକୁ ଗୋଟାପଣେ ଆପଣାର କରିଥିଲି । ଦୀପାବଳୀ ଦିନ ଆମ ପରିବାରର ସମସ୍ତ ସଦସ୍ୟ ଏକାଠି ହୁଅନ୍ତି ଓ ପୂଜାପାଠ କରିବା ସଙ୍ଗେ ସଙ୍ଗେ ପୂର୍ବପୁରୁଷଙ୍କ ସ୍ମୃତିଚାରଣ କରନ୍ତି । ବାଣ ଫୁଟାଯାଏ ଓ ଭୋଜିଭାତ ବି ହୁଏ । ମୁଁ ନବମ ଶ୍ରେଣୀରେ ପଢୁଥାଏ ଓ ମନ ଭିତରେ ଭଗବାନଙ୍କୁ ନେଇ ପୂଜାପାଠ କରିବାରେ ପରମ୍ପରାର ଶୃଙ୍ଖଳ ସ୍ପଷ୍ଟ ଦେଖୁଥାଏ । ଦୀପ ଜଳାଇବା, ବାଣ ଫୁଟାଇବା ଓ ପୂଜାପାଠ କରିବା ଆଦି ଉପଚାର କେମିତି କେମିତି ଅର୍ଥହୀନ ଜଣାପଡୁଥାଏ । ଏସବୁ କରିବା ପଛରେ ଏକ ସାମାଜିକ ଓ ଧାର୍ମିକ ଶକ୍ତିର ଅଦୃଶ୍ୟ ଚାପ ରହିଛି ବୋଲି ସ୍ପଷ୍ଟ ଅନୁଭବ କରିହେଉଥାଏ । ମୋର ମନେହେଲା ଯେ, କୌଣସି ନୀତିନିୟମ ବିଜ୍ଞାନ ଦ୍ୱାରା ସଞ୍ଚାଳିତ ନହେଲେ, ତାହାକୁ ଅନ୍ଧବିଶ୍ୱାସ ବୋଲି ମାନିବାକୁ ହେବ । ସେଇଥିପାଇଁ ବିଜ୍ଞାନକୁ ସବୁକ୍ଷେତ୍ରରେ ପ୍ରୟୋଗ କରିବାକୁ ହେବ । ବିଜ୍ଞାନ ପ୍ରତି ଯେତିକି ଆଦର ଓ ସମର୍ଥନ ମୋର ବଢ଼ିଲା, ଈଶ୍ୱର ବିଶ୍ୱାସ ସେହି ହାରରେ କେଜାଣି କାହିଁକି କମିବାରେ ଲାଗିଲା ।

❑ ❑ ❑

## ୮

# ଭଗବାନ ସତରେ ଅଛନ୍ତି କି ? - ଗ

ତାରୁଣ୍ୟର ଶେଷରେ ଓ ଯୌବନର ଆରମ୍ଭରେ ମୁଁ ପ୍ରେମରେ ପଡିଯାଇଥିଲି । ବନ୍ଧୁତା ଓ ଭଲ ପାଇବାର ପୃଥିବୀ ମୋ ପାଇଁ ଉନ୍ମୋଚିତ ହୋଇଥିଲା ଏକ ଦିବ୍ୟ ମୁହୂର୍ତ୍ତରେ । ଉଦ୍‌ଭାସିତ ହୋଇଥିଲା ସତ୍ୟ, ଶିବ ଓ ସୁନ୍ଦର ସମାହିତ ମହାଜାଗତିକ ଶକ୍ତି । ଅନୁଭବ କରି ହେଉଥିଲା ଜୀବନ ଓ ଯୌବନର ଉଦ୍ଦାମତା ଓ ଛନ୍ଦମୟ କବିତା । ଶୁଣି ହେଉଥିଲା ମଧୁର ସଂଗୀତ । ଦେଖି ହେଉଥିଲା ଛବିଳ ଦୃଶ୍ୟପଟ । ସବୁକିଛି ଆସ୍ଥା ସୂଚକ ପରିପ୍ରକାଶ । ଏଇ ସମୟରେ ବିଜ୍ଞାନାଗାରର ଯାନ୍ତ୍ରିକତା ଓ ଗଣିତର ତର୍କ ଓ ପ୍ରମାଣଯୋଗ୍ୟ ଉପପାଦ୍ୟ ସବୁ କେମିତି କେମିତି ଅଯୌକ୍ତିକ ଜଣା ପଡିଥିଲା । ବିଜ୍ଞାନର ଦର୍ଶନ ଓ ମହାନ୍‌ତତ୍ତ୍ୱ ସବୁ ମୂଲ୍ୟହୀନ ବୋଲି ଜଣାପଡିଲା । ହୃଦୟର କଥା, ମନ ଗହନର ଗୁମର କଥା, ପ୍ରାଣର ମହକ ସବୁକୁ କେଜାଣି କାହିଁକି ବିଜ୍ଞାନର ଉଚ୍ଚ ସଫଳତା ଦ୍ୱାରା ମାପି ହେଉନଥିଲା । ଏପରିକି ବିଜ୍ଞାନର ଥିଓରୀ ଏବଂ ସୂତ୍ର ପ୍ରେମ ଓ ଭଲପାଇବାର ମହନୀୟତା ଓ ଜଟିଳତାକୁ ବୁଝାଇ ପାରୁନଥିଲା । ପ୍ରେମରେ ମିଳନ ଓ ବିଚ୍ଛେଦ, ବୀରହ ଓ ବୀରତ୍ୱ, ପାପ ଓ ପୂଣ୍ୟ ଆଦି ଉପାଦାନକୁ ବୁଝିବାକୁ ବା ଅନ୍ତଃସ୍ଥ କରିବାକୁ ବିଜ୍ଞାନ ଯେମିତି ଅସମର୍ଥ ଥିଲା ମୋ ପାଇଁ । ଏଇ ସମୟ ମୋ ପାଇଁ ଦ୍ୱନ୍ଦ, ମାନସିକ ଯନ୍ତ୍ରଣା ଓ ଅନ୍ତଃଜ୍ୱାଳାମାନଙ୍କ ଦ୍ୱାରା ଭରି ଯାଇଥିଲା । ଯେଉଁ ବିଜ୍ଞାନ ଓ ଗଣିତ ମୋତେ ଏକଦା ବୌଦ୍ଧିକ ଅହମିକା ଓ ସାର୍ଥକତା ଆଣି ଦେଇଥିଲା, ତାହା କେମିତି ନିରର୍ଥକ ଜଣା ପଡିଲା । ଭଲ ପାଇବା ଏକ ଅନ୍ଧମୁହାଣୀ ଥିଲା ମୋ ପାଇଁ । ନିଃସର୍ତ୍ତ ଭଲ ପାଇବା ଥିଲା ଏକ ଚମତ୍କାର ଆହ୍ୱାନ । ବିଜ୍ଞାନ ସବୁ ପ୍ରଶ୍ନର ଉତ୍ତର ଦେଇ ପାରୁନଥିଲା । ବିଜ୍ଞାନ ବି ସବୁ ମାନସିକ ଜ୍ୱଳନମାନଙ୍କରେ ଚନ୍ଦନର ପ୍ରଲେପ ଦେଇପାରୁ ନଥିଲା । ଏଇ ସମୟରେ କେଜାଣି କାହିଁକି ଭଗବାନଙ୍କ ଅସ୍ତିତ୍ୱ ଉପରେ ମୋ ଭଳି ଜଣେ ଅସ୍ତିତ୍ୱବାଦୀ ଅନେକ ପ୍ରଶ୍ନ ଉଠାଇଥିଲା । ସେତେବେଳେ କେଉଁ ଏକ ଅଜଣାପୁଳକରେ ଦସ୍ତୋଭସ୍କିଙ୍କ ଉପନ୍ୟାସ ଗୁଡିକୁ ପଢ଼ିବାକୁ ସୁଯୋଗ ମିଳିଥିଲା ଓ ଉପନ୍ୟାସର ଚରିତ୍ର ଗୁଡିକ ଭଳି ରହିବାକୁ ତୀବ୍ର ଇଚ୍ଛା ଜାଗରିତ ହୋଇଥିଲା ।

ସତରେ କହିବାକୁ ଗଲେ ଭଗବାନ ଅଛନ୍ତି କି ନାହିଁ ଏବଂ ତାଙ୍କୁ ବିଶ୍ୱାସ କରାଯିବ କି ନାହିଁ ଯଦି କିଏ ପ୍ରକୃତରେ ଶାଣିତ ମସ୍ତିସ୍କରେ ବିଶ୍ଳେଷଣ କରିଛି ସେ ହେଉଛନ୍ତି ଋଷୀୟ ଲେଖକ ଦସ୍ତୋଭସ୍କି । ଗତ ଶହେ ବର୍ଷଧରି ବୌଦ୍ଧିକ ଜଗତରେ ଯଦି କିଏ ସବୁଠାରୁ ବେଶୀ ପ୍ରଭାବ ପ୍ରକାଇଛି ଓ ବିଶ୍ୱର ମହାନ୍ ଲେଖକମାନଙ୍କୁ ପ୍ରୋତ୍ସାହନ ଦେଇଛି, ସେ ହେଉଛନ୍ତି ଦସ୍ତୋଭସ୍କି । ସାରା ବିଶ୍ୱ ସାହିତ୍ୟରେ ସେସବୁର ଝଲକ ମୁଁ ଦେଖିପାରୁଛି । ସେ ବର୍ଣ୍ଣନା କରିଥିବା ଚରିତ୍ରମାନେ ଆଜି ମଧ ଜୀବିତ ଅଛନ୍ତି ଓ ଆଦୌ ବଦଳି ନାହାନ୍ତି । ସେ ଉଠାଇଥିବା ଅନେକ ପ୍ରଶ୍ନର ସମାଧାନ ଏବେ ମଧ ହୋଇନାହିଁ । ନୂଆ ପ୍ରଶ୍ନ ଯଦି ଉଠିଛି ସେଗୁଡିକ ପୁରୁଣା ପ୍ରଶ୍ନର ଭିତରେ ହିଁ ସ୍ଥାନ ପାଇଛି ।

ଦସ୍ତୋଭସ୍କିଙ୍କ ଶ୍ରେଷ୍ଠ ଉପନ୍ୟାସ 'ଦି ବ୍ରଦର୍ସ କାରାମାଜୋଭ୍' (The Brothers Karamazov)ରେ ଭଗବାନଙ୍କ ଅସ୍ତିତ୍ୱ ଉପରେ ଆଲୋକପାତ କରାଯାଇଛି । ଉପନ୍ୟାସର ପାଞ୍ଚୋଟି ମୁଖ୍ୟ ଚରିତ୍ର - ବାପା ଫିଓଡର, ତିନି ପୁଅ ଡ଼ିମିତ୍ରୀ, ଆଇଭାନ, ଆଲ୍ୟୋଶା ଏବଂ ଜାରଜ ପୁତ୍ର ସ୍ମେରଡ୍ୟାକୋଭ୍ । ଫିଓଡରକୁ ସ୍ମେରଡ୍ୟାକୋଭ ହତ୍ୟା କରିଛି କେଜାଣି କାହିଁକି ? କିନ୍ତୁ ସନ୍ଦେହ ହୋଇଛି ଡିମିତ୍ରୀ ଉପରେ କାରଣ ବାପ ଓ ବଡ ପୁଅ ଗୋଟାଏ ବେଶ୍ୟାକୁ ଆପଣାର କରିବାକୁ ପ୍ରତିଯୋଗିତା କରୁଥିଲେ । ଆଇଭାନ୍ ବୁଦ୍ଧିଜୀବୀ ବୋଲି ପରିବାରରେ ସ୍ୱତନ୍ତ୍ର ସ୍ଥାନ ପାଇଛି, ସିଏ ବି ଅନୁଭବ କରୁଛି ଯେ ବାପାର ହତ୍ୟା ପାଇଁ ସେ ଦାୟୀ । କାରଣ କହୁ କହୁ ସେ ସ୍ମରଡ୍ୟାକୋଭ୍‌କୁ କହି ଦେଇଛି ଯେ ଭଗବାନ ନାହାନ୍ତି, ତେଣୁ ସବୁକିଛି କରିହେବ । ଏହି ଉକ୍ତି ସ୍ମେରଡ୍ୟୋକୋଭ୍ ଫିଓଡର କାରାମାଜୋଭକୁ ହତ୍ୟା କରିବାକୁ ଇନ୍ଧନ ଯୋଗାଇଛି ବୋଲି ଆଇଭାନ୍ ଭାବିଛି । ଯଦି ଆଇଭାନ୍ ଏକଥା କହିନଥାନ୍ତା, ସମ୍ଭବତଃ ତାଙ୍କର ପିତା ମରିନଥାନ୍ତେ । କିନ୍ତୁ ଆଲ୍ୟୋଶା ଧର୍ମ ଓ ଆଧାତ୍ମିକତାର ପୂଜାରୀ । ସେ ଭଗବନାଙ୍କୁ ବିଶ୍ୱାସ କରିଆସିଛି ଓ ନିଜର ପିତାଙ୍କ ମୃତ୍ୟୁରେ ପରିବାରର ଶୋକ ସନ୍ତାପକୁ ଭିନ୍ନ ଦୃଷ୍ଟିରେ ଦେଖିଛି । ଆଇଭାନ୍ ଓ ଆଲ୍ୟୋଶାଙ୍କ ଭିତରେ ବାର୍ତ୍ତାଳାପ ହୋଇଛି ଭଗବାନଙ୍କ ଅସ୍ତିତ୍ୱକୁ ନେଇ ବିଷୟ । ସେ ସବୁର ବିଶଦ ଆଲୋଚନା ବିଗତ ଶହେ ବର୍ଷ ଧରି ଚାଲିଛି ଓ ଆସନ୍ତା କେତେ ଯୁଗଧରି ଚାଲିବ । ('ଦି ବ୍ରଦର୍ସ କାରାମା ଜୋଭ' ବହିଟିର ଓଡ଼ିଆ ଅନୁବାଦ ହୋଇଛି କି ନାହିଁ ମୁଁ ଜାଣି ନାହିଁ । ଯଦି କେହି ଜଣେ ଅନୁବାଦକ ସାମ୍ପ୍ରତିକ ସାମାଜିକ ବ୍ୟବସ୍ଥାକୁ ଆଖିରେ ରଖି ଏହାକୁ ଓଡ଼ିଆ ପାଠକମାନଙ୍କ ପାଇଁ ଅନୁବାଦ କରିଦିଅନ୍ତେ, ଏହା ଏକ ଅସାମାନ୍ୟ ସାହିତ୍ୟକୃତି ବୋଲି ମୁଁ ବିଚାର କରିବି ।) ଆଇଭାନ୍ କହିଛି ଯେ ସେ ଭଗବାନ ଅଛନ୍ତି କି ନାହିଁ ତାଙ୍କର ତଥା କଥିତ ସୃଷ୍ଟ ମଣିଷମାନଙ୍କୁ ଓ ସେମାନଙ୍କ ପାପପୁଣ୍ୟର ବିଚାରକୁ ନେଇ ଜାଣିପାରୁଛି । ଅନ୍ୟପକ୍ଷରେ ମଣିଷ ଭଗବାନଙ୍କୁ ଉଦ୍‌ଭାବନ କରିଛି ଓ ଭଗବାନ ବୋଲି ଏକ ପରିକଳ୍ପନା ଯେ ଆବଶ୍ୟକ ତାହା ମଧ ବିଚାରକୁ ନେଇଛି । ଯଦି ଭଗବାନ ଅଛନ୍ତି ଏବଂ ଜଗତକୁ ସୃଷ୍ଟି କରିଛନ୍ତି ତାହା ଇଉକ୍ଲିଡ଼ଙ୍କ ଜ୍ୟାମିତି ଓ ମଣିଷ ମନରେ ଥିବା ତିନୋଟି ପରିସରର

ଉପାଦାନକୁ ନେଇ ଗଢ଼ିଛନ୍ତି । ଭଗବାନ, ସୃଷ୍ଟି ଓ ମଣିଷ ଭିତରେ ସମ୍ପର୍କ ଏଇଭଳି । ସେ ଏକ କାହାଣୀ କହିଛି । ଋଷିଆର ଏକ ପ୍ରଦେଶରେ ଜଣେ ଧନୀ ଜେନେରାଲ୍ ତାଙ୍କର ଜମିଦାରୀ, ଶହ ଶହ ଚାକର ଓ ଶହଶହ କୁକୁରମାନଙ୍କୁ ନେଇ ଏକ ବିଳାସୀ ଜୀବନ କାଟୁଥିଲେ । ଗୋଟାଏ ଚାକର ପିଲା ଦିନେ ଖେଳୁ ଖେଳୁ ଜେନେରାଲ୍‌ଙ୍କ ପ୍ରିୟତମ କୁକୁରକୁ ଟେକାଟିଏ ପକାଇ ଛୋଟା କରିଦେଲା । ଜେନେରାଲ୍ ଯେତେବେଳେ ଜାଣିଲେ ଯେ ପିଲାଟି ତାଙ୍କର କୁକୁରକୁ ଆଘାତ କରିଛି, ତା'ର ମାଆଠାରୁ ତାକୁ ଛଡାଇ ଆଣି ତାକୁ ଏକ ନିବୁଜ କୋଠରୀରେ ରାତି ସାରା ବନ୍ଦ କରି ରଖିଲେ । ତା'ପରେ ସକାଳୁ ଜେନେରାଲ୍ ଉଠିପଡି ତାଙ୍କର ଶହଶହ ଶିକାରୀ କୁକୁର, ଅଶ୍ୱାରୋହୀ ଶିକାରୀମାନଙ୍କ ସହ ପ୍ରସ୍ତୁତ ହେଲେ ଯେମିତି ସେ ଏକ ଶିକାର ପାଇଁ ବାହାରିଛନ୍ତି । ପିଲାଟିକୁ ନିବୁଜ କୋଠରୀରୁ ଅଣାଗଲା ଓ ଲଙ୍ଗଳା କରି ଶୀତ ସକାଳେ ଅଗଣାରେ ଛିଡା କରାଗଲା । ପିଲାଟି ଶୀତରେ କମ୍ପୁଥାଏ । ଜେନେରାଲ୍ ପିଲାଟିର ମାଆ ସାମ୍ନାରେ ପିଲାଟିକୁ ଦୌଡିବାକୁ କହିଲେ ଓ ସଙ୍ଗେସଙ୍ଗେ ଶହ ଶହ ଶିକାରୀ କୁକୁରମାନଙ୍କୁ ପିଲାଟିକୁ ପିଛା କରିବାକୁ ଆଦେଶ ଦେଲେ । ମୁହୂର୍ତ୍ତକ ଭିତରେ କୁକୁରମାନେ ଝାମ୍ପି ପଡିଲେ ପିଲାଟି ଉପରେ ଓ ତାକୁ ଚିକିଚିକି କରିଦେଲେ ତା'ର ମାଆ ସାମ୍ନାରେ । ଆଇଭାନ୍ ପଚାରିଛି ଯେ ପିଲାଟି କ'ଣ ଦୋଷ କରିଥିଲା ଯେ ତା'କୁ ଏଇ ଦଣ୍ଡ ଦିଆଗଲା । ଏ ଘଟଣା ପାଇଁ ଦୋଷୀ କିଏ ? ଜେନେରାଲ ? ଭଗବାନ କେଉଁଠି ଥିଲେ ଏ ସମୟରେ ? ଏହାର ପ୍ରତିବାଦ ରେ ସେ କହିଛି....It is not God that I don't accept, Alyosa, only I most respectfully return Him the ticket । ଅର୍ଥାତ୍ ଏ ପୃଥିବୀକୁ ଆସିବାକୁ ତାକୁ ଯେଉଁ ଅନୁମତି ଦିଆଯାଇଛି, ତାହା ସେ ପ୍ରତ୍ୟାହାର କରିନେଇଛି ।

ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ଆଇଭାନ୍ କାରାମାଜୋଭ୍ ଯେଉଁ ପ୍ରଶ୍ନମାନ ଉଠାଇଛି, ତାହାର ସମ୍ୟକ ଆଲୋଚନା ହେବାର ଆବଶ୍ୟକତା ରହିଛି । ଅନେକ ଗୋଷ୍ଠୀ ଏହାକୁ ନେଇ ବିଭିନ୍ନ ଭାବେ ତର୍କ କରିଥାଆନ୍ତି । ଦଳେ ଭଗବାନ ଅଛନ୍ତି ବୋଲି ଉଚ୍ଚସ୍ୱରରେ ଘୋଷଣା କରୁଥିବାବେଳେ ଆଉ ଦଳେ ଭଗବାନ କେବେ ନାହାନ୍ତି ବୋଲି ଦୃଢ଼ତାର ସହ ଯୁକ୍ତି ବାଢ଼ନ୍ତି । ଆଉ ଦଳେ କୁହନ୍ତି ଯେ ଭଗବାନଙ୍କୁ ସିନା ଦେଖି ହେବ ନାହିଁ, କିନ୍ତୁ ତାଙ୍କର ଅଦୃଶ୍ୟ ହାତ ସବୁଠାରେ ଅନୁଭବ କରିହେବ । କେହି କେହି କୁହନ୍ତି ଯେ ଭଗବାନ ଥାଆନ୍ତୁ କି ନଥାନ୍ତୁ, ଏକ ମହାନ ଶକ୍ତି ନିଶ୍ଚିତ ବିରାଜମାନ କରୁଛି । ଦଳେ ଏପରି ମଣିଷ ଅଛନ୍ତି ଯେଉଁମାନେ ଭଗବାନ ଓ ତାଙ୍କ ସୃଷ୍ଟିକୁ ନକାରାତ୍ମକ ଦୃଷ୍ଟିରେ ଦେଖନ୍ତି । ଆଉ ଏକ ଗୋଷ୍ଠୀ ଅଛନ୍ତି ଯେଉଁମାନେ ବିଚାର କରନ୍ତି ଯେ ଭଗବାନ ଅଛନ୍ତି କି ନାହିଁ ଏ ପ୍ରଶ୍ନର ଉତ୍ତର ନାହିଁ । ପାଠକମାନେ କେଉଁ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହେବେ ନିଜେ ବିଚାର କରିବେ ।

ଆମେ ସମସ୍ତେ ଭଗବାନଙ୍କୁ ଖୋଜୁଛେ ଓ ଲୋଡୁଛେ । କିନ୍ତୁ କାହିଁକି ? ଆଧାତ୍ମିକତା ଓ ନୈତିକତା ଜାହିର୍ ପାଇଁ ? ପାପୀ ମଣିଷଙ୍କୁ ନିୟନ୍ତଣ କରିବା ପାଇଁ ? ସବୁ ନୈରାଶ୍ୟ ଭିତରେ ଆଶାର ଆଲୋକ ଦେଖିବା ପାଇଁ ? ଏଇଥିପାଇଁ ଦାର୍ଶନିକ ଭୋଲ୍‌ଟାୟାର (Voltaire) ଭଗବାନ ନଥିଲେ ଓ ତାଙ୍କୁ ଉଦ୍‌ଭାବନ କରାଯିବ ବୋଲି ଘୋଷଣା କରିଥିଲେ ।

ଦସ୍ତୋଭସ୍କି ଆଇଭାନ ଜରିଆରେ କହିବାକୁ ଚାହିଁଛନ୍ତି ଯେ ଭଗବାନ ସତରେ ଅଛନ୍ତି କି ନାହିଁ ଜାଣିବା କଷ୍ଟକର ବ୍ୟାପାର । ଏଇଥିପାଇଁ ତାଙ୍କର ଅସ୍ତିତ୍ୱକୁ ବିଶ୍ୱାସ କରିବା ଶ୍ରେୟସ୍କର କାରଣ ଭଗବାନ ମଣିଷଙ୍କ ଦ୍ୱାରା ତିଆରି ହୋଇଛନ୍ତି କି ନାହିଁ ଜାଣିବା କାଠିକର ବାଟ । ଭଗବାନଙ୍କ ପ୍ରକୃତି ଓ ରୂପରେଖ କ'ଣ ? ମଣିଷ ଭଳି ନୁହେଁ ତ ? ଏଇଥିପାଇଁ ସେ କହିଛି....I accept God simply । ଏହାକୁ ନେଇ ଅନେକ କିଛି ପ୍ରଶ୍ନ ପଚାରିବାର ଅବସର ମିଳୁଛି । ଭଗବାନ ଅଛନ୍ତି ବୋଲି ସ୍ୱୀକାର କରିବାକୁ ହେଲେ ତାଙ୍କର ସୃଷ୍ଟିକୁ ସ୍ୱୀକାର କରିବାକୁ ପଡିବ । ଏହା ହେଲେ ଭଗବାନଙ୍କର ସୃଷ୍ଟିର ଉଦ୍ଦେଶ୍ୟକୁ ମଧ ସ୍ୱୀକାର କରିବାକୁ ପଡିବ । ଆଉ ମଧ ସ୍ୱୀକାର କରିବାକୁ ହେବ ସୃଷ୍ଟିର ମହନୀୟତା ଓ ସଂଯୋଜନାକୁ, ଉଦ୍ଦେଶ୍ୟ ଓ ଅର୍ଥପୂର୍ଣ୍ଣ ସାର୍ଥକତାକୁ । କିନ୍ତୁ ଆଇଭାନ୍ କହିଛି -

"It is not that I don't accept God, it is the world erected by Him I don't and cann't accept."

ପ୍ରେମ ଓ ଭଲ ପାଇବା ଭିତରେ ଭଗବାନଙ୍କୁ ଅନୁଭବ କରି ହେବ କି ? ଆଲ୍ୟୋଶା କାରାମାଜୋଭ କହିଛି ମଣିଷକୁ ଭଲ ପାଇଲେ ଭଗବାନଙ୍କୁ ଅନୁଭବ କରିହେବ ଓ ଦିବ୍ୟଭାବନାରେ ଉଦ୍‌ବୁଦ୍ଧ ହୋଇପାରିବ । ମଣିଷର ଜୀବନ ଯନ୍ତଣାକୁ ବୁଝିହେବ । ସଂପ୍ରୀତି ଓ ସଦିଚ୍ଛାର ଭାବନା ସୃଷ୍ଟି ହୋଇପାରିବ । ଭଗବାନ ଅଛନ୍ତି ବୋଲି ସ୍ୱୀକାର କରିଲେ ତାଙ୍କର ଅସ୍ତିତ୍ୱ, ସୃଷ୍ଟି, ମହାଜ୍ଞାନ, ସୃଷ୍ଟିର ଅର୍ଥ ଓ ଉଦ୍ଦେଶ୍ୟ ଆଦି ମଧ ସହଜରେ ଜାଣିହେବ ।

ଆଇଭାନ୍ କାରାମାଜୋଭ ଓ ଆଲ୍ୟୋଶା କାରାମାଜୋଭ ଆମ ଭିତରେ ଓ ଆମ ହୃଦୟର ଗଭୀରତମ ପ୍ରଦେଶରେ ସବୁବେଳେ ଜୀବିତ ଅଛନ୍ତି ଓ ଆମକୁ ମହାଜାଗତିକ ଶକ୍ତି ସମ୍ପର୍କରେ ଚିରନ୍ତନ ସ୍ୱଷ୍ଟତା ଦେବାକୁ ପ୍ରୟାସ କରୁଛନ୍ତି । ମୋତେ ଯଦି କେହି ପ୍ରଶ୍ନ କରେ ଯେ ଆଇଭାନ୍ ଓ ଆଲ୍ୟୋଶା ମୋତେ କିଏ ବେଶି ପ୍ରଭାବିତ କରିଛି, ଏ ପ୍ରଶ୍ନର ଉତ୍ତର ଦେବାକୁ ମୁଁ କେବେହେଲେ ସାହସ କରିବି ନାହିଁ ।

□ □ □

୯

# ଭଗବାନ ସତରେ ଅଛନ୍ତି କି ? - ଘ

୧୯୬୩ ମସିହାର କଥା । ସାରାଦେଶରେ ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମ ଶତବାର୍ଷିକୀ ପାଳନ କରାଯାଉଥାଏ ମହା ସମାରୋହରେ । ମୁଁ ଯୁବରାଜ ହାଇସ୍କୁଲରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଥାଏ ସେ ବର୍ଷ । ସ୍କୁଲରେ ବକ୍ତୃତା ପ୍ରତିଯୋଗିତା ଆୟୋଜିତ ହୋଇଥାଏ । ସ୍କୁଲରୁ ବଛାବଛା ପିଲାଙ୍କୁ ଜିଲ୍ଲାସ୍ତରର ବକୃତା ପ୍ରତିଯୋଗିତାରେ ଭାଗ ନେବାକୁ ହେବ । ସେଠାରେ ସଫଳତା ମିଳିଲେ ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ ଭାଗ ନେବାକୁ ପଡିବ । ପୁଣି ସେଠାରେ ସଫଳତା ମିଳିଲେ ଜାତୀୟସ୍ତରରେ ପୁରସ୍କାର ମିଳିବ । ଆମେ ସବୁ ସ୍ୱାମୀ ବିବେକାନନ୍ଦଙ୍କ ବିଷୟରେ ପଦେ ଦୁଇ ପଦ ଆଗରୁ ଜାଣିଥିଲୁ । ତାଙ୍କର ଆମେରିକାରେ ସମସ୍ତଙ୍କୁ ଭଉଣୀ ଓ ଭାଇ ସମ୍ବୋଧନ ସହ ଓଜସ୍ୱିନୀ ଭାଷଣ କିପରି ଚମକ ସୃଷ୍ଟି କରିଥିଲା ତାହା ବିଷୟରେ ଆମକୁ ପଢ଼ିବାକୁ ସୁଯୋଗ ମିଳିଲା । ସବୁଆଡେ ବିବେକାନନ୍ଦଙ୍କ ଫଟୋ ବନ୍ଧେଇ ହୋଇ ବିକ୍ରୀ ହେଉଥାଏ ସେ ବର୍ଷ । ଜୁନିୟର ସ୍ତରରେ ମୁଁ ବକୃତା ପ୍ରତିଯୋଗିତାରେ ସଫଳତା ଆଣି ସ୍କୁଲର ଗୌରବ ରକ୍ଷା କରିବି ବୋଲି ମୋର ପ୍ରିୟ ଶିକ୍ଷକମାନେ ଖୁବ୍ ଉତ୍ସାହିତ ହୋଇଥିଲେ । ଆମ ସ୍କୁଲର ରେଫରେନ୍ସ ଲାଇବ୍ରେରୀରୁ କିଛି କିଛି ଓଡ଼ିଆ ବହି ବିବେକାନନ୍ଦଙ୍କ ବିଷୟରେ ଥାଏ । ସେ ସବୁ ଆଣି ମୋତେ ଦେଲେ ଓ ମୋର ବକୃତା ପ୍ରତିଯୋଗିତାର ସଫଳତା କାମନା କରୁଥିଲେ । ସ୍କୁଲରୁ ମୁଁ ବଛା ହୋଇ ଜିଲ୍ଲା ସ୍ତରକୁ ଯାଇଥିଲି । କିନ୍ତୁ ଢ଼େଙ୍କାନାଳ ଯାଇ ସେଠାରେ ଜିଲ୍ଲା ସ୍ତରୀୟ ପ୍ରତିଯୋଗିତାରେ ଭାଗନେବା ଖୁବ୍ ଉତ୍ସାହଜନକ ଜଣା ପଡୁନଥିଲା । କିନ୍ତୁ ପ୍ରସ୍ତୁତି ପାଇଁ ସେତେବେଳେ ସ୍ୱାମୀ ବିବେକାନନ୍ଦଙ୍କ ଉପରେ ଲେଖା ଯାଇଥିବା ଓଡ଼ିଆରେ ଅନେକ ବହି ମୁଁ ପଢ଼ି ଦେଇଥିଲି । ତାଙ୍କର ପିଲାଦିନ, ରାମକୃଷ୍ଣ ପରମହଂସଙ୍କ ସହ ସମ୍ପର୍କ, ଆମେରିକା ଯାତ୍ରା, ଭାରତରେ ଭ୍ରମଣ ଓ କନ୍ୟାକୁମାରୀରେ ତପସ୍ୟା, ରାମକୃଷ୍ଣ ମିଶନ ପ୍ରତିଷ୍ଠା ଆଦି ବିଭିନ୍ନ ପ୍ରକାରର କଥା ଓ କାହାଣୀ ଖୁବ୍ ଉଦ୍ଦୀପନାମୂଳକ ଥିଲା ସେ ବୟସରେ । ମୁଁ ନିଶ୍ଚିତ ପ୍ରଭାବିତ ହୋଇଥିଲି ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା । ସବୁଠାରୁ ଭଲ ଲାଗୁଥିଲା ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ ଭିତରେ ବାର୍ତ୍ତାଳାପ ଓ ପ୍ରଶ୍ନୋତ୍ତର । ବକୃତାରେ ଏଥିରୁ ବିଭିନ୍ନ ବକ୍ତବ୍ୟ ଉଦ୍ଧାର କରିବାକୁ

ମୋତେ ଅନେକ କିଛି ମନେ ରଖିବାକୁ ପଡିଥିଲା । ଅନେକ ବିଷୟ ଅବୋଧ ଥିଲା ମୋ ପାଇଁ ସେ ବୟସରେ । କିନ୍ତୁ ଗୋଟିଏ କଥା ଏବେ ସୁଦ୍ଧା ମୋର ମନେ ଅଛି-

ବିବେକାନନ୍ଦ ଶ୍ରୀ ରାମକୃଷ୍ଣଙ୍କୁ ପଚାରିଛନ୍ତି:

"ମହାଶୟ, ଆପଣ ଭଗବାନଙ୍କୁ ଦେଖିଛନ୍ତି ?"

ଶ୍ରୀ ରାମକୃଷ୍ଣ, ଉତ୍ତର ଦେଇଛନ୍ତି:

"ହଁ, ମୁଁ ଭଗବାନଙ୍କୁ ଦେଖିଛି, ଯେମିତି ତମକୁ ଦେଖୁଛି ଓ ଗଭୀର ଭାବେ ଦେଖୁଛି । ମୁଁ ଯେମିତି ତମକୁ ଦେଖୁଛି ଓ କଥାବାର୍ତ୍ତା କରୁଛି, ଭଗବାନଙ୍କୁ ଜଣେ ସେଇଭଳି ଦେଖିପାରିବ ଓ ଅନୁଭବ କରିପାରିବ ।"

ସେତେବେଳେ ସ୍ୱାମୀ ବିବେକାନନ୍ଦଙ୍କୁ ଜାଣିବା ପାଇଁ ରାମକୃଷ୍ଣ ପରମହଂସଙ୍କ ବିଷୟରେ ଜାଣିବାକୁ ପଡିଥିଲା । ତାଙ୍କର ରଚନାବଳୀର ପୃଷ୍ଠା ଓଲଟାଇବାକୁ ପଡିଥିଲା । ରାମକୃଷ୍ଣ ସ୍ପଷ୍ଟ ଭାବରେ ଭଗବାନଙ୍କୁ ଅନୁଭବ କରିଛନ୍ତି । ସେଥିପାଇଁ ସାଧନା କରିବାକୁ ପଡିଛି ତାଙ୍କୁ । ସେ କାଳୀଙ୍କର ପୂଜକ ଥିଲେ । ସେ କାଳୀଙ୍କ ଆଗରେ ଧ୍ୟାନରତ ଥିବା ସମୟରେ ତଲ୍ଲୀନ ହୋଇଯାଇଥିଲେ । ଦିନେ କୁଆଡେ କାଳୀଙ୍କ ହାତରେ ଥିବା ତରବାରୀ ଆଣି ସେ ନିଜକୁ ବଳି ଦେବାକୁ ଉଦ୍ୟମ କରିଥିଲେ । ଏଇ ସମୟରେ ମାଆ କାଳୀ ସଶରୀରେ ଉପସ୍ଥିତ ହୋଇ ତାଙ୍କୁ ଆଶୀର୍ବାଦ କରିଥିଲେ । ରାମକୃଷ୍ଣ ପାଇଥିଲେ ଦିବ୍ୟଜ୍ଞାନ । ସେ ସବୁଠାରେ ଭଗବନାଙ୍କୁ ଦେଖି ପାରୁଥିଲେ । ପ୍ରଥମେ ସେ କହୁଥିଲେ ଯେ ହିନ୍ଦୁ, ଇସ୍‌ଲାମ୍ ଓ ଖ୍ରୀଷ୍ଟଧର୍ମ ଆଦି ସବୁ ଧର୍ମଙ୍କର ଗୋଟିଏ ଭଗବାନ । ଯଦିଓ ଧର୍ମର ପଥ ଅଲଗା ଅଲଗା । ଯେତେବେଳେ ମୁଁ ଦେଖେ ଧର୍ମ ନାମରେ ହିନ୍ଦୁ, ଇସ୍‌ଲାମ୍ ଓ ବ୍ରାହ୍ମୋ, ବୈଷ୍ଣବ ଆପଣା ଆପଣା ଭିତରେ କଳହ କରୁଛନ୍ତି, ସେତେବେଳେ ମୁଁ କହିବାକୁ ଋହେଁ ଯେ ଯିଏ କୃଷ୍ଣ ସିଏ ବି ଶିବ, ସିଏ ବି ଯୀଶୁଖ୍ରୀଷ୍ଟ ଓ ଆଲ୍ଲା । ସବୁ ରାମଙ୍କ ଏକ ଅବତାର ।

ପିଲାଦିନରୁ ମୁଁ ଶ୍ରୀ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ଆକୃଷ୍ଟ ହୋଇଛି । ସେମାନଙ୍କର ବହି ସବୁ ପଢ଼ିବାକୁ ଚେଷ୍ଟା କରିଛି । ସେମାନଙ୍କ ଉପରେ 'ଖ୍ରୀଷ୍ଟଫର ଆଇସରଉଡ୍' (Christopher Isherwood), 'ଆଲଡସ୍ ହକ୍‌ସଲି' (Aldus Huxley)ଙ୍କ ଭଳି ଲେଖକ ଓ ଦାର୍ଶନିକ ଯାହା ଲେଖିଛନ୍ତି ମୁଁ ସମୟକ୍ରମେ ପଢ଼ିବାକୁ ଚେଷ୍ଟା କରିଛି । ଆଇସରଉଡ୍‌ଙ୍କ 'ରାମକୃଷ୍ଣ ଆଣ୍ଡ ହିଜ୍ ଡିସାଇପଲ୍' (Ramakrishna and His Disciple) ଏକ କ୍ଲାସିକ୍ ବୋଲି ସ୍ୱୀକାର କରାଯାଇଛି । ରାମକୃଷ୍ଣଙ୍କ ଜୀବନ ଉପରେ 'ମାକ୍ସ ମୁଲର' (Max Mueller) ଏବଂ 'ରୋମାଁ ରୋଲାଁ' (Romain Rolland) ମଧ୍ୟ ଲେଖିଛନ୍ତି ଯାହା ଖୁବ୍ ପଠନ ଯୋଗ୍ୟ । ଆଜି ସାରା ବିଶ୍ୱ ଉଦ୍‌ବୁଦ୍ଧ ଏହି ସବୁ ବହି ପଢ଼ି ।

ସ୍ୱାମୀ ବିବେକାନନ୍ଦ କନ୍ୟାକୁମାରୀର ଯେଉଁ ପଥର ଚଟାଣ ଉପରେ ତପସ୍ୟା କରି ନୂତନ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥିଲେ, ସେଠାକୁ ମୁଁ କେତେଥର ଯାଇଛି ଓ ଜଣେ ଦିବ୍ୟପୁରୁଷଙ୍କୁ ଅନୁଭବ କରିବାକୁ ଚେଷ୍ଟା କରିଛି । କନ୍ୟାକୁମାରୀ ସ୍ଥିତ ବିବେକାନନ୍ଦ କେନ୍ଦ୍ରରେ ଯାଇ କେତେଦିନ ରହିଛି ଓ ସେମାନଙ୍କର କାର୍ଯ୍ୟକ୍ରମ ସହ ସଂଶ୍ଲିଷ୍ଟ ହୋଇଛି । ରାମକୃଷ୍ଣ ମିଶନର କର୍ମକର୍ତ୍ତାଙ୍କ ସହ ବନ୍ଧୁତା ସ୍ଥାପନ କରିଛି ଓ ସେମାନଙ୍କ ଦ୍ୱାରା ଯେତେ ପ୍ରକାରର ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମ ଚାଲିଛି, ଆଦିବାସୀ ଅଞ୍ଚଳରେ ତାହାର କିପରି ରୂପାୟନ ହୋଇପାରିବ ମୁଁ ଏବେ ମଧ ଚେଷ୍ଟା କରୁଅଛି । ଭଗବାନ ମଣିଷଙ୍କ ଭିତରେ ଅଛନ୍ତି ଓ ଭଗବାନଙ୍କୁ ଭଲପାଇବାକୁ ଚାହିଁଲେ ମଣିଷକୁ ଭଲ ପାଇବାକୁ ହେବ । ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କର ଏହା ହିଁ ମୂଳମନ୍ତ୍ର ଥିଲା । ଆଜି ମଧ ଏହା ଏକ ଚିରନ୍ତନ ସତ୍ୟ ହୋଇ ରହିଯାଇଛି । ଭଗବାନଙ୍କ ସତ୍ତା ଅନୁଭବ କରିବାକୁ ଜଣେ ମନ୍ଦିର ଯାଇ ପୂଜା ଆରାଧନା କରିପାରେ ଅଥବା ତୀର୍ଥ ଦର୍ଶନରେ ଯାଇପାରେ । ଭଗବାନଙ୍କୁ ପାଇବା ପାଇଁ ଅହର୍ନିଶ ତାଙ୍କର ନାମ ଉଚ୍ଚାରଣ କରିପାରେ । ଅଜାମିଳ ନାମରେ ମହାପାପୀ ଭଗବାନଙ୍କ ନାମ ଉଚ୍ଚାରଣ କରି ପାପମୁକ୍ତ ହୋଇପାରେ । ଏସବୁ କଥା ମୁଁ କେବେହେଲେ ଭୁଲିବି ନାହିଁ ।

ଗୋଟିଏ ସମୟରେ ବଞ୍ଚିବା ଓ ମରିବା ଭିତରେ ଯେଉଁ ସଂକ୍ଷିପ୍ତ ବ୍ୟବଧାନ ଅଛି ତାହା ଜାଣିବା ମୋ ପକ୍ଷେ ବିଶେଷ କଷ୍ଟକର ନଥିଲା । ଜଣେ ନିଜକୁ ଆପଣା ଛାଏଁ ଧ୍ୱଂସ କରିଦେବ ବା ନୂତନ ଭାବେ ଗଢ଼ି ତୋଳିବ, ଏ ପ୍ରଶ୍ନ ବାରମ୍ବାର ମୋ ମନରେ ଉଠୁଥିଲା । ଜୀବନ ଯନ୍ତ୍ରଣାରେ ପେଶୀ ହୋଇ ଯାଉଥିବା ମଣିଷଟି ଆତ୍ମହତ୍ୟା କରିବ କି ଦିବ୍ୟ ଚିନ୍ତା ଓ ଚେତନାରେ ନିଜକୁ ହଜାଇ ଦେଇ ଏକ ସାକାରାତ୍ମକ ଜୀବନ ବଞ୍ଚିବ ଏ ପ୍ରଶ୍ନ ସବୁ ଜୀବନ ଜିଜ୍ଞାସୁଙ୍କ ଭିତରେ ରହିଥାଏ । ଦସ୍ତୋଭସ୍କି ତାଙ୍କର ସବୁ ଉପନ୍ୟାସରେ ବିଭିନ୍ନ ଚରିତ୍ର ମାଧମରେ ଏହି ଦ୍ୱନ୍ଦକୁ ଆମ ମାନଙ୍କ ଆଗରେ ଉପସ୍ଥାପନା କରିଛନ୍ତି । 'କ୍ରାଇମ୍ ଆଣ୍ଡ ପନିସ୍‌ମେଣ୍ଟ' (Crime and Punishment ) ଉପନ୍ୟାସର 'ରାସ୍କୋଲିନିକୋଭ' (RaskolniKov) ପାପ ଓ ପ୍ରାୟଶ୍ଚିତକୁ ଅଙ୍ଗେଲିଭାଇଛି । ଶେଷରେ "ବାଇବେଲ"ର ମହତ୍‌ବାଣୀ ଭିତରେ ରାସ୍କୋଲିନିକୋଭ ସ୍ୱାନ୍ତନା ପାଇଛି । 'ଦି ବ୍ରଦର୍ସ କାରାମାଜୋଭ୍' (The Brothers Karamazov)ରେ 'ଆଲ୍ୟୋଶା କାରାମାଜୋଭ୍' (Alyosha Karamazov) ଭଗବାନଙ୍କ ଉପରେ ଅଖଣ୍ଡ ଆସ୍ଥା ଓ ବିଶ୍ୱାସ ରଖିଛି ଓ ସବୁ ବିଦଗ୍ଧ ଓ ବ୍ୟଥାତୁର ପ୍ରାଣୀମାନଙ୍କ ପାଇଁ ଆଣି ଦେଇଛି ଶାନ୍ତି ଓ ଦିବ୍ୟ ଚେତନା । ଯଦିଓ ସେ ଏ ବହିରେ ଗୋଟାଏ ପଟେ କହିଛନ୍ତି 'If God does not exist then all things are permitted, ଅନ୍ୟପଟେ 'ଦି ଡେଭିଲ୍'(The Devil) ଉପନ୍ୟାସରେ ସ୍ପଷ୍ଟ କରିଛନ୍ତି ଯେ ଜୀବନକୁ ଠିକ୍ ବଞ୍ଚିବାକୁ ହେଲେ ଭଗବାନ ଅଛନ୍ତି ବୋଲି ବିଶ୍ୱାସ କରିବାକୁ ହେବ । ଏ ଉପନ୍ୟାସ ଚରିତ୍ର କିରିଲୋଭ (Kirilov) ନିଜେ ଆତ୍ମହତ୍ୟା

କରିବା ପୂର୍ବରୁ ଘୋଷଣା କରିଛି ଯେ ସେ ହିଁ ଭଗବାନ । ଯେହେତୁ ଏ ପୃଥିବୀରେ ଭଗବାନ ବୋଲି କିଛି ନାହିଁ ସେ ନିର୍ଦ୍ୱନ୍ଦରେ ଭଗବାନଙ୍କ ସ୍ଥାନ ଗ୍ରହଣ କରିପାରିବ । ଯେହେତୁ କିରିଲୋଭ୍ ନିଜେ ଭଗବାନ, ସେ ନିଜକୁ ମାରି ପାରିବ ଓ ମୁକ୍ତିର ସ୍ୱାଦ ଚାଖି ପାରିବ । ଏଇ ଭଳି ଯୁକ୍ତିବାଢ଼ି କିରିଲୋଭ୍ ଆତ୍ମହତ୍ୟା କରିଛି ଓ ଉପନ୍ୟାସଟିକୁ ଗୁଢ଼ିମନ୍ତ କରି ପାରିଛି । ଦସ୍ତୋଭସ୍କି ଏଇଭଳି ତାଙ୍କର ଲେଖା ମାଧ୍ୟରେ ଭଗବାନଙ୍କ ଉପରେ ବିଶ୍ୱାସର ପ୍ରଶ୍ନ ଉଠାଇଛନ୍ତି ଓ ଭଗବାନ ନଥିଲେ ଏ ପୃଥିବୀରେ ବଞ୍ଚିବା ଜଟିଳ ଓ ଦୁର୍ବିସହ । ଏହି ବୌଦ୍ଧିକତାର ପ୍ରାଚୁର୍ଯ୍ୟ ପ୍ରଭାବିତ କରିଛି ବିଶିଷ୍ଟ ଦାର୍ଶନିକ ନିତ୍‌ସେ (Nietzsche) ଏବଂ ଫରାସୀ ଔପନ୍ୟାସିକ କାମ୍ୟୁଙ୍କୁ । ନୋବେଲ୍ ପୁରସ୍କାରପ୍ରାପ୍ତ ଲେଖକ କୋଏଜୀ (J.M. Coatzee) ଏବଂ ଓରହାନ୍ ପାମୁକ୍ (Orhan Pamuk) ଦସ୍ତୋଭସ୍କିଙ୍କ ଦ୍ୱାରା ଗଭୀରଭାବେ ଅନୁପ୍ରାଣିତ ହୋଇଛନ୍ତି ବୋଲି ସ୍ୱୀକାର କରିଛନ୍ତି ।

ଭଗବାନ ଅଛନ୍ତି କି ନାହିଁ ଏକ ଅସ୍ତିତ୍ୱବାଦୀ ପ୍ରଶ୍ନ । ଏହି ପ୍ରଶ୍ନର ଉତ୍ତର ଖୋଜୁଥିବା ମଣିଷମାନେ ମଧ୍ୟ ଅସ୍ତିତ୍ୱବାଦୀ । ଏହି ତାଲିକାରେ କବି, ଲେଖକ, ଦାର୍ଶନିକ, ଚିତ୍ରକର ଓ ସଙ୍ଗୀତଜ୍ଞମାନେ ଅଛନ୍ତି । ନିତ୍‌ସେ (Nietzsche), କାମ୍ୟୁ (Albert Camus), କାର୍ଲ ୟାସ୍ପର୍ (Karl Yasper), ସୋରେନ କିର୍କେଗାର୍ଡ୍(Soren Kierkegaard) ଆସନ୍ତା ଯୁଗର ମଣିଷମାନଙ୍କ ପାଇଁ ଅନେକ କିଛି ଲେଖିଯାଇଛନ୍ତି । ଭଗବାନ ଅଛନ୍ତି ଓ ପୁଣି ଭଗବାନ ନାହାନ୍ତି । ଏ ପ୍ରଶ୍ନ ଏବେ ବାରମ୍ବାର ଉଠୁଛି ଓ ଭବିଷ୍ୟତରେ ଉଠିବ । କିନ୍ତୁ ଏ ପ୍ରଶ୍ନକୁ ଏଡାଇ ଦେବା ଯଥାର୍ଥ ନୁହେଁ । ବିଶ୍ୱାସ କରିଲେ ପଥର ଭିତରେ ବି ଦଅଁ ଅଛନ୍ତି । ଆମେ ଯେଉଁମାନେ ସମସ୍ତେ ମାନବବାଦୀ, ଆମେ ମଣିଷକୁ ଭଲ ପାଇବା ଓ ତାହାର ସମାଜକୁ ଭଲ ପାଇବା । ଭଗବାନ ଥାଆନ୍ତୁ କି ନଥାନ୍ତୁ, ଆମେ ମଣିଷକୁ ମଣିଷ ଭଳି ଭଲ ପାଇବା । ଆମେ ପଳାୟନପନ୍ଥୀ ହେବା ନାହିଁ । ଆମେ ଆତ୍ମହତ୍ୟା କଥା ମନଭିତରେ ପ୍ରବେଶ କରିବାକୁ ଦେବା ନାହିଁ । ଆମେ ଆବଶ୍ୟକ ହେଲେ ବିଦ୍ରୋହ କରିବା । ବିପ୍ଳବୀ ହୋଇ ଜୀବନ ଅତିବାହିତ କରିବା । କିନ୍ତୁ ମଣିଷ ଉପରୁ ବିଶ୍ୱାସ ତୁଟାଇବା ନାହିଁ । ବଞ୍ଚିବାର ଅନେକ ଅର୍ଥ ଅଛି । ମଣିଷ ଜୀବନର ଅନେକ ମୂଲ୍ୟ ଅଛି ।

□□□

# ୧୦

# ମେଘାଚ୍ଛନ୍ନ ଆକାଶ ଓ ବର୍ଷା ପ୍ଲାବିତ ପୃଥିବୀ

ପିଲାଦିନେ ବର୍ଷାଦିନକୁ ଆମେ ସବୁ ଅପେକ୍ଷା କରୁଥିଲୁ । ଗ୍ରୀଷ୍ମଋତୁର ପ୍ରବଳ ଗରମ ପରେ ପ୍ରଥମ ବର୍ଷା କେତେ ଯେ ସ୍ୱାଗତଯୋଗ୍ୟ ତାହା ଯୁଗଯୁଗ ଧରି କବି, ଲେଖକ, ଚିତ୍ରକର ଓ ସଂଗୀତ ବିଶାରଦମାନେ ଭାଷାରେ ଓ ଢ଼ଙ୍ଗରେ ପ୍ରକାଶ କରି ଆସିଛନ୍ତି । ଆକାଶରେ ଭାସମାନ ମେଘ ସୃଷ୍ଟି କରିଛି ଅନେକ ଭାବାନ୍ତର । ବଜ୍ର ନିନାଦ ସୃଷ୍ଟି କରିଛି ଭୟ । ବିଜୁଳି ଅନ୍ଧକାର ଭିତରେ ସୃଷ୍ଟି କରିଛି ଆଲୋକର ଝଲକ । ବର୍ଷା ବିଭିନ୍ନ ଶବ୍ଦର ତରଙ୍ଗକୁ ନେଇ ସୃଷ୍ଟି କରିଛି ମେଘ ମହ୍ଲାର । ଆମେ କିନ୍ତୁ ବର୍ଷାକୁ ଭଲପାଇ ବସୁଥିଲୁ ଭିନ୍ନ ଢ଼ଙ୍ଗରେ । ବର୍ଷାରେ ଭିଜିବା' ଆମର ଏକ ଅଭ୍ୟାସ ହୋଇ ଯାଇଥିଲା ପିଲା ଦିନରୁ । ସ୍କୁଲ ଅନେକ ବାଟ । ଛତାଟିଏ ସାଥୀରେ ବୋହିବା ଗୋଟାଏ ବୋଝ ଥିଲା ଆମ ପାଇଁ । ସେଇଥିପାଇଁ ସାଙ୍ଗ ମେଳରେ ବର୍ଷାରେ ଭିଜି ଭିଜି ସ୍କୁଲରେ ପହଞ୍ଚିବା ଓ ସ୍କୁଲ ଶେଷ ହେଲେ ଓଦା ହୋଇ ଘରକୁ ଫେରିବା ଏକ ସଉକ ଥିଲା ଆମ ସମସ୍ତଙ୍କର । ଡର ନଥିଲା ଯେ ଆମକୁ ସର୍ଦ୍ଦି ଜ୍ୱର ହେବ ବା ଓଦା ପୋଷାକ ନବଦଳାଇଲେ ଦେହ କାଲ ମାରିନେବ । ସ୍କୁଲରେ ଶିକ୍ଷକ ବା ଘରେ ଗୁରୁଜନମାନେ ତାଗିଦ୍ କରୁଥିଲେ । ଆମେ ସେସବୁ ହସରେ ଉଡାଇ ଦେଇଥିଲୁ ଅଥବା ଅମାନିଆ ହୋଇ ବେଶୀ ଭିଜୁଥିଲୁ । ଆମ ସହରର ପଶ୍ଚିମ ପଟରେ କଳାହାଣ୍ଡିଆ ମେଘ ଯେତେବେଳେ ଏକାଠି ହୁଏ ସେତେବେଳେ ବର୍ଷା ନିଶ୍ଚିତ ହେବ ବୋଲି ଜାଣିହୁଏ । ଆମ ସ୍କୁଲ ପଛରେ ଥିବା ପାହାଡର ଶୀର୍ଷ ଦେଶରେ ମେଘ ଜମିଯାଏ, ଘଣ୍ଟାଏ ଭିତରେ ବର୍ଷା ହେବ ବୋଲି ମୁଁ ଘୋଷଣା କରିଦିଏ । ସେ ସମୟରେ ମୁଁ ଓ ମୋର ବନ୍ଧୁମାନେ କେମିତି କେମିତି ବାହାରକୁ ଚାଲିଆସୁ ଓ ବର୍ଷାରେ ଭିଜିବାକୁ ଯୋଜନା କରୁ । ତାରୁଣ୍ୟରେ ପ୍ରବେଶ କରିଲା ପରେ ବର୍ଷା ପ୍ରତି ନିବିଡତା ଯେମିତି ଅନେକ ଗୁଣ ବଢ଼ିଯାଇଥିଲା ଆମ ସମସ୍ତଙ୍କର । ଏଇଥିପାଇଁ କଲେଜ ଦିନରେ ଆମେ ବନ୍ଧୁମାନେ ବର୍ଷାରେ ଭିଜି ଭିଜି ଯାଉ ସିମେଣ୍ଟ ବେଞ୍ଚରେ ବସୁଥିଲୁ । ବିସ୍ତୀର୍ଣ୍ଣ ପଡିଆ ମଝିରେ ସିମେଣ୍ଟ ବେଞ୍ଚ ଗୁଡିକ ସବୁ ତିଆରି ହୋଇଥାଏ । ପାଖରେ କୃଷ୍ଣଚୂଡା ଗଛର ସବୁଜିମା । ସାମ୍ନାରେ ଛାତ୍ରୀ ନିବାସ । ମନେ ହେଉଥିଲା ଆମେ ସବୁ ବର୍ଷାରେ ଭିଜୁଥିବା କଥା ଯେମିତି କେହି ଲୁଚିଛପି ଦେଖୁଛି ଓ ଆମର ସବୁ ପାଗଳାମୀକୁ ପସନ୍ଦ କରୁଛି । ଆମେ ଏଇଭଳି ସବୁ ରୋମାଣ୍ଟିକ

କଥାବାର୍ତ୍ତା କରୁଥିଲୁ । ସବୁକିଛି ରହସ୍ୟମୟ ଜଣାପଡୁଥିଲା ସେସମୟରେ । ସମ୍ଭବତଃ ସ୍ୱପ୍ନରାଜ୍ୟରେ ବିଚରଣ କରିବା ଏକ ବିଳାସ ହୋଇ ଯାଇଥାଏ । ଆମର ଆଡଭେଞ୍ଚର କରିବାର ସାହସ ଅଛି ବୋଲି ଏହା ଏକ ଉଦାହରଣ ହୋଇଯାଇଥାଏ । ତେଣୁ ବର୍ଷାକୁ ଆମେ ଅନ୍ତରଙ୍ଗତାର ସହ ଅନୁଭବ କରିବାକୁ ବିଭିନ୍ନ ପ୍ରକାର ବାହାନା ଖୋଜୁ । ବର୍ଷାପରେ କଫି ବା ଆମ୍ଲେଟ୍ ଖାଇବା ବା ଘୋଡିଘାଡି ହୋଇ ଶୋଇବା ବା ଉପନ୍ୟାସ ପଢ଼ିବା ଗୋଟାଏ ମାନସିକତା ହୋଇଯାଇଥାଏ ଆମ ଭିତରେ । ଝଡବର୍ଷା ଲାଗି ରହିଲେ ଏହା ଏକ ଉଦ୍ଦାମତାରେ ପରିଣତ ହୋଇଯାଏ ।

ବର୍ଷା ସମୟରେ ବିଭିନ୍ନ ଦୃଶ୍ୟରାଜି ମୁଁ ବିଭିନ୍ନ ପରିସର ଭିତରେ ଦେଖିବାକୁ ଚାହିଁଛି । ସମୁଦ୍ରତଟରେ ଛିଡା ହୋଇ ବର୍ଷାକୁ ଉପଭୋଗ କରିଛି । ସୁଉଚ୍ଚ ପର୍ବତ ଉପରେ ବର୍ଷା ଯେତେବେଳେ ଏକ କୁହେଳିକାମୟ ପରିବେଶ ସୃଷ୍ଟିକରେ, ସେ ଭିତରେ ହଜିଯିବାକୁ ମୁଁ ଅନେକ ବାର ଚାହିଁଛି । ବର୍ଷା ସମୟରେ ଅନେକ ଅଙ୍କାବଙ୍କା ପାଦଚଲା ରାସ୍ତାରେ ଚାଲିଛି । ଜମିରେ ହଳ କରୁଥିବା ଚଷୀ, ପୋଡୁ ଚଷ କରୁଥିବା ଆଦିବାସୀ ବା ବର୍ଷାର ଭିଜି ଭିଜି ନଦୀରେ ମାଛ ଧରୁଥିବା ନାଉରିଆ ସହ ମୁଁ ସମୟ କାଟିବାକୁ ଅନେକ ଭଲ ପାଇଛି । ସେମାନଙ୍କର ଅନ୍ତରର କଥା ଶୁଣିବାକୁ ଭଲ ପାଇଛି । ରାଜସ୍ଥାନର ଗୁଜ୍ଜର ପଶୁପାଳକମାନଙ୍କ ସହ ବର୍ଷାର ଆଗମନୀ ସଙ୍ଗୀତ ଗାଇଛି । ହିମାଳୟର ଉପତ୍ୟକାରେ ବର୍ଷା ପରର ଇନ୍ଦ୍ରଧନୁ ଦେଖି ବିମୋହିତ ହୋଇଛି । କୋଡାଇକେନାଲର ବର୍ଷାସ୍ନାତ ହ୍ରଦକୂଳରେ ଏକାକୀ ପଦଚାରଣ କରିଛି । ସ୍କଟଲ୍ୟାଣ୍ଡ ନିକଟବର୍ତ୍ତୀ ଉତ୍ତର ମହାସାଗର କୂଳରେ ହେମାଳ ପବନ ସହ ମୂଷଳ ବର୍ଷାରେ ଥରି ଥରି ନିଜକୁ ହଜାଇ ଦେଇଛି । ବଦ୍ରିନାଥରେ ତୀର୍ଥ ଯାତ୍ରୀ ହିସାବରେ ମଧ୍ୟ ଅଦିନିଆ ବର୍ଷାରେ ଏକ ଦିବ୍ୟ ଚେତନାର ସତ୍ତା ମଧ୍ୟ ଅନୁଭବ କରିଛି । ଆଫ୍ରିକାର ଘଞ୍ଚଅରଣ୍ୟ ଭିତରେ ପତ୍ରରେ ବର୍ଷା ଟପଟପ ପଡିବାର ଶବ୍ଦରେ ରୋମାଞ୍ଚିତ ହୋଇଛି । ଜଣେ ପରିବ୍ରାଜକ ହିସାବରେ ବର୍ଷାକୁ ବିଭିନ୍ନ ଢଙ୍ଗରେ ଅଙ୍ଗେନିଭେଇଛି । ପ୍ରତିବର୍ଷ ବର୍ଷାଦିନେ ମୁଁ ଜାଣଅଜାଣତରେ ପରିବ୍ରାଜକ ପାଲଟି ଯାଇଛି ।

ବିଶ୍ୱ ସାହିତ୍ୟରେ ମେଘ ଓ ବର୍ଷାକୁ ନେଇ ଅନେକ ସୁନ୍ଦର ଓ ଛବିଳ ବର୍ଣ୍ଣନା ଭରି ରହିଛି । କାଳିଦାସଙ୍କ ମେଘଦୂତ (ଆଷାଢ଼ସ୍ୟ ପ୍ରଥମ ଦିବସେ...) ହେଉ ଅଥବା ସେକ୍ସପିଅରଙ୍କ 'ଦି ଟ୍ୱେଲ୍‌ଫଥ୍ ନାଇଟ' (The Twelfth Night) ରେ ବର୍ଣ୍ଣିତ ପଦ୍ୟାବଳୀ ହେଉ (With hey, ho, the wind and the rain .... For the rain it raineth everyday) କି ପ୍ରସିଦ୍ଧ ଔପନ୍ୟାସିକ 'ହେମିଙ୍ଗୱେ' (Hemmingway)ଙ୍କ "The Cat in the Rain" ଅଥବା 'ସଲ୍ ବେଲୋ' (Saul Bellow)ଙ୍କ "Anderson the Rain King" ଆଦି ବହି ପଢ଼ିବାକୁ ଭଲ ଲାଗିଛି । ବଂଗଳା ସାହିତ୍ୟରେ 'ରାତ୍‌ଭର ବୃଷ୍ଟି' ବହିଟି ଅନେକ କିଛି ଝଡ ସୃଷ୍ଟି କରିଥିବା କଥା ମୁଁ ଜାଣିଛି । ସବୁ ଦେଶରେ ଓ ସବୁ

ଭାଷାରେ ମେଘ ଓ ବର୍ଷାକୁ ନେଇ ଚମତ୍କାର ସାହିତ୍ୟ ସୃଷ୍ଟି ହୋଇଛି । କିଛି ବର୍ଷତଳେ 'ଆଲେକ୍‌ଜାଣ୍ଡାର ଫ୍ରାଟରସ୍' (Alexander Fraters) ବୋଲି ଜଣେ ଲେଖକ Chasing the Monsoon ବୋଲି ଗୋଟିଏ ଚମତ୍କାର ବହି ଲେଖିଛନ୍ତି । ମୌସୁମୀ ବର୍ଷା ଜୁନ୍ ମାସରେ ଆରମ୍ଭ ହୁଏ କେରଳରୁ । ସେଠାରୁ ସେ ମୌସୁମୀ ବର୍ଷା ପଛେ ପଛେ ତାଙ୍କର ଯାତ୍ରା ଆରମ୍ଭ କରିଛନ୍ତି ଓ ଚେରାପୁଞ୍ଜି ଯେଉଁଠି ପୃଥିବୀର ସବୁଠାରୁ ବେଶୀ ବୃଷ୍ଟିପାତ ହୁଏ ସେଠାରେ ପହଞ୍ଚିବାକୁ ଚେଷ୍ଟା କରିଛନ୍ତି । ଏହା ଏକ ଅନୁପମ ଭ୍ରମଣ କାହାଣୀ । ବର୍ଷା ସହ ଭାରତର ଜୀବନଯାପନ ପ୍ରଣାଳୀ କିପରି ଓତପ୍ରୋତ ଭାବେ ଜଡିତ ତାହା ଲେଖକ ବର୍ଣ୍ଣନା କରିବାକୁ ଉହିଁଛନ୍ତି । ବିଖ୍ୟାତ ପରିବେଶବିତ୍ 'ଡେଭିଡ ଆଟେନ୍‌ବରୋ' (David Attenborough) ତାଙ୍କର ଏକ ଚଳଚ୍ଚିତ୍ରରେ ମୌସୁମୀ ବର୍ଷା କିପରି ଜୀବଜଗତରେ ନୂତନ ଉନ୍ମାଦନା ଆଣି ଦେଇଛନ୍ତି ବର୍ଣ୍ଣନା କରିଛନ୍ତି । ଆମ ଦେଶର ସଭ୍ୟତା ବର୍ଷା ଓ ମେଘକୁ ନେଇ ଗଢ଼ି ଉଠିଛି କହିଲେ ଅତିରଞ୍ଜିତ ହେବ ନାହିଁ । ବର୍ଷା ଆମସମସ୍ତଙ୍କୁ ପ୍ରଭାବିତ କରିଛି ।

ଗତ ୨୫ ବର୍ଷ ଧରି କାଶୀପୁରରେ ବର୍ଷାଦିନ ମୁଁ କାଟିଛି । ଗୋଟାଏ ଲେଖାଁ ମାସ ସେତେବେଳେ ଲଗାତର ଝିପିଝିପି ବର୍ଷା ଲାଗି ରହିଥାଏ । ଥଣ୍ଡା ପବନ ବି ବହେ । ଦେହରେ ହାଲୁକା ଗରମ ପୋଷାକ ପିନ୍ଧିବାର ଆବଶ୍ୟକତା ହୁଏ । ରାତ୍ରିରେ କମ୍ବଳ ଘୋଡାଇବାକୁ ପଡେ । ଗାଁରେ ଆଦିବାସୀମାନେ ଏ ସମୟରେ ଅନାହାର ଜନିତ ବହୁତ କଷ୍ଟ ପାଉଥିବା ବେଳେ ଆମକୁ ସୁରକ୍ଷିତ କରି ରଖିବା ଯନ୍ତ୍ରଣାଦାୟକ ମନେହୁଏ । ବିଭିନ୍ନ ସମସ୍ୟାକୁ ନେଇ ମନ ଘାଣ୍ଟିଚକଟି ହୁଏ । ଏ ସମୟରେ ଗାଁକୁ ଯାଇହୁଏ ନାହିଁ । ଏକେତ ନଇନାଳ ବଢ଼ିଥାଏ । ଅନ୍ୟ ପକ୍ଷରେ ଲୋକମାନେ ମଧ୍ୟ ବର୍ଷାବେଳେ ଘର ପିଣ୍ଡାରୁ ବାହାରକୁ ଆସନ୍ତି ନାହିଁ । ମୁହଁରେ ଏକ ତିକ୍ତ ଭାବନାର ଆଭାସ ମିଳିଥାଏ । ଘରେ ଘରେ ଜ୍ୱର, ଝାଡାବାନ୍ତି, ବଡ ଅସୁସ୍ଥ ବାତାବରଣ । ସେ ସମୟରେ ବିକାଶ ଓ ପରିବର୍ତ୍ତନର ଆଲୋଚନା ମୂଲ୍ୟହୀନ ଓ ଅର୍ଥହୀନ ନୁହେଁତ ଆଉ କ'ଣ ? ବର୍ଷାଦିନେ କିନ୍ତୁ ଆତ୍ମପରୀକ୍ଷା କରିବାକୁ ଯଥେଷ୍ଟ ସମୟ ମିଳେ । ସକାଳୁ ଯୋଗଧ୍ୟାନ କରିହୁଏ । ଦିନରେ କିଛି କିଛି ବହି ପଢ଼ିବାକୁ ସୁଯୋଗ ମିଳେ । ରାତ୍ରିରେ ଗଭୀରତା ବଢ଼ିଲେ କଳ୍ପନା ଜଗତ ବହୁତ ବିସ୍ତାରିତ ହୋଇଯାଏ । କେତେ କଥା ମନଭିତରେ ଅଙ୍କୁରିତ ହୁଏ । ଜୀବନ ଜିଜ୍ଞାସା ମଧ୍ୟ ବଢ଼ିଯାଏ । ମନସ୍ତାପ ଓ ନୈରାଶ୍ୟ କିଛି ସମୟ ପାଇଁ ହଟିଯାଏ । କାରଣ ଏକାନ୍ତରେ ନିଜକୁ ସେତେବେଳେ ଦେଖିହୁଏ ଓ ନିଜ ସହ ମଧ୍ୟ ସଂଳାପ ପାଖରେ କରିହୁଏ । ମୋର ଘର ଆଗରେ ପଣସ ଆଉ ଚମ୍ପାଗଛ । ସବୁଜିମା ଭରିଯାଇଛି ସବୁଆଡେ । ଆଲୁଅ ଓ ଅନ୍ଧାର ଭିତରେ ସେ ସବୁ ନୂଆ ନୂଆ ଲାଗେ । ସନ୍ଧ୍ୟା ନ ହେଉଣୁ ଗୋଟାଏ ପ୍ରକାର ପତଳା କୁହୁଡି ମାଡିଆସେ । ବର୍ଷାର ଉପସ୍ଥିତିକୁ ଅନୁଭବ କରିବାକୁ ବେଶୀ କଷ୍ଟ ହୁଏ ନାହିଁ ।

ନୋବେଲ୍ ପୁରସ୍କାରପ୍ରାପ୍ତ ଜର୍ମାନ ଔପନ୍ୟାସିକ ହରମାନ୍ ହେସ୍ (Hermann Hesse) ଗୋଟିଏ ଛୋଟ ପୁସ୍ତିକା ଲେଖିଛନ୍ତି ଯାହାର ନାମ ହେଉଛି "Wandering" । ଏଥିରେ Rain, Rainy Weather ଏବଂ Clouded sky ବୋଲି ତିନୋଟି ପ୍ରତିଫଳନ ଅନ୍ତର୍ଭୁକ୍ତ ହୋଇଛି । ଲେଖକ ବର୍ଷା ଏବଂ ମେଘର ଚମତ୍କାର କାବ୍ୟିକ ବର୍ଣ୍ଣନା କରିଛନ୍ତି । ଲେଖକ କହିଛନ୍ତି - "ସବୁକଥା ମଣିଷ ଭିତରେ ଅଛି । ସୁନା ଅଛି କାଦୁଅ ଅଛି, ପିଲାଦିନର ହସଖୁସି ଅଛି ଓ ବାର୍ଦ୍ଧକ୍ୟର ମୃତ୍ୟୁଭୟ ଅଛି । ଯେତେବେଳେ ବର୍ଷା ଓ ପବନ ବାଧକରେ ସେମାନଙ୍କ ଶବ୍ଦ ଓ ସଙ୍ଗୀତ ଶୁଣିବାକୁ ସେତେବେଳେ ଜୀବନ ଓ ମୃତ୍ୟୁର କଥା ମନକୁ ଆସେ । ଆହୁରି ଆସେ ଭଗବାନଙ୍କୁ ପ୍ରାର୍ଥନା କରିବାର ତୀବ୍ରଇଚ୍ଛା । ଏ ସମୟରେ ଦିନ ହେଉ କି ରାତି ହେଉ ଆମେ ଉତ୍କଂଠା, ବିମୁଖତା ଓ ସଂଦିଗ୍ଧତାର ଶିକାର ହେଉ । ତଥାପି ମୁଁ ବଞ୍ଚିବି ଓ ଜୀବନକୁ ଭଲ ପାଇବି ।" ବର୍ଷାଦିନେ ଅନେକ କିଛି ନଷ୍ଟାଲଜିଆ (Nostalgia) ମନକୁ ଆସେ ।

ଯେଉଁଠି ମୁଁ ଜନ୍ମ ହୋଇଛି ଓ ଯେଉଁଠି ମୋର ଜୀବନ ଶେଷ ହେବ, ସେଠାରେ ମୁଁ ବର୍ଷା ଦିନମାନଙ୍କୁ ବାରମ୍ବାର ଖୋଜୁଥିବି । ସବୁ ଦୁଃଖକଷ୍ଟ ଓ ଦ୍ୱନ୍ଦ୍ୱ ସତ୍ତ୍ୱେ ମୁଁ କେବେହେଲେ ନିଜକୁ ନୈରାଶ୍ୟର ଗଭୀର ଜଳରେ ବୁଡିଯିବାକୁ ଦେବିନାହିଁ । ବର୍ଷାଦିନେ ଯେଉଁଠି ବର୍ଷା ହେଉଛି, ବନ୍ୟାପ୍ଳାବିତ ହେଉଛି ଏବଂ ଯେଉଁଠାରେ ଅନାବୃଷ୍ଟି ହେଉଛି ଓ ମରୁଡି ପଡୁଛି ସେଠାରେ ମୁଁ ନିଶ୍ଚୟ ଉପସ୍ଥିତ ହେବାକୁ ଚାହିଁବି । ମୁଁ ବି ଚାହିଁବି ଚେରାପୁଞ୍ଜିରେ ବର୍ଷାକୁ ଅନୁଭବ କରିବା ପାଇଁ ଅଥବା ଥର୍ ମରୁଭୂମିର ଅସାଧାରଣ ବୃଷ୍ଟିପାତର ପ୍ରଭାବ ଦେଖିବା ପାଇଁ । ଆଜିକାଲି ଜଳବାୟୁ ପରିବର୍ତ୍ତନର ପ୍ରଭାବରେ ବୃଷ୍ଟିପାତରେ ଅନେକ ଅନିୟମିତତା ଦେଖା ଦେଇଛି ବୋଲି ସାରାପୃଥିବୀ ସ୍ୱୀକାର କରୁଛି । କିନ୍ତୁ ଏସବୁ ସତ୍ତ୍ୱେ ବର୍ଷା ଦିନର ଯେଉଁ ଆତ୍ମଚିନ୍ତନ ମୋ ଭିତରେ ସ୍ଥାନ ପାଇଛି ତାହା କେବେହେଲେ ସଙ୍କୁଚିତ ହେବ ନାହିଁ ।

❏❏❏

୧୧

# ପାପ ପୁଣ୍ୟ ପ୍ରାସଙ୍ଗିକତା - କ

ପାପ ଓ ପୁଣ୍ୟ, ପାପ ଓ ପ୍ରାୟଶ୍ଚିତ, ପୁଣ୍ୟ ଓ ମୋକ୍ଷପ୍ରାପ୍ତି ଆଦି ଶବ୍ଦ ଆମେ ସବୁ ପିଲାଦିନରୁ ଶୁଣି ଆସିଛୁ । ମିଛ କହିବା ମହାପାପ ବୋଲି ଧରି ନେଉଛୁ । ମନ୍ଦିର ଯାଇ ପୂଜା ଆରାଧନା କରିବା ପୁଣ୍ୟ ବୋଲି ମୁନିରଷିମାନେ ଆମକୁ ଉପଦେଶ ଦେଇଛନ୍ତି । ପୁଣ୍ୟ ହେଲେ ଏ ଜୀବନରେ ମୋକ୍ଷ ହେବ ବୋଲି ବିଶ୍ୱାସ ଜନ୍ମିଛି । ଆମ ଧର୍ମର ସାରାଂଶ ଏହା ନୁହେଁ କି ? କେବେ କେମିତି ଏସବୁ ବିଷୟରେ ମଧ୍ୟ ଅଧିକ ଜାଣିବାକୁ ଚାହିଁଛୁ । ଏସବୁ ବିଷୟ ଦର୍ଶନ, ଧର୍ମତତ୍ତ୍ୱ ଏବଂ ସାମାଜିକ ତଥା ନୈତିକ ମୂଲ୍ୟବୋଧ ସହିତ ସଂଶ୍ଳିଷ୍ଟ ଥିବାରୁ, ବୁଝିବା ସହଜ ନୁହେଁ । ତଥାପି ସଚେତନ ମଣିଷ ନିଜର ଜାଣ ଅଜାଣତରେ ପାପ କ'ଣ ଓ ପୁଣ୍ୟ କ'ଣ ଅନୁଭବ କରୁଥାଏ । ଏ ଦୁଇଟିର ସ୍ୱତନ୍ତ୍ର ପରିଧି ମଧ୍ୟ ଚିହ୍ନଟ କରିଥାଏ । ହିନ୍ଦୁ ଧର୍ମ ଭଳି ସବୁ ଧର୍ମରେ ପାପ ଓ ପୁଣ୍ୟର ସଜ୍ଞା ନିର୍ଦ୍ଦିଷ୍ଟ ଭାବେ ନିର୍ଦ୍ଧାରଣ କରାଯାଇଛି । ସବୁ ଧର୍ମଶାସ୍ତ୍ରରେ ଏହାର ବିଶଦ ବ୍ୟାଖ୍ୟା କରାଯାଇଛି । ପାପ ଓ ପୁଣ୍ୟକୁ ଚିହ୍ନଟ କରାଯାଇଛି ଅତି ସ୍ପଷ୍ଟ ଭାବେ । ହଜାର ହଜାର ବର୍ଷର ଧର୍ମ ଓ ଜ୍ଞାନର ଏହା ଅବଦାନ । ଭଗବାନଙ୍କୁ ଏବଂ ଭଗବତ୍ ନିୟମକୁ ଅବମାନନା କରିବା ପାପ ବୋଲି ଧରାଯାଇଛି । ଭଗବାନଙ୍କୁ ଏବଂ ଭଗବତ୍ ଶକ୍ତିକୁ ପୂଜା ଆରାଧନା ଓ ବିଶ୍ୱାସ କରିଆରେ ପୁଣ୍ୟ ଅର୍ଜନ କରାଯାଇ ପାରିବ ବୋଲି ବିଭିନ୍ନ ଉପାୟ ନିର୍ଦ୍ଧାରଣ ହୋଇଛି । ସାଧାରଣ ବିଶ୍ୱାସୀ ମଣିଷ ପାପ ଓ ପୁଣ୍ୟ ଭିତରେ ଏକ ଲକ୍ଷ୍ମଣ ରେଖା ଟାଣି ଦେଇଛି କେଉଁ ଯୁଗରୁ । କିନ୍ତୁ ପାପ ଓ ପୁଣ୍ୟ ଯେ ଆପେକ୍ଷିକ ଏହା ବୁଝିବା ସହଜ ହୋଇନାହିଁ । ମୁଁ ନିଜେ ଏହା ଏବେ ମଧ୍ୟ ବୁଝି ନାହିଁ । ସବୁ ଯେମିତି ଏକ ରହସ୍ୟମୟ କୁହେଳିକା ଭିତରେ ବୁଡି ଯାଇଛି । ପୁରାଣ ଭାଗବତରେ ଅଜାମିଳ ନାମରେ ମହାପାପୀର କାହାଣୀ ମୁଁ କେତେଥର ପଢ଼ିଛି । କିନ୍ତୁ ସେ କୁଆଡେ ନାରାୟଣ ନାମ ଥରେ ଜୀବନରେ ଉଚ୍ଚାରଣ କରିଥିଲା ବୋଲି ତାହାର ସବୁ ପାପ ଅବଶେଷରେ ମୋଚନ ହୋଇଯାଇଛି । ଏଇଭଳି ଅନେକ କାହାଣୀ ଜରିଆରେ ଧର୍ମଶାସ୍ତ୍ର ଦୃଢ଼ଭାବରେ କହିଛି ପାପ କରିବା ମଣିଷର ଏକ ସ୍ୱାଭାବିକ ଦୁର୍ବଳତା କିନ୍ତୁ ଏଥିରୁ ଉଦ୍ଧାର ପାଇବାକୁ ହେଲେ ଭଗବତ୍ ବିଶ୍ୱାସ ରଖିବାକୁ ହେବ ।

ସେଦିନର କଥା ମୋର ମନେ ଅଛି । ଆଜିକୁ ପ୍ରାୟ ୪୦ ବର୍ଷ ତଳର କଥା । ଦିନେ ଆମର ସଂଦିଗ୍ଧ ମନକୁ ଲକ୍ଷ୍ୟ କରି ଆମର ପ୍ରିୟ ଶିକ୍ଷକମାନେ କହିଲେ ସ୍କୁଲ ପାଠାଗାରକୁ ସଦ୍ୟ ଆସିଥିବା ବାରିଷ୍ଟର ଗୋବିନ୍ଦ ଦାସଙ୍କ ଲିଖିତ ବହି 'ଅମାବାସ୍ୟାର ଚନ୍ଦ୍ର' ଆମେ ପଢ଼ିବାକୁ ଆଗ୍ରହ ଦେଖାଇବୁ କି ? ଏହାର ନାୟକ କାଉଲ୍ ଜଣେ ହିରୋ ନୁହନ୍ତି । ସେ ଜଣେ ଆଣ୍ଟି-ହିରୋ(Anti-hero) । ଆମେ ଚମକିତ ହୋଇଥିଲୁ । ଆମର ସ୍ୱଚ୍ଛଜ୍ଞାନ ଭିତରେ ହିରୋର ଏକ ରୋମାଣ୍ଟିକ କଳ୍ପନା ଥିଲା । ଥିଲା ସେହିପରି ଏକ ମାନସିକତା । ପୁଣି ଏ ଆଣ୍ଟି-ହିରୋ କ'ଣ ? ସେମାନେ ଆମ ଭିତରେ ଆଗ୍ରହ ସୃଷ୍ଟି କରିବାକୁ କାଉଲଙ୍କର ଏକ ସଂକ୍ଷିପ୍ତ ବର୍ଣ୍ଣନା କରି କହିଥିଲେ ଆମେ ଜୀବନରେ ସତରେ କ'ଣ କାଉଲ ହୋଇପାରିବୁ ? ତେଣୁ ଆଣ୍ଟି-ହିରୋ ହେଉଛି ଏକ ନାୟକ ଯାହା ଆମେ ହେବାକୁ ଭୟ କରିବୁ ବା ପଶ୍ଚାତ୍‌ପଦ ହେବୁ । ହିରୋ ଏକ ସମ୍ଭାବନା ଅଥଚ ଆଣ୍ଟି-ହିରୋ ଏକ କଳ୍ପନା । କାଉଲ ଚରିତ୍ରରେ ଥିବା ରୋମାଣ୍ଟିକ ଭାବପ୍ରବଣତା ସହିତ ପାପ ଓ ପୁଣ୍ୟର ସରଳ ବିଶ୍ଳେଷଣ ମିଶାମିଶି ଥିବାରୁ ଏ ବହିଟି ପଢ଼ିବାକୁ ମୋ ମନରେ ଅଦମ୍ୟ ଆଗ୍ରହ ଓ ଉତ୍‌କଂଠା ସୃଷ୍ଟି ହୋଇଥିଲା । ବହିର ନାଁଟି ଅବଶ୍ୟ ଖୁବ୍ ଚମତ୍କାର ଥିଲା । ବିଶ୍ୱାସ କରନ୍ତୁ, ତାରୁଣ୍ୟର ଉଦ୍ଦାମତା ଭିତରେ 'ଅମାବାସ୍ୟାର ଚନ୍ଦ୍ର' ବହିଟି ମୋ ଉପରେ ସଂପୂର୍ଣ୍ଣ ଭାବେ ଯେଉଁ ପ୍ରଭାବ ପକାଇଥିଲା ତାହା ଆଜି ପର୍ଯ୍ୟନ୍ତ ଉଦ୍ଦୀପକ ହୋଇ ରହିଛି ବୋଲି ମୁଁ ଅକ୍ଳେଶରେ ସ୍ୱୀକାର କରିବି । ବହିଟି ଅନେକଥର ପଢ଼ିଛି, ସମୟ ଅସମୟରେ । ରେଭେନ୍‌ସା କଲେଜରେ ପାଦଦେଲା ପରେ ସବୁବନ୍ଧୁମାନଙ୍କୁ ପଚାରୁଥିଲି ଏ ବହିଟି ପଢ଼ିଛ କି ନାହିଁ ? ଓଡ଼ିଆରେ ପଢ଼ିଥିବା ବହି ଭିତରେ ଏହା ମୋ ପାଇଁ ଅନ୍ୟତମ ଶ୍ରେଷ୍ଠ ପୁସ୍ତକ । ଅନେକ ବନ୍ଧୁଙ୍କୁ ଏ ବହି ମୁଁ କିଣି ଉପହାର ଦେଇଥିଲି ଓ କାଉଲ୍ ଭଳି ଏକ ଜୀବନ ଓ ଦର୍ଶନକୁ ହୃଦୟଙ୍ଗମ କରିବାକୁ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ପ୍ରେରଣା ଦେଇଥିଲି । ଆମେ ଯେଉଁମାନେ ତାରୁଣ୍ୟର ପ୍ରେମରେ ପଡିଯିବାର ଅଭିନୟ କରୁଥିଲୁ ଓ ଆବେଗର ଉତ୍ତାଳତରଙ୍ଗରେ ଆନ୍ଦୋଳିତ ହେଉଥିଲୁ, ସେମାନଙ୍କ ପାଇଁ କାଉଲ୍ ଚରିତ୍ର ଏକ ପ୍ରେରଣା ଥିଲା । ଏହା ଆଜି ମଧ୍ୟ ବନ୍ଧୁମାନେ କେବେ କେମିତି ଏକାଠି ହେଲେ ଏ ବିଷୟରେ ମନେ ପକାଇଥାଉ । ଫେରିଥାଉ ଆମର ସୁବର୍ଣ୍ଣ ଅତୀତକୁ ।

ଓଡ଼ିଆ ଉପନ୍ୟାସରେ 'ଅମାବାସ୍ୟାର ଚନ୍ଦ୍ର' କିପରି ସ୍ୱତନ୍ତ୍ର ପ୍ରତିଷ୍ଠା ଲାଭ କରିଛି ତାହା ସାହିତ୍ୟ ସମାଲୋଚକମାନେ କହିବେ । ଏ ବହିରେ ଲେଖକର ସ୍ୱାତନ୍ତ୍ର୍ୟ କିପରି ପ୍ରତିଫଳିତ ହୋଇଛି ତାହାର ମୂଲ୍ୟାୟନ କରିବା ଅନ୍ୟ ଏକ ପରିସର । ଲେଖକ କାହା ଦ୍ୱାରା ପ୍ରଭାବିତ ହୋଇଛନ୍ତି ଓ କାଉଲ ସତରେ ଏକ ରକ୍ତମାଂସର ମଣିଷ କି କଳ୍ପନା ପ୍ରସୂତ ତାହା ସମ୍ଭବତଃ ଲେଖକ ଆଜି ପର୍ଯ୍ୟନ୍ତ ସ୍ପଷ୍ଟ କରିନାହାନ୍ତି । କିନ୍ତୁ ମୁଁ କହିବି ଯେ ଜଣେ ଆଣ୍ଟି-ହିରୋ ସୃଷ୍ଟି କରିବାରେ ଓ ଆମକୁ ପ୍ରଭାବିତ କରିବାରେ ସେ ଆମ ପାଇଁ ନାୟକ ହୋଇଛନ୍ତି । ସେ ପ୍ରସିଦ୍ଧ ହିନ୍ଦୀ ଲେଖକ ସ୍ୱର୍ଗତ ଭଗବତୀ ଚରଣ ବର୍ମାଙ୍କ କ୍ଲାସିକ୍

ଉପନ୍ୟାସ 'ଚିତ୍ରଲେଖା'ରେ ବର୍ଣ୍ଣିତ ବିଜିଗୁପ୍ତ ଓ କୁମାର ଗିରିଙ୍କ ଜୀବନ ଓ ଜିଜ୍ଞାସାକୁ ଆଧାର କରି ପାପ ଓ ପୁଣ୍ୟ ଭିତରେ ଆପେକ୍ଷିକ ସମ୍ବନ୍ଧ ଉପସ୍ଥାପନା କରିଛନ୍ତି । ସେ ଲେଖିଛନ୍ତି "ଲକ୍ଷ୍ମଣ ସୀତାଙ୍କ ନିଷିଦ୍ଧ ଗାର ଟାଣିଲା ପରି ସମାଜ ରେଖା ଟାଣେ । କହେ, ଏହାକୁ ଟପିଲେ ପାପ, ଏହାର ପଛଆଡେ ରହିଲେ ପୁଣ୍ୟ । ପାପ-ପୁଣ୍ୟର ବିଚାର କେବଳ ଏ ସୀମା ପ୍ରତି ସମ୍ମାନର କଥା । ଅଙ୍ଗୁର ଖାଅ, ସ୍ୱାସ୍ଥ୍ୟ ପକ୍ଷରେ ହିତକର : ଏଇ ଅଙ୍ଗୁରର ରସକୁ ସିଦ୍ଧକରି ଗିଲାସ ଭିତରେ ପିଅ, ତୁମେ ହେବ ମଦ୍ୟପ ।.... ଭବିଷ୍ୟତର ଆର୍ଥିକ ସ୍ୱଚ୍ଛଳତା ପାଇଁ ଜଗନ୍ନାଥଙ୍କ ପାଖରେ ଧନ ବିତରଣ କର, ସମାଜ କହିବ ଧାର୍ମିକ । ରେସକୋର୍ସରେ ତୁରନ୍ତ ଆର୍ଥିକ ସ୍ୱଚ୍ଛଳତା ପାଇଁ ଲଟେରୀ କିଣ, ସମାଜ କହିବ ଗ୍ୟାମ୍ବଲର, ଜୁଆଡି ।" ବହିସାରା ବିଭିନ୍ନ ପ୍ରକାରର ଉକ୍ତି ଭରି ରହିଛି । ବହିଟିକୁ ଅନେକ ଥର ପଢ଼ିବା ପରେ କେତେକାଂଶ ଦୀର୍ଘଦିନ ପାଇଁ ମନେ ରହିଥିଲା । ଅବଚେତନ ମନରେ କାଉଲ୍ ଭଳି ଏକ ଜୀବନର ପରିକଳ୍ପନା ଭରି ରହିଥିଲା । ରମେଶ କାଉଲ ଓ ମନୀଷାଙ୍କ ଭିତରେ ସମ୍ପର୍କ, ବିରହ ଓ ବିଚ୍ଛେଦ ପଛରେ ଯେମିତି ଏକ ଟ୍ରାଜିକମେଡି (Tragicomedy) ଆମ ସମସ୍ତଙ୍କୁ ଗୋଟାପଣେ ଗ୍ରାସ କରିଥିଲା । ନୀରବ ପ୍ରେମ ଯେମିତି ଆମ ମନଭିତରେ ଆସ୍ଥାନ ଜମାଇଥିଲା । ଜଣେ କାହାକୁ ଆପ୍ରାଣ ଭଲପାଇବ ଅଥଚ ଥରେ ହେଲେ ପ୍ରକାଶ କରିବ ନାହିଁ । ଏହା ଏକ ଗଭୀର ମାନସିକ ପ୍ରତିଫଳନ ନୁହେଁତ ଆଉ କ'ଣ ? ଆମେ ଯେଉଁମାନେ କେବେ କେମିତି ଭଲ ପାଇ ବସିଥିଲୁ ଅଥଚ କଦାପି ପ୍ରେମ ନିବେଦନ କରିପାରିଲୁ ନାହିଁ, ସେମାନଙ୍କର ପ୍ରତ୍ୟେକଟି ଜୀବନ କାହାଣୀକୁ ନେଇ ନୂଆ ନୂଆ 'ଅମାବାସ୍ୟାର ଚନ୍ଦ୍ର' ଲେଖା ଯାଇପାରନ୍ତା ବୋଲି ମୁଁ ଅନୁଭବ କରିଛି ଅନେକ ଦିନରୁ । କିନ୍ତୁ ଉପନ୍ୟାସ ଲେଖିବା ଆମର ମୂଳ କାର୍ଯ୍ୟ ନୁହେଁ । ତେଣୁ ସେ ସବୁ ମନଗଢ଼ା କାହାଣୀ ଭଳି ଜନ୍ମ ନେଇଛି ଓ ସେଥିରେ ସେ ଆପେ ଆପେ ମରିଯାଉଛି । କିନ୍ତୁ ଜଣେ ଆଧାତ୍ମିକ ଯାତ୍ରୀ ପାପ ଓ ପୁଣ୍ୟ ଭିତରେ ପ୍ରଭେଦ ଜାଣିବାକୁ ବାଧ । ଏହା ଫଳରେ ସେ ନିଜକୁ ସୁରକ୍ଷା ଦେଇ ପାରିବା ସମ୍ଭବ । କିନ୍ତୁ ପାପ କ'ଣ ଓ ପୁଣ୍ୟ କ'ଣ ଏହା ଏକ ଚିରନ୍ତନ ପ୍ରଶ୍ନ । ପାପ ଓ ପୁଣ୍ୟ, ସଇତାନ ଓ ଭଗବାନ ଆଦିରେ ବିଶ୍ୱାସ ରଖିଥିବା ମଣିଷମାନଙ୍କର ସ୍ୱତନ୍ତ୍ର ପରିଚୟ କ'ଣ ? ଏ ଅମୀମାଂସିତ ପରିଧିର ସେପଟେ ଏକ ଭଲ ପାଇବାର ପୃଥିବୀ ସବୁବେଳେ ରହିଆସିଛି ମଣିଷ ସହ ମଣିଷର, ମଣିଷ ସହ ପୃଥିବୀର ଏବଂ ମଣିଷ ସହ ଏକ ଦିବ୍ୟଶକ୍ତିର । ଜଣକୁ ସବୁ କିଛି ଆପଣାର କରିବାକୁ ହେବ । ଜଣକୁ ଆଗକୁ ଯିବାକୁ ହେବ, ଉର୍ଦ୍ଧ୍ୱମୁଖୀ ହେବାକୁ ହେବ । ପାପ ଓ ପୁଣ୍ୟର ପୃଥିବୀରେ ଜଣକୁ ଲମ୍ବାଯାତ୍ରାର ଯାତ୍ରୀ ହେବାକୁ ହେବ । 'ଅମାବାସ୍ୟାର ଚନ୍ଦ୍ର'ରେ କାଉଲ୍ ଯେପରି ବିଥୋଭେନ (Beethoven)ଙ୍କ ଫୋର୍ଥ ସିମ୍ଫୋନି (Fourth Symphony) ଭଳି ନିଶ୍ଚଳ, ଶାନ୍ତ ସେଇଭଳି ସ୍ଥିତିରେ ରହିବାକୁ ହେବ ।

ପ୍ରତିମୁହୂର୍ତ୍ତରେ ବଦଳୁଥିବା ଆମ ଜୀବନର ଗତିପଥକୁ 'ଅମାବାସ୍ୟାର ଚନ୍ଦ୍ର' ଅନେକ ପରିମାଣରେ ଓ ଅନେକ ଦିନ ଧରି ନିୟନ୍ତ୍ରଣରେ ରଖିଥିଲା ବୋଲି ମୁଁ ସ୍ୱୀକାର କରିବି । ସେଇଥିପାଇଁ ଅପନେକ ସବୁକିଛି ସୁନ୍ଦର ହୋଇଯାଇଥିଲା ଜୀବନରେ । ବନ୍ଧୁତା ଓ ଭଲ ପାଇବାର ମୋହ ଅନେକ ବଢ଼ିଯାଇଥିଲା । ମନ ସାଥୀସାଙ୍ଗ ଖୋଜୁଥିଲା କେତେ ଦିନ ଧରି । ପାହାଡ, ଝରଣା, ଆକାଶ ଓ ତାରାମାନେ ସବୁ ଯେମିତି ଆପଣାର ହୋଇ ଯାଇଥିଲେ । ସନ୍ଧ୍ୟା ନଇଁ ଆସିବାବେଳେ ନଦୀ କୂଳରେ ଆମେ ଛନ୍ଦମୟ କବିତା ଏକାଠି ବସି ଲେଖୁଥିଲୁ । ଆମେ ସବୁ କାଉଲଙ୍କ ଭଳି ଜୀବନରେ ଚିତ୍ର ଆଙ୍କୁଥିଲୁ । ପାପ ଓ ପୁଣ୍ୟ ଭିତରେ ଲଢ଼ୁଥିବା ତର୍କକୁ ଜୀବିତ ରଖିବା ପାଇଁ ଆମେ ବିଶ୍ୱ ସାହିତ୍ୟ ଖୋଜୁଥିଲୁ । 'ଭାଗବତ', 'ଚିତ୍ରଲେଖା' ଦସ୍ତୋଭସ୍କିଙ୍କ 'ପାପ ଓ ପ୍ରାୟଶ୍ଚିତ', ଦାନ୍ତେଙ୍କ 'ଇନ୍‌ଫେର୍ଣ୍ଣୋ', ଆଦି ପଢ଼ିବାକୁ ଚେଷ୍ଟା କରିଥିଲୁ । ବୁଝିବା ଓ ନବୁଝିବା ଏକାକଥା ଥିଲା ଆମ ପାଇଁ । ସେ ବୟସରେ ପାପ ଓ ପ୍ରାୟଶ୍ଚିତର ଅର୍ଥ କିଛି ନଥିଲା ।

❑ ❑ ❑

୧୨

# ପାପ ପୁଣ୍ୟ ପ୍ରାସଙ୍ଗିକତା - ଖ

ଅପରିପକ୍ୱ ବୟସରେ ପାପପୁଣ୍ୟ ସହ ପରିଚିତ ହେବା ସ୍ୱାଭାବିକ । ମନ୍ଦିରକୁ ଯିବା ଓ ନଡିଆ, କଦଳୀର ଭୋଗ ନୈବେଦ୍ୟ ଦେବାଦେବୀଙ୍କ ପାଦତଳେ ଥୋଇଦେଇ ସାଷ୍ଟାଙ୍ଗ ପ୍ରଣିପାତ କରିବା ଅଥବା ପର୍ବପର୍ବାଣି ଦିନଗୁଡିକରେ ବିଭିନ୍ନ ପୂଜା ଆରାଧନା କରିବା, ପୁଣ୍ୟ ଧର୍ମ ଶାସ୍ତ୍ର ପଢ଼ିବା ବା ତୀର୍ଥ ସ୍ଥାନମାନଙ୍କୁ ଯାଇ ଆଧାତ୍ମିକତାର ସ୍ରୋତରେ ସାମିଲ୍ ହେବାକୁ ଆମକୁ ବିଭିନ୍ନ ଦିଗରୁ ପ୍ରୋତ୍ସାହନ ମିଳିଥାଏ । ପୁରୀ ରଥଯାତ୍ରା ହେଉ ବା କୁମ୍ଭମେଳା ହେଉ, ତିରୁପତି ହେଉ ବା ପୁଷ୍କର ହେଉ, ସବୁ ସ୍ଥାନରେ ଶୁଭ ମୁହୂର୍ତ୍ତରେ ଉପସ୍ଥିତ ହେବା ଅଶେଷ ପୁଣ୍ୟ ଅର୍ଜନ କରିବାର ମାର୍ଗ ବୋଲି କୁହାଯାଇଥାଏ । ଭାଗବତରେ ଲେଖା ଅଛି- "ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି କାରଣେ ।" ପିଲାଦିନେ ଆମ ସହରରେ ଦେବାଦେବୀଙ୍କ ଉପରେ ଯଦି ଚଳଚ୍ଚିତ୍ର କି ଅପେରା ପ୍ରଦର୍ଶନ ହେଉଥିଲା, ସମସ୍ତ ସହରବାସୀ ଏକାଧିବାର ଦେଖିବାକୁ ଯାଉଥିଲେ । ସମସ୍ତଙ୍କର ବିଶ୍ୱାସ ଯେ ଏସବୁ ପୁଣ୍ୟ ଅର୍ଜନ କରିବାର ମାର୍ଗ । ଆମ ସହରର ପାପାତ୍ମାମାନଙ୍କର ସଂଖ୍ୟା କିଛି କମ୍ ନଥିଲା । କିନ୍ତୁ ଧର୍ମାତ୍ମାମାନଙ୍କର ଧର୍ମ ବିଶ୍ୱାସ ଯେମିତି ସହରଟିକୁ ବଞ୍ଚାଇ ରଖିଥିଲା ।

ପାପ ପୁଣ୍ୟ ଭିତରେ ସମ୍ବନ୍ଧ ଓ ତାରତମ୍ୟକୁ ଆଧାର କରି ଯେତେ ବହି ଲେଖାଯାଇଛି, ସେ ଭିତରୁ ମୁଁ 'ଚିତ୍ରଲେଖା' ବହିକୁ ସବୁଠାରୁ ଅଧିକ ମାନ୍ୟତା ଦେବି । ପ୍ରସିଦ୍ଧ ହିନ୍ଦୀ ଲେଖକ ସ୍ୱର୍ଗତ ଭଗବତୀ ଚରଣ ବର୍ମା ଏ ବହିଟିର ଲେଖକ । ଓଡ଼ିଆ ଅନୁବାଦକ ହେଉଛନ୍ତି, ପଶ୍ଚିମ ଓଡ଼ିଶାର ଖ୍ୟାତନାମା ଲେଖକ ଓ ବୁଦ୍ଧିଜୀବୀ ଶ୍ରୀଯୁକ୍ତ ଶ୍ରୀନିବାସ ଉଦ୍‌ଗାତା । ବହିରେ ବିଜିଗୁପ୍ତ, କୁମାରଗିରି ଓ ଚିତ୍ରଲେଖା ହେଉଛନ୍ତି ତିନୋଟି ମୁଖ୍ୟ ଚରିତ୍ର । କୁମାରଗିରି ହେଉଛନ୍ତି ଯୋଗୀ । ବିଜିଗୁପ୍ତ ହେଉଛନ୍ତି ଭୋଗୀ । ଏ ଦୁହିଁଙ୍କ ସହ ନର୍ତ୍ତକୀ ଚିତ୍ରଲେଖାକୁ ନେଇ ଏକ ତ୍ରିଭୁଜ ସୃଷ୍ଟି । ରଙ୍ଗମଞ୍ଚ ହେଉଛି ଐତିହାସିକ ପାଟଳିପୁତ୍ରର ରାଜକୀୟ ପରିବେଶ । ଲେଖକଙ୍କ ଭାଷାରେ କୁମାରଯୋଗୀ ସଂସାରର ସମସ୍ତ ବାସନାକୁ ଜୟ କରିଛନ୍ତି । ସଂସାର ପ୍ରତି ବିରାଗୀ । ସେ ତେଜସ୍ୱୀ, ପ୍ରତାପୀ, ଶାରୀରିକ ତଥା ଆତ୍ମିକ ଉଭୟ ବପୁସମ୍ପନ୍ନ । ମମତ୍ୱକୁ ସେ ଅକ୍ଲେଶରେ ବଶୀଭୂତ

କରିଛନ୍ତି । 'ଆଉ ବିଜିଗୁପ୍ତ ଭୋଗୀ, ତା'ର ହୃଦୟରେ ଯୌବନର ଉନ୍ମାଦନା ଓ ନୟନରେ ମାଦକତା ପରିପୂର୍ଣ୍ଣ ରହିଛି ।...ସୁରାର ଉଷ୍ଣକମନୀୟ ସ୍ପର୍ଶରେ ଆଗ୍ରହଭରା ମାଦକତା ହିଁ ତାର ଜୀବନ । ତା'ର ଅନ୍ତରରେ ଯୌବନର ସ୍ଫୁର୍ତ୍ତି ଏବଂ ନୟନତଳେ ମାଦକତାର ରକ୍ତିମା । ସେ ସୁନ୍ଦର - ଅନ୍ତରରେ ତା'ର ସମସ୍ତ ବାସନାର ନିବାସସ୍ଥଳୀ । ସେ ଧନ, ଜନ, ମାନଶାଳୀ, ରୂପମଦମତ୍ତ, ନର୍ତ୍ତକୀର ନୃତ୍ୟରତ ପାଦର ରୂପର ନିକ୍ୱଣ ତା'ପ୍ରାଣର ଗୁଞ୍ଜରଣ । ସେ ଈଶ୍ୱର ବିଶ୍ୱାସୀ ନୁହେଁ ।

ଆଉ ଚିତ୍ରଲେଖା ? ସେ ବେଶ୍ୟା ନୁହେଁ, ସେ କେବଳ ଏକ ନର୍ତ୍ତକୀ । ଚିତ୍ରଲେଖାର କଣ୍ଠ କୋମଳ, ତନୁ ଲାବଣ୍ୟମୟ ଓ ଲୋଭନୀୟ । ପାଟଳିପୁତ୍ରର ସର୍ବଶ୍ରେଷ୍ଠ କୁଶଳୀ ତଥା ସୁନ୍ଦରୀ ନର୍ତ୍ତକୀ "ଚିତ୍ରଲେଖା"....

ଏ ବହିଟିର କାହାଣୀ ଖୁବ୍ ଜଟିଳ । ଗୁରୁ ରତ୍ନାମ୍ବରଙ୍କର ଦୁଇଶିଷ୍ୟ ହେଉଛନ୍ତି ଶ୍ୱେତାଙ୍କ ଓ ବିଶାଳଦେବ । ପାପର ପରିଭାଷା ଜାଣିବା ପାଇଁ ସମସ୍ତେ ପ୍ରୟାସୀ । ଗୁରୁ ରତ୍ନାମ୍ବର ନିଜେ ପାପ କ'ଣ ନିଜର ବିରାଟ ଅଧ୍ୟୟନ ଓ ଅନୁଭୂତି ସତ୍ତ୍ୱେ କହିବାକୁ ଅକ୍ଷମ । ସେ ଉଭୟ ଶିଷ୍ୟଙ୍କୁ ପରାମର୍ଶ ଦେଇଛନ୍ତି ଯେ ସେମାନେ ବ୍ୟକ୍ତିଗତ ଭାବେ ପାପ ପୁଣ୍ୟ କ'ଣ ଜାଣିବାକୁ ସଂସାର ଭିତରେ ପ୍ରବେଶ କରିବେ । ଶ୍ୱେତାଙ୍କ ଯିବେ ଭୋଗୀ ବିଜିଗୁପ୍ତଙ୍କ ପାଖକୁ ଓ ବିଶାଳଦେବ ଯିବେ ଯୋଗୀ କୁମାରଗିରିଙ୍କ ପାଖକୁ । ଶ୍ୱେତାଙ୍କ ବିଜିଗୁପ୍ତଙ୍କ ପାଖରେ ଦେଖିଛନ୍ତି ନର୍ତ୍ତକୀ ଚିତ୍ରଲେଖାକୁ ଓ ଆକର୍ଷିତ ହୋଇଛନ୍ତି । କିନ୍ତୁ ଚିତ୍ରଲେଖା ଓ ବିଜିଗୁପ୍ତଙ୍କ ଭିତରେ ନିବିଡ ସମ୍ପର୍କକୁ ସେ ଅନୁଭବ କରିଛନ୍ତି ଓ ନିଜର ଦୁର୍ବଳତାକୁ ବିଜିଗୁପ୍ତଙ୍କ ପାଖରେ ପ୍ରକାଶ କରି କ୍ଷମା ମାଗିଛନ୍ତି । ବିଜିଗୁପ୍ତ କିନ୍ତୁ ଶ୍ୱେତାଙ୍କଙ୍କୁ ଆଶ୍ୱାସନା ଦେଇ ନିଜର ମହାନତା ପ୍ରକଟ କରିଛନ୍ତି । ଅନ୍ୟ ପକ୍ଷରେ ବିଶାଳଦେବ ଯୋଗୀ କୁମାରଗିରିଙ୍କର ଜ୍ଞାନ ଓ ତେଜ ଦ୍ୱାରା ଆକର୍ଷିତ ହୋଇଛନ୍ତି । ନର୍ତ୍ତକୀ ଚିତ୍ରଲେଖା କୁମାରଗିରିଙ୍କ ଜୀବନର ପରିଧି ଭିତରକୁ ପଶି ଆସିଛି ଅଚାନକ । କୁମାରଗିରିଙ୍କର ସମସ୍ତ ଯୋଗ ଓ ତପସ୍ୟାର ବ୍ୟତିକ୍ରମ ଦେଖାଦେଇଛି । କୁମାରଗିରି ଚିତ୍ରଲେଖା ପ୍ରତି ଆକର୍ଷିତ ହୋଇଛନ୍ତି । ଚିତ୍ରଲେଖା ପ୍ରମାଣ କରିବାକୁ ଚାହିଛି ଯେ ଯୋଗ ଓ ତପସ୍ୟା ଜୀବନର ଏକ ଭୁଲ । ଆତ୍ମାର ହନନ ହିଁ ତପସ୍ୟାର ବାସ୍ତବିକତା । କୁମାରଗିରି ଅନୁଭବ କରିଛନ୍ତି ଯେ ମାୟା ଓ ବ୍ରହ୍ମର ସଂଯୋଗ ହିଁ ଆତ୍ମା । ଯେଉଁ ସମୟରେ ଆତ୍ମାର ମୃତ୍ୟୁ ଘଟେ, ମାୟାର ବିକାର ଲୋପ ହୋଇଯାଏ ଓ ସତ୍, ଚିତ୍ ତଥା ଆନନ୍ଦ ସେହି ବ୍ରହ୍ମ ହିଁ ରହିଯାଏ । ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କ ରାଜସଭାରେ ଚାଣକ୍ୟଙ୍କ ଭଳି ବିଦ୍ୱାନ ମନ୍ତ୍ରୀଙ୍କ ଉପସ୍ଥିତିରେ କୁମାରଗିରି ଈଶ୍ୱର ଅଛନ୍ତି ବୋଲି ପ୍ରମାଣିତ କରିବାକୁ ଚାହିଁଛନ୍ତି । ସଭାରେ ଉପସ୍ଥିତ ସମସ୍ତ ବିଦ୍ୱାନ୍ ମଣ୍ଡଳୀ କୁମାରଗିରି ସୃଷ୍ଟି କରିଥିବା ଅଗ୍ନିଶିଖା ଦେଖିପାରିଥିଲେ ମଧ୍ୟ ଚାଣକ୍ୟ ଓ ଚିତ୍ରଲେଖା ଏ ଅଗ୍ନିଶିଖା ଦେଖିନାହାନ୍ତି ବୋଲି ଘୋଷଣା କରିଛନ୍ତି । ଚିତ୍ରଲେଖା କୁମାରଗିରି ତାଙ୍କ ଜୀବନରେ ଈଶ୍ୱର ଓ ସତ୍ୟ ସତରେ କ'ଣ ଦେଖିଛନ୍ତି ବୋଲି ପଚାରିଛନ୍ତି

ଓ କୁମାରଗିରିଙ୍କ ନାସ୍ତିସୂଚକ ଉତ୍ତର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇଛି । ଚିତ୍ରଲେଖାର ଯୁକ୍ତି ଓ ଅଦ୍ୱିତୀୟ ସୌନ୍ଦର୍ଯ୍ୟ ଆଗରେ କୁମାରଗିରି ନିଜକୁ ସମର୍ପଣ କରିଛନ୍ତି ଓ ପରାଜିତ ହୋଇଛନ୍ତି । ଅନ୍ୟପକ୍ଷରେ ଚିତ୍ରଲେଖା କୁମାରଗିରିଙ୍କ ପ୍ରତି ଆକୃଷ୍ଟ ହୋଇ ବିଜିଗୁପ୍ତଙ୍କୁ ପରିତ୍ୟାଗ କରିଛନ୍ତି । ନର୍ତ୍ତକୀରୁ ହୋଇଛନ୍ତି କୁମାରଗିରିଙ୍କ ପ୍ରଣୟୀ । କୁମାରଗିରି ଚିତ୍ରଲେଖାକୁ ସ୍ଥାନ ଦେଇଛନ୍ତି ତାଙ୍କ କୁଟୀରରେ । ଏହା ବିଜିଗୁପ୍ତଙ୍କୁ ଖୁବ୍ ଆଘାତ ଦେଇଛି । କୁମାରଗିରି ଚିତ୍ରଲେଖା ପ୍ରତି ଦୁର୍ବଳତା ପ୍ରକାଶ କରିଛନ୍ତି । ଏହା ଚିତ୍ରଲେଖାକୁ ଘୋର ଆଘାତ ଦେଇଛି । ଯେଉଁ କାରଣ ଯୋଗୁଁ ସେ ବିଜିଗୁପ୍ତଙ୍କୁ ଛାଡି କୁମାରଗିରିଙ୍କ ପାଖକୁ ଆସିଥିଲା ତାହା ଭ୍ରମାତ୍ମକ ବୋଲି ପ୍ରମାଣିତ ହୋଇଛି । ଏ ଭିତରେ ବିଜିଗୁପ୍ତ ନିଜର ଧନସମ୍ପତ୍ତି ଶ୍ୱେତାଙ୍କକୁ ଦେଇ ପାଟଳିପୁତ୍ର ଛାଡିବାକୁ ମନସ୍ଥ କରିଛନ୍ତି । କୁମାରଗିରିଙ୍କୁ ପରିତ୍ୟାଗ କରି ଚିତ୍ରଲେଖା ଫେରିଛି ବିଜିଗୁପ୍ତଙ୍କ ପାଖକୁ । ଉଭୟେ ନିଃସ୍ୱ ଭିନ୍ନ ଦୃଷ୍ଟିରେ ଅଥଚ ପ୍ରଗାଢ଼ ପ୍ରେମବନ୍ଧନରେ ଆବଦ୍ଧ । ବର୍ଷକ ପରେ ଗୁରୁ ରତ୍ନାମ୍ବର ଶିଷ ଶ୍ୱେତାଙ୍କ ଓ ବିଶାଳଦେବଙ୍କୁ ପଚାରିଛନ୍ତି ଯେ ବିଜିଗୁପ୍ତ ଓ କୁମାରଗିରିଙ୍କ ଭିତରେ ପାପୀ କିଏ ? ଶ୍ୱେତାଙ୍କ ବିଜିଗୁପ୍ତଙ୍କୁ ଦେବତା ବୋଲି ଆଖ୍ୟାୟିତ କରି କୁମାରଗିରିଙ୍କୁ ପାପୀ ବୋଲି କହିଥିଲାବେଳେ ବିଶାଳଦେବ କୁମାରଗିରିଙ୍କୁ ଦେବତାର ସ୍ଥାନରେ ବସାଇ ବିଜିଗୁପ୍ତଙ୍କୁ ବାସନାର ଦାସ ଓ ପାପୀ ବୋଲି ଯୁକ୍ତି ବାଢ଼ିଛନ୍ତି । ରତ୍ନାମ୍ବର ସର୍ବଶେଷରେ କହିଛନ୍ତି ଯେ –

"ସଂସାରରେ କିଛି ହେଲେ ପାପ ନୁହେଁ । ମଣିଷର ଦୃଷ୍ଟିକୋଣର ବିସମତାର ଅନ୍ୟନାମ ପାପ ।...ଏ ସଂସାରରେ ପାପର

କୌଣସି ଏକ ପରିଭାଷା ସମ୍ଭବ ନୁହେଁ, ନା କଦାଚିତ୍ ଏହା ସମ୍ଭବ ହେବ । ଆମେ ପାପ କରୁଛୁ ନା ପୁଣ୍ୟ କରୁଛୁ... ଆମେ

କେବଳ ତାହାହିଁ କରୁଛୁ... ଯାହା ଆମକୁ କରିବାକୁ ପଡୁଛି ।"

ପାପ ଓ ପୁଣ୍ୟ ପ୍ରକୃତରେ ଆମର କର୍ମଚିନ୍ତନ ସହ ସଂଶ୍ଳିଷ୍ଟ । ଜଣେ ତଥାକଥିତ ପାପକାର୍ଯ୍ୟରେ ଲିପ୍ତ ଅଥଚ ତାହାର ଆତ୍ମା ଅନାବିଳ ଓ ଅନାସକ୍ତ ରହିଥିବ । ଆମ ଶାସ୍ତ୍ରରେ ଭକ୍ତିଯୋଗ, କର୍ମଯୋଗ ଓ ଜ୍ଞାନଯୋଗ ଆଦିର ବିଭିନ୍ନ ତାତ୍ପର୍ଯ୍ୟ ବର୍ଣ୍ଣନା କରାଯାଇଛି ଓ ଆମ ସମସ୍ତଙ୍କ ପାଇଁ ବିଭିନ୍ନ ଆଧ୍ୟାତ୍ମିକ ପଥ ନିର୍ଦ୍ଧାରଣ କରାଯାଇଛି । ଏହି ପଥକୁ ପାଥେୟ କରି ଜଣେ ପାପ ଓ ପୁଣ୍ୟର ଉର୍ଦ୍ଧ୍ୱକୁ ଯାଇପାରିବ । ଭାଗବତର ଏକାଦଶ ସ୍କନ୍ଧରେ ଏହା ଚମତ୍କାର ଲେଖାଯାଇଛି:

"ଉଦ୍ଧବ ଏକ ମନେ ଶୁଣ । ଯେ ଯୋଗ ଲୋକ – ପରିତ୍ରାଣ ॥
ଭକତି କର୍ମ ଜ୍ଞାନ ଘେନି । ଏମନ୍ତେ ଯୋଗମାର୍ଗ ତିନି ॥
ଏ ତିନିପଥୁଁ ଅନ୍ୟମତେ । ଉପାୟ ନଦେଖି ଜଗତେ ॥
ଏ କଥା ଶୁଣ ମନଦେଇ । ଉତ୍ତମ ଶିଷ୍ୟେ ଏହା କହି ॥

କିନ୍ତୁ ଅସଲ ଭକ୍ତି, ଅସଲ କର୍ମ ଓ ଅସଲ ଜ୍ଞାନକୁ ଜାଣିବା ଓ ଆପଣାର ଜୀବନରେ କାର୍ଯ୍ୟାନ୍ୱିତ କରିବା ସହଜ କଥା ନୁହେଁ । କିନ୍ତୁ ସମ୍ଭବତଃ କର୍ମରୁ ଜ୍ଞାନ, ଜ୍ଞାନରୁ ଭକ୍ତି ଓ ଭକ୍ତିରୁ ସିଦ୍ଧି ହାସଲ କରିବା ପାଇଁ ସବୁ ସଚେତନ ବ୍ୟକ୍ତି ଅହର୍ନିଶ ଉଦ୍ୟମ କରି ଆସିଛନ୍ତି । ଜଣେ କର୍ମ କରିଯିବ ଓ ଫଳକୁ ଆଶା ରଖି ନଥିବ ଏହା ବାସ୍ତବଜୀବନର ମୂଳମନ୍ତ୍ର । ତେଣୁ ସମ୍ଭବତଃ ଏ ପୃଥିବୀର ମଣିଷ କିଛି ନା କିଛି କାର୍ଯ୍ୟରେ ନିଜକୁ ନିୟୋଜିତ କରି ତା'ଭିତରେ ଆଧାତ୍ମିକ ଶକ୍ତିର ଝଲକ ଦେଖିବାକୁ ଚାହିଁଛି । ପାପ ଓ ପୁଣ୍ୟର ଉର୍ଦ୍ଧ୍ୱକୁ ଯିବାକୁ ସେ "ଆଗେଇ ଚାଲ, ଆଗେଇ ଚାଲ" ବୋଲି ଦୃଢ଼ସ୍ୱରରେ ଘୋଷଣା କରିଛି ।

'ଅମାବାସ୍ୟାର ଚନ୍ଦ୍ର' ଓ 'ଚିତ୍ରଲେଖା' ବହି ଦୁଇଟି ପଢ଼ିବା ପରେ ଆମର ଅନେକ କିଛି ବୌଦ୍ଧିକ ସ୍ୱଚ୍ଛତା ଆସିଥିଲା ତରୁଣ ବୟସରେ । ଅନେକ ଦ୍ୱନ୍ଦ୍ୱ ଓ ଭ୍ରମ ଦୂର ହୋଇଯାଇଥିଲା । ମନ୍ଦିରକୁ ଯାଇ ଭକ୍ତି ଉପାସନା କରିବା ବା ନକରିବା, ଧର୍ମଶାସ୍ତ୍ର ପଢ଼ିବା ବା ନପଢ଼ିବା, ଯୋଗୀମାନଙ୍କ ଭଳି ସାତ୍ତ୍ୱିକ ଜୀବନ କାଟିବା ବା ନକାଟିବା ବିଶେଷ କିଛି ଫରକ ନଥିଲା । ପ୍ରକୃତରେ ମଣିଷ ଭୋଗ ମୋହର ମାୟା ଭିତରେ ବନ୍ଦୀ ନହୋଇ ଏକ ଉର୍ଦ୍ଧ୍ୱମୁଖୀ ଯାତ୍ରା ଆରମ୍ଭ କରୁଛି କି ନାହିଁ ତାହା ବାରମ୍ବାର ବିଶ୍ଳେଷଣ କରିବା ଆମ ପାଇଁ ଗୁରୁତ୍ୱପୂର୍ଣ୍ଣ ଥିଲା ।

□□□

**୧୩**

# ପାପ ପୁଣ୍ୟ ପ୍ରାସଙ୍ଗିକତା - ଗ

ଆମ ସ୍କୁଲ୍ ଲାଇବ୍ରେରୀରେ ଦସ୍ତୋଭସ୍କିଙ୍କ ଅନ୍ୟତମ ଶ୍ରେଷ୍ଠକୃତି 'କ୍ରାଇମ୍ ଏଣ୍ଡ ପନିସ୍‌ମେଣ୍ଟ'ର ଓଡ଼ିଆ ଅନୁବାଦ 'ପାପ ଓ ପ୍ରାୟଶ୍ଚିତ' ଯେଉଁଦିନ ପଢ଼ି ମୁଁ ଶେଷ କରିଲି, ସେଦିନ ତମାମ୍ ମୁଁ ଛଟପଟ ହେଉଥିଲି । ରାସ୍‌କୋଲନିକୋଭ୍, ଲିଜାଭେଟା ଓ ସୋନ୍ୟା ଆଦି ଚରିତ୍ରଗୁଡିକୁ ମୁଁ ମାନସପଟରେ ଆଙ୍କିବାକୁ ଚେଷ୍ଟା କରିଥିଲି । ପ୍ରତ୍ୟେକ ପାପର ପ୍ରାୟଶ୍ଚିତ ଅଛି ବୋଲି ଲେଖକ ଦୃଢ଼ଭାବରେ ଉପସ୍ଥାପନ କରିଛନ୍ତି । ପାପର ସଂଜ୍ଞା ସେ ସମୟରେ ଜାଣିବା ମୋ ପାଇଁ ମୋ ମନରେ କୌତୂହଳ ଜାତ କରିଥିଲା । ଦସ୍ତୋଭସ୍କିଙ୍କ ବହିଗୁଡ଼ିକୁ ପଢ଼ିବା ଓ ଗଭୀରଭାବେ ଅନୁଭବ କରିବା ସେ ବୟସରେ ସମ୍ଭବ ନଥିଲା ବୋଲି ମୁଁ ସ୍ୱୀକାର କରିବି । କିନ୍ତୁ ପାପ ଓ ପୁଣ୍ୟ ଭିତରେ ଥିବା ରହସ୍ୟଭେଦ କରିବାର ଅଦମ୍ୟ ଇଚ୍ଛା ଜାଗରିତ ହୋଇଥିଲା । ସେତେବେଳେ ବହି ବା ପତ୍ରପତ୍ରିକାରେ ଏସବୁ ବିଷୟରେ କିଛି ପ୍ରକାଶିତ ହୋଇଛି ବୋଲି ଖୋଜା ମଧ୍ୟ ଚାଲିଥିଲା । ସେ ସମୟରେ ଚିତ୍ତଭାଇଙ୍କ 'ଶିଳାତୀର୍ଥ' ପଢ଼ିବାବେଳେ ତୀର୍ଥସ୍ଥାନ ଓ ଦେବାଦେବୀ ଦର୍ଶନରେ ପୁଣ୍ୟ ମିଳେ କି ନାହିଁ, ସେ ସମ୍ପର୍କରେ ଅନେକ ଭାବାନ୍ତର ସୃଷ୍ଟି ହୋଇଥିଲା । କିନ୍ତୁ ଗାଳ୍ପିକ ମନୋଜ ଦାସଙ୍କ 'ଲକ୍ଷ୍ମୀର ଅଭିସାର' ଗପଟି ପଢ଼ିବା ପରେ ପୂଜା ଓ ପୂଜକଙ୍କ ଉପରେ ଏକ ଭିନ୍ନ ଧାରଣା ସୃଷ୍ଟି ହୋଇଥିଲା । ମନୋଜ ଦାସଙ୍କ 'ଆରଣ୍ୟକ', 'ଶେଷ ବସନ୍ତର ଚିଠି' ଆଦି ଅନେକ କଥା ଓ କାହାଣୀ ମୋତେ ଭଲ ଲାଗୁଥିଲା ପଢ଼ିବାକୁ କିନ୍ତୁ 'ଲକ୍ଷ୍ମୀର ଅଭିସାର' ଏକ ଭିନ୍ନ ସ୍ୱାଦର କାହାଣୀ ଥିଲା । ମନ୍ଦିରର ପୂଜାରୀ ପଣ୍ଡିତ ଦ୍ୱିପ୍ରହରରେ ଶୋଇଥିଲାବେଳେ ଲକ୍ଷ୍ମୀ ବୋଲି ଝିଅଟି ଯାଇ ଠାକୁରଙ୍କ ଆଗରେ କେତେ କଥା ଓ ମନର ବ୍ୟଥା ପ୍ରକାଶ କରିଛି । ପାଚିଲା କଦଳୀ କାନ୍ଦିଟିଏ ଦେଖି ସେଥିରୁ ଦୁଇଟି ଧରି ବାହାରକୁ ଆସିଲାବେଳେ ପୂଜାରୀ ହାତରେ ଧରା ପଡିଛି । ଏ ଘଟଣାରେ ସମସ୍ତେ ଯେମିତି ଲକ୍ଷ୍ମୀର ଚରିତ୍ର ଉପରେ ମତାମତ ଦେଇଛନ୍ତି କଦଳୀ ଚୋରି କରିଥିବାରୁ । ପୂଜାରୀ ଗୋଡାଇଲା ବେଳେ ପୋଖରୀ ଭିତରେ ପଶିଯାଇଛି ଲକ୍ଷ୍ମୀ । ତା'ର ତିନିଦିନ ପରେ ଜ୍ୱରରେ ପଡି ସେ ମରିଯାଇଛି । ଲେଖକ ପୂଜାରୀ ପଣ୍ଡିତଙ୍କ ବିଷୟରେ ଲେଖିଛନ୍ତି ;

"ବିମର୍ଷ ଭାବରେ, ନୀରବରେ ବସି ରହିଥିଲେ ଏକା ପୂଜାରୀ ପଣ୍ଡିତେ । ଯେତେବେଳେ ଦିଅଁଙ୍କ ପ୍ରତ୍ୟକ୍ଷତାର ପ୍ରମାଣରେ ଉଦ୍‌ବୁଦ୍ଧ ହୋଇ ଜନତା ହରିବୋଲ

ଧ୍ୱନି ଦେଇ ଉଠିଲେ, ହଠାତ୍ ପଣ୍ଡିତେ ଯେମିତି ଅନୁଭବ କଲେ, ସେଇ ମୁହୂର୍ତ୍ତରେ ଦିଅଁଙ୍କ ବିଭୂତି ସିଂହାସନ ଛାଡି ଚାଲିଗଲା - ପଡିରହିଲା କେବଳ ଏକ ଦୀପ୍ତିହୀନ, ଅର୍ଥହୀନ ରୂପ । .. ଜୀବନର ଅବଶେଷ କେଇଦିନ ପଣ୍ଡିତେ ନୀରବରେ ଏତିକି ପ୍ରାର୍ଥନା କରିଥିଲେ - "ପ୍ରଭୁ ! ପରଜନ୍ମରେ ଏ ପାପିଷ୍ଠ ଯେହ୍ନେ ଜିହ୍ୱାହୀନ ହୋଇ ଭୂମିଷ୍ଠ ହେଉ !"

ମୁଁ ବୁଝିପାରୁଥିଲି ଯେ ଲକ୍ଷ୍ମୀ କାହିଁକି ଦୁଇଟି କଦଳୀ ପାଇଁ ମରିଗଲା ଓ ପୂଜାରୀ ପଣ୍ଡିତେ ଏଇ ମୃତ୍ୟୁରେ କାହିଁକି ନିଜକୁ ପାପିଷ୍ଠ ବୋଲି ମନେକଲେ ! ମନ୍ଦିର ଭିତରର ଠାକୁର ଓ ପୂଜକମାନଙ୍କୁ ମୁଁ ବିଭିନ୍ନ ସ୍ଥାନରେ ଓ ପରିସରରେ ଦେଖିବାକୁ ସୁଯୋଗ ପାଇଛି । ଓଡ଼ିଶା ବ୍ୟତିରେକ ଯେଉଁ ଅନ୍ୟ ତୀର୍ଥସ୍ଥାନମାନଙ୍କରେ ମୁଁ କିଛି ସମୟ କାଟିଛି, ସେଗୁଡିକ ଭିତରେ ତିରୁପତି, ମଦୁରାଇ, କନ୍ୟାକୁମାରୀ, ମଥୁରା, ପୁଷ୍କର, ଦେଓଘର, ଗୌହାଟୀ, ବଦ୍ରିନାଥ ଆଦି ସ୍ମରଣୀୟ । ଦେବାଦେବୀମାନଙ୍କର ଆସ୍ଥାନ ମୂଳରେ ଗୋଟାଏ ଆଧାତ୍ମିକଭାବ କିଛି ସମୟ ପାଇଁ ନିଶ୍ଚିତଭାବେ ମୁଣ୍ଡ ଟେକିଥାଏ ଏବଂ ଲୋକମାନଙ୍କର ଅଖଣ୍ଡ ବିଶ୍ୱାସ ଦେଖି ଅବାକ୍ ଲାଗେ । ଏଇ ସ୍ଥାନମାନଙ୍କରେ ପଣ୍ଡା ଓ ପୂଜକମାନଙ୍କ ଭୂମିକାକୁ ମୁଁ ବୁଝିବାକୁ ଚେଷ୍ଟା କରେ । ଧର୍ମସ୍ଥାନମାନଙ୍କରେ ଅନୁଷ୍ଠାନମାନ ଗଢ଼ିଉଠିଛି ଭକ୍ତମାନଙ୍କର ସୁବିଧା ପାଇଁ ଓ ବିଶ୍ୱାସକୁ ଆହୁରି ଗଭୀର କରିବା ପାଇଁ । ପୂଜା ସହ ଅର୍ଥ ଓ କ୍ଷମତାକୁ ଯୋଡି ଦିଆଯାଇଛି । ଜଣକ ପାଖରେ ଯଦି ଅର୍ଥ ଅଛି ଅବା କ୍ଷମତା ଅଛି, ସବୁ ଭିଡ ସତ୍ତ୍ୱେ ଜଣେ ଯାଇ ଦେବାଦେବୀଙ୍କ ପାଖରେ ମନମୁତାବକ ପୂଜା ଆରାଧନା କରିପାରିବ । ଦେବସ୍ଥାନମାନଙ୍କରେ ଅଧିକ ଅର୍ଥ ପ୍ରଦାନ କରିଲେ ସହଜରେ ଠାକୁରଙ୍କୁ ଦେଖିହେବ । ନହେଲେ ଲମ୍ବାଧାଡିରେ ଗୋଟିଏ ଦିନ ଛିଡାହେଲେ ମଧ ଠାକୁର ଦର୍ଶନ ସମ୍ଭବ ନୁହେଁ । ପୂଜକମାନଙ୍କର ସହାୟତା ବିନା ଅନେକ ସ୍ଥାନରେ ମନ୍ଦିରରେ ପ୍ରବେଶ କରିବା କାଠିକର ପାଠ । ସବୁ ମନ୍ଦିର ଓ ଦେବାଦେବୀ ଦର୍ଶନ ପରେ ମୋ ମନରେ ଗୋଟିଏ କଥା ସ୍ୱାଭାବିକ ଭାବେ ଆସିଥାଏ । ସାରା ପୃଥିବୀରୁ ପାପର ମାତ୍ରା କମୁଛି କି ? ଧର୍ମବିଶ୍ୱାସ ବଢ଼ିବା ଦ୍ୱାରା ମଣିଷ ପ୍ରତି ମଣିଷର ସ୍ନେହ ଓ ଭ୍ରାତୃତ୍ୱ ଭାବ ବଢ଼ିଛି କି ? ବର୍ତ୍ତମାନର ପୃଥିବୀରେ ହିଂସା ଓ ଅବିଶ୍ୱାସ କ୍ରମଶଃ ବଢ଼ିବାରେ ଲାଗିଛି । ଧର୍ମ ଓ ଅଧର୍ମର ବାତାବରଣ ସବୁଆଡେ ବ୍ୟାପିଯାଇଛି । ଧର୍ମ ନାମରେ ଅନେକ କିଛି ଅଧର୍ମ କାର୍ଯ୍ୟ ଏ ମଣିଷ କରୁଛି । ଅଧର୍ମର ବାଟରୁ ଏ ମଣିଷ ନିଜକୁ ସହଜରେ ମଧ ହଟାଇ ପାରୁ ନାହିଁ । ପାପ-ପୁଣ୍ୟ, ଧର୍ମ-ଅଧର୍ମ ଦ୍ୱନ୍ଦ୍ୱ ଭିତରେ ଏ ସମାଜ ବୁଡି ଯାଇଛି ।

କିନ୍ତୁ ଅସଲରେ ପାପ କ'ଣ ? ଏଥିପାଇଁ ଧର୍ମର ଅସଲ ତତ୍ତ୍ୱକୁ ବୁଝିବାକୁ ହେବ । ଧର୍ମର ମୂଳରେ ଥିବା ଭଗବତ୍ ବିଶ୍ୱାସକୁ ହିଁ ବୁଝିବାକୁ ହେବ । ନୈତିକତାର ଅର୍ଥ କ'ଣ ତାହା ଅନୁଭବ କରିବାକୁ ହେବ । ସବୁ ଧର୍ମ ଓ ସମସ୍ତ ସଂସ୍କୃତିରେ ଏହା ବିଭିନ୍ନ ଢ଼ଙ୍ଗରେ ଉଲ୍ଲେଖ କରାଯାଇଛି । ନୀତିନିୟମ ଓ ଧର୍ମ ସଂଶ୍ଳିଷ୍ଟ ସଦାଚାର ମଧ ଧର୍ମରେ ବିଧିବଦ୍ଧଭାବେ ସ୍ଥିରୀକୃତ ହୋଇଛି ସମସ୍ତଙ୍କୁ ମାନବା ପାଇଁ । ଏହା ନ ମାନିଲେ

ପାପ ବୋଲି କୁହାଯାଇଛି । ଧର୍ମଶାସ୍ତ୍ରକୁ ଅଧ୍ୟୟନ କିରଲେ ଏହା ଜାଣି ହେବ । ପୁରାତନ ଗ୍ରୀକ୍‌ଧର୍ମ ହେଉ ବା ହିନ୍ଦୁଧର୍ମ ହେଉ, ପାପ-ପୁଣ୍ୟର କଳ୍ପନା ଏକ ନିଷ୍ଠିତ ଢ଼ଙ୍ଗରେ କରାଯାଇଛି । ମଣିଷ ଯେଉଁ କାର୍ଯ୍ୟରେ ଲିପ୍ତ ହେଉଛି ବା ଯେଉଁ ଢ଼ଙ୍ଗରେ ଭାବୁଛି, ତାହ ମଧ୍ୟ ପାପ-ପୁଣ୍ୟର ନିକିତିରେ ଓଜନ କରାଯାଇ ପାରିବ ବୋଲି ଧର୍ମରେ ବ୍ୟବସ୍ଥା କରାଯାଇଛି ।

ଖ୍ରୀଷ୍ଟଧର୍ମରେ ସାତୋଟି ବଡ଼ ପାପର ଏକ ତାଲିକା ରହିଛି । ସେଗୁଡିକ ହେଲା ୧) ଗର୍ବ, ୨) ମାତ୍ରାଧିକ କ୍ଷୁଧା, ୩) କାମନା, ୪) ଈର୍ଷା, ୫) ଲୋଭ, ୬) ରାଗ ଓ ୭) ଅଳସୁଆମୀ । ହିନ୍ଦୁଧର୍ମରେ ଆର୍ତ୍ତ, କାମ, କ୍ରୋଧ, ମଦ ବା ବାସନା ଆଦି ପାପାସକ୍ତ ମଣିଷର ପ୍ରିୟ ବୋଲି ଉଲ୍ଲେଖ କରାଯାଇଛି । ସବୁ ଧର୍ମରେ ମଧ୍ୟ ପୁଣ୍ୟ ଓ ସୁଗୁଣମାନଙ୍କର ତାଲିକା କରାଯାଇଛି । ସେଥିରେ ଅଛି ଦୟାଭାବ, ଦାନଧର୍ମ, ଧୈର୍ଯ୍ୟ, ନମନୀୟତା, ସଚ୍ଚୋଟପଣିଆ, କର୍ମଚଞ୍ଚଳତା ଆଦି । ବର୍ତ୍ତମାନର ସଭ୍ୟତା ଓ ଆଧୁନିକତାକୁ ନେଇ ପାପର ସଂଜ୍ଞା ବଦଳି ଯାଇଛି ବୋଲି ଧର୍ମବିଶାରଦମାନେ କହୁଛନ୍ତି । ଆଧୁନିକ ପାପଗୁଡ଼ିକ ହେଲା - ପାରିବେଶିକ ପ୍ରଦୂଷଣ, ଅତ୍ୟଧିକ ଧନ ସଂଗ୍ରହ, ମାଦକ ଦ୍ରବ୍ୟ ସେବନ ଓ କାରବାର, ମାତ୍ରାଧିକ ଦାରିଦ୍ର୍ୟ ସୃଷ୍ଟି ଆଦି ଅନେକ କିଛି । ସମୟ ବଦଳିବା ସଙ୍ଗେ ସଙ୍ଗେ ପାପ-ପୁଣ୍ୟର ସଂଜ୍ଞା ମଧ୍ୟ ବଦଳିଯାଇଛି । ଗର୍ଭପାତ ଏକ ପାପ କି ନାହିଁ, ସେଥିନେଇ ଏବେ ମଧ୍ୟ ତର୍କ ଚାଲିଛି । ପରିବେଶ ବିନାଶ ହେତୁ ଏ ପୃଥିବୀରେ ମଣିଷ ସହ ଜୀବଜଗତ ଅନେକ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଅନେକ ଲୁପ୍ତପ୍ରାୟ ହୋଇଗଲେଣି । ମାଦକ ଦ୍ରବ୍ୟ ସେବନ ବ୍ୟାପକ ବ୍ୟବହାର ଯୋଗୁଁ ସାରା ପୃଥିବୀରେ ଅନେକ ବିଶୃଙ୍ଖଳା ଦେଖାଦେଇଛି । କିଛି ଲୋକ ଭୋଗବିଳାସରେ ରହିବା ପାଇଁ ବହୁଭାଗ ଲୋକଙ୍କୁ ଗରିବ କରି ରଖିଛନ୍ତି । ବେଳେବେଳେ ଏଥିପାଇଁ ହିଂସାକୁ ପ୍ରଶ୍ରୟ ଦିଆଯାଉଛି । ଗଣହତ୍ୟା ଆଜିକାଲି ନିତିଦିନିଆ ଘଟଣା ହୋଇଗଲାଣି । ପାପ-ପୁଣ୍ୟର ଊର୍ଦ୍ଧ୍ୱକୁ ଯିବାକୁ ପ୍ରତ୍ୟେକ ମଣିଷ ଚେଷ୍ଟା କରୁଛନ୍ତି ବୋଲି ଆମକୁ ସ୍ୱୀକାର କରିବାକୁ ହେବ । ଯେଉଁମାନେ ସାଧାରଣ ମାନବୀୟ ସ୍ତରରେ ଅଛନ୍ତି ଓ ଯେଉଁମାନେ ଅତିମାନବୀୟ ସ୍ତରରେ ଅଛନ୍ତି, ଉଭୟଙ୍କ ପାଇଁ ଏହା ପ୍ରଯୁଜ୍ୟ । ମହାତ୍ମାଗାନ୍ଧୀ ନିଜର ବ୍ୟକ୍ତିଗତ ଜୀବନରେ ଯାହା ପାପ ଓ ଅସତ୍ୟ ବୋଲି ମନେକରୁଥିଲେ, ତାହା ବିରୁଦ୍ଧରେ ଅହର୍ନିଶ ସଂଗ୍ରାମ ଚଳାଇ ଆସୁଥିଲେ । ତାଙ୍କର ସତ୍ୟାଗ୍ରହର ପରିକଳ୍ପନା ଓ ପ୍ରୟୋଗ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଅସ୍ପୃଶ୍ୟତା ଓ ଭେଦଭାବ ତାଙ୍କ ଦୃଷ୍ଟିରେ ଥିଲା ଏକ ମହାପାପ । ସତ୍ୟ ଓ ଅହିଂସାକୁ ଅସ୍ତ୍ରକରି ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ସେ ଯେଉଁ ସଂଗ୍ରାମ କରିଥିଲେ, ତାହା ଆଜିର ଏ ପୃଥିବୀରେ କଳ୍ପନାତୀତ । କିନ୍ତୁ ଏ ପୃଥିବୀରେ ଅସଲ ସତ୍ୟାଗ୍ରହୀମାନଙ୍କର ସଂଖ୍ୟା ଗୁରୁତରଭାବେ ହ୍ରାସ ପାଇଛି । ଏହା ଏକ କ୍ଷୋଭର ବିଷୟ । ଏଥିପାଇଁ ଅନ୍ୟାୟ ଓ ଅନୀତିର ମାର୍ଗ ପ୍ରସାରିତ ହେଲାବେଳେ, ସତ୍ୟ ଓ ନ୍ୟାୟ ଗୁରୁତର ଭାବରେ ସଂକୁଚିତ

ହୋଇଛି । ମଣିଷ ପ୍ରତି ମଣିଷର ସ୍ନେହ-ମମତା ମଧ୍ୟ କମିବାରେ ଲାଗିଛି । ଏଇଥିପାଇଁ ଗୋଟାଏ ଦେଶ, ଜାତି ଓ ଧର୍ମ ଅନ୍ୟ ଏକ ଦେଶ, ଜାତି ଓ ଧର୍ମକୁ ଧ୍ୱଂସ କରିବାକୁ ସବୁପ୍ରକାର ହିଂସ୍ର ଆଚରଣ ପ୍ରଦର୍ଶନ କରୁଛି ।

ଯେତେଥର ମୁଁ ମନ୍ଦିରକୁ ଯାଇଛି ଓ ଆଧ୍ୟାତ୍ମିକ ଭାବନାରେ ଉଦ୍‌ବେଳିତ ହୋଇଛି, ସେତେଥର ମୁଁ ଅନେକ ସଂଶୟ ଭିତରେ ପଡିଯାଇଛି । ମନ୍ଦିର ଭିତରେ ଓ ବାହାରେ ଅର୍ଥ ଉପାର୍ଜନ କରିବା ପାଇଁ ବସିଥିବା ହାଟବଜାରକୁ ମୁଁ ଗ୍ରହଣ କରିପାରିନାହିଁ । ଭଗବାନଙ୍କୁ ନେଇ ଯେମିତି ଏକ ବ୍ୟବସାୟ ଚାଲିଛି ଓ ଏହା କେତେଜଣଙ୍କୁ ଖୁବ୍ ଲାଭ ଦେଉଛି । ହାଟବଜାରରେ ବ୍ରହ୍ମଜ୍ଞାନର କିଣାବିକା ବେଶ୍ ଚାଲିଛି । ପାପ-ପୁଣ୍ୟ କିନ୍ତୁ ସତରେ କ'ଣ କ୍ରୟ-ବିକ୍ରୟର ସାମଗ୍ରୀ ? ମୁଁ ଦେଖିଛି ଯେ ଗରିବମାନେ ଭୋକରେ ଥିବେ, କିନ୍ତୁ ମନ୍ଦିର ଗଢ଼ିବା ଓ ତୀର୍ଥ ଦର୍ଶନରେ ଯିବା ପାଇଁ ସେମାନେ ପଇସା ସଞ୍ଚୟ କରୁଥିବେ । ମୁଁ ଦେଖୁଛି ସାହସୀ ମଣିଷମାନେ ସବୁଠାରୁ ଧର୍ମଭୀରୁ ହୋଇପଡିଛନ୍ତି । ପାପ-ପୁଣ୍ୟର ବିଚାରବୋଧ ଏକ ଚିରନ୍ତନ କଥା ବୋଲି ଶାସ୍ତ୍ରରେ କୁହାଯାଇଛି । ପାପ ମୋଚନ ପାଇଁ ପ୍ରାୟଶ୍ଚିତ ଓ ଅନୁଶୋଚନା ନିତାନ୍ତ ଆବଶ୍ୟକ ବୋଲି ଧାରଣା ଦିଆଯାଇଛି । ପାପର ସମୁଦ୍ରକୁ ଅତିକ୍ରମ କରିବା ପାଇଁ ଅସଲ ଜ୍ଞାନର ଆବଶ୍ୟକତା ଅଛି ବୋଲି ଶ୍ରୀମଦ୍ ଭଗବତ୍ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି । କିନ୍ତୁ ଅସଲ ଜ୍ଞାନ କ'ଣ ? ଯଦି ଏ ପୃଥିବୀରେ ମଣିଷକୁ ମଣିଷ ଭଳି ବଞ୍ଚିବାକୁ ଦିଆଯାଉ ନାହିଁ, ଏହାକୁ ଏକ ନିରାଟ ସତ୍ୟ ବୋଲି ଧରାଯାଏ, ତେବେ ଏ ପର୍ଯ୍ୟନ୍ତ ଅସଲ ଜ୍ଞାନର ସଂଜ୍ଞା ନିରୂପିତ ହୋଇନାହିଁ । ମଣିଷର ବଞ୍ଚିବା ପାପ-ପୁଣ୍ୟର ଊର୍ଦ୍ଧ୍ୱରେ ନିଶ୍ଚିତ ରହିଛି ।

❑ ❑ ❑

**୧୪**

# ଚରୈବେତି ଚରୈବେତି - ଚାଲ, ଆଗେଇଚାଲ

ଯଦି ମୋତେ କେହି ପ୍ରଶ୍ନକରେ ଯେ ଏ ପୃଥିବୀ ଏକ ମହାପ୍ରଳୟରେ ଧ୍ୱଂସ ହେବାର ଆଶଙ୍କା ଥିଲେ, କେଉଁ ଗୋଟିଏ ବାକ୍ୟ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଆଧ୍ୟାତ୍ମିକ ଜ୍ଞାନ ନୂତନ ପୃଥିବୀ ଓ ନୂତନ ସଭ୍ୟତା ପାଇଁ ବହନ କରିବ ମୁଁ ଦୃଢ଼ ଭାବେ କହିପାରେ ଯେ ଏହା ଐତରେୟ ବ୍ରାହ୍ମଣରେ ଉଲ୍ଲେଖ ହୋଇଥିବା ଦୁଇଟି ଶବ୍ଦ - ଚରୈବେତି, ଚରୈବେତି । ଅର୍ଥାତ୍ ଚାଲ ଆଗେଇ ଚାଲ । (ଏଇଭଳି ଏକ ଉକ୍ତି ନୋବେଲ୍ ପୁରସ୍କାର ବିଜେତା ଓ ଗତ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ପଦାର୍ଥ ବିଜ୍ଞାନୀ 'ପ୍ରଫେସର୍ ରିଚାର୍ଡ ଫିନ୍‌ମ୍ୟାନ୍' - Prof. Richard Feynman କହିଛନ୍ତି "ଯଦି ପୃଥିବୀ ଧ୍ୱଂସ ହୋଇଯାଏ ଓ ଗୋଟିଏ ବାକ୍ୟରେ ଏ ସଭ୍ୟତାର ସବୁଜ୍ଞାନ ଓ ବିଜ୍ଞାନକୁ ଆଗାମୀ ପୃଥିବୀ ପାଇଁ ସଂରକ୍ଷିତ ରଖାଯାଏ ତାହା ହେବ - ସାରାପୃଥିବୀ କ୍ଷୁଦ୍ରକଣିକାମାନଙ୍କର ସମଷ୍ଟି ଯେଉଁଗୁଡିକ ଟିକିଏ ଦୂରରେ ଥାଏ ପରସ୍ପରକୁ ଆକର୍ଷଣ କରନ୍ତି ଏବଂ ଏକାଠି ଲାଗିଗଲେ ବିକର୍ଷିତ ହୁଅନ୍ତି ।" -Lectures on Physics by Richard Feynman)

ଆଜି ମୋର ମନେ ପଡୁଛି ଯେ ଅନେକ ବର୍ଷତଳେ ସ୍କୁଲରେ ଛାତ୍ରଥିବା ବେଳେ ଆମର ପ୍ରିୟ ଚିତ୍ତଭାଇ (ପ୍ରଫେସର୍ ଚିତ୍ତରଞ୍ଜନ ଦାସ)ଙ୍କ 'ଜୀବନ ବିଦ୍ୟାଳୟ' ବହି ପଢ଼ି ମୁଁ ସାରାଜୀବନ ପାଇଁ କାହିଁକି କେଜାଣି ଉଦ୍‌ବୁଦ୍ଧ ହୋଇଥିଲି । ସ୍କୁଲରେ ଆମର କ୍ରାଫ୍‌ଟ ଶିକ୍ଷକ ବିଭୂତି ବାବୁ ଚିତ୍ତଭାଇଙ୍କୁ ଚମ୍ପତିମୁଣ୍ଡା ଦିନରୁ ଜାଣିଥିଲେ ଓ ତାଙ୍କର ବହି ସବୁ ପଢ଼ିବାକୁ ଆମକୁ ଉତ୍ସାହିତ କରିଥିଲେ । ସମ୍ଭବତଃ ତାଙ୍କରି ପ୍ରେରଣାରେ ଆମେ ସବୁବନ୍ଧୁମାନେ 'ଶିଳାତୀର୍ଥ' ଓ 'ଜୀବନ ବିଦ୍ୟାଳୟ' ପଢ଼ିଥିଲୁ ଓ ଆମର ଜୀବନର ଦୃଷ୍ଟିଭଙ୍ଗୀ ଓ ଗତିପଥ ଅତି ସଚେତନତାର ସହ ନିର୍ଦ୍ଧାରିତ କରିଥିଲୁ । ମୁଁ ଅତି ସହଜ ଓ ସଚ୍ଚୋଟ ଭାବେ ସ୍ୱୀକାର କରିପାରେ ମୁଁ ପଢ଼ିଥିବା ପୃଥିବୀର ଅଗଣିତ ପୁସ୍ତକ ତାଲିକାରେ ଚିତ୍ତଭାଇଙ୍କ ଏ ଦୁଇଟି ବହି ଅନନ୍ୟ, ଅସାଧାରଣ ଓ ପ୍ରଭାବଶାଳୀ । ଦୁଃଖର କଥା ଯେ ଏ ବହି ଦୁଇଟି ଅନ୍ୟଭାଷାରେ ଅନୁବାଦ ହୋଇପାରି ନାହିଁ । ଚିତ୍ତଭାଇଙ୍କ ଅସଂଖ୍ୟ ପୁସ୍ତକ ଭିତରେ ଏ ବହି ଦୁଇଟି ଭିନ୍ନ ଏବଂ ଅଦ୍ୱିତୀୟ । ମୋ ମତରେ ଏହା ତାଙ୍କର ଶ୍ରେଷ୍ଠକୃତି ଯାହା ମୋ ଭଳି ଓଡ଼ିଶାରେ ଅନେକଙ୍କ ମନକୁ ଛୁଇଁଥିବ । ଚିତ୍ତଭାଇ ୧୯୫୫ ମସିହା ଅଗଷ୍ଟ ୨୬ ତାରିଖ ଦିନ ସମ୍ଭବତଃ ତାଙ୍କର ଦିନଲିପିରେ ଏହି "ଚରୈବେତି,

ଚେରିବେତି" ବିଷୟରେ ସବିଶେଷ ଲେଖିଛନ୍ତି । ମୋର ମନେ ହୁଏ ଚମ୍ପତିମୁଣ୍ଡାର ଛାତ୍ରମାନଙ୍କୁ ଦିଗ୍‌ଦର୍ଶନ ଦେବାକୁ ଯାଇ କେତୋଟି ଶ୍ଳୋକ ଐତରେୟ ବ୍ରାହ୍ମଣରୁ ଉଦ୍ଧାର କରିଛନ୍ତି ଓ ତା'ର ସରଳ ଓଡ଼ିଆ ଅନୁବାଦ କରିଛନ୍ତି । ପାଠକମାନଙ୍କ ପାଇଁ ମୁଁ ତାହା ଅବିକଳ ଉଦ୍ଧାର କରୁଛି ।

"ଯିଏ ଚାଲିଛି, ଫୁଲ ଫୁଟିବା ପରି ତା'ର ଦେହରେ ଅପୂର୍ବ ଶୋଭା ପ୍ରସ୍ଫୁଟିତ ହୋଇ ଉଠେ । ତା'ର ଆତ୍ମା ଦିନକୁ ଦିନ ବିକଶିତ ହୋଇ ରହେ । ଏହି ଚାଲିବା ଦ୍ୱାରା ତାର ପାପମାନ ଆପେ ଆପେ ଅବସନ୍ନ ହୋଇପଡ଼େ । ପାପର ସମସ୍ୟା ଲାଗି ତା'କୁ ଆଉ ବ୍ୟସ୍ତ-ଚିନ୍ତିତ ହେବାକୁ ପଡ଼େ ନାହିଁ ।

ଅତଏବ ଚାଲ, ଆଗେଇ ଚାଲ ।"

"ଯିଏ ବସି ରହିଛି, ତା'ର ଭାଗ୍ୟ ମଧ୍ୟ ବସି ରହିଛି, ଯିଏ ଉଠି ଠିଆ ହୋଇଛି, ତା'ର ଭାଗ୍ୟ ମଧ୍ୟ ଉଠି ଠିଆ ହୋଇଛି । ଯିଏ ଆଗକୁ ଚାଲିଛି, ତା'ର ଭାଗ୍ୟ ମଧ୍ୟ ଆଗକୁ ଚାଲିବ ।

ଅତଏବ ଚାଲ, ଆଗେଇ ଚାଲ ।"

"ଶୋଇ ପଡ଼ିବାଟା ହେଉଛି କଳିଯୁଗ, ନିଦ ଭାଙ୍ଗିଲେ ଦ୍ୱାପର, ଉଠି ଠିଆ ହେଲେ ତ୍ରେତା, ଆଉ ଆଗକୁ ଚାଲିଲେ ସତ୍ୟଯୁଗ

ଅତଏବ ଚାଲ, ଆଗେଇ ଚାଲ ।"

"ଚାଲିବା ହିଁ ଅମୃତ ଲାଭ, ଚାଲିବା ହିଁ ଚାଲିବାର ସ୍ୱାଦୁଫଳ । ଏହି ସୂର୍ଯ୍ୟର ଆଲୋକ ସମ୍ପଦକୁ ଚାହିଁ ଦେଖ, ସୂର୍ଯ୍ୟ ସୃଷ୍ଟିର ଆଦିକାଳରୁ ଚାଲିଛି, ତଥାପି ଦିନକ ସକାଶେ ମଧ୍ୟ କ୍ଳାନ୍ତ ହୋଇନାହିଁ ।

ଅତଏବ ଚାଲ, ଆଗେଇ ଚାଲ ।"

ଚିତ୍ତଭାଇଙ୍କ "ଶିଳାତୀର୍ଥ" ବହିଟିକୁ ମୁଁ ୫୦ରୁ ଊର୍ଦ୍ଧ୍ୱଥର ପଢ଼ିଥିବି । ଅନେକ ବହି କିଣି ବନ୍ଧୁମାନଙ୍କୁ ଉପହାର ଦେଇଥିବି । ହିମାଳୟ ଯାତ୍ରାବେଳେ ଏ ବହିଟି ମୋର ହାତରେ ଥାଏ ଓ ଚରୈବେତି, ଚରୈବେତିକୁ ମନେ ମନେ ଉଚ୍ଚାରଣ କରୁଥାଏ । ଏକଥା ସତ ଯେ ଐତରେୟ ବ୍ରାହ୍ମଣ ବହିକୁ ପୁଞ୍ଜି କରି ମୁଁ ବେଦ ବେଦାନ୍ତ, ଗୀତା ଓ ଉପନିଷଦ ଆଦି ବୁଝିବାକୁ ସାହସ କରିନାହିଁ । ବେଳେବେଳେ ଜ୍ଞାନୀ ଗୁରୁଜନମାନେ ପ୍ରବଚନ ଦେଲା ବେଳେ ଈଶୋପନିଷଦ, କେନୋପନିଷଦ, ମାଣ୍ଡୁକ୍ୟ ଉପନିଷଦ, ଐତରେୟ ଉପନିଷଦ, ତୈତ୍ତିରୀୟ ଉପନିଷଦ ଓ କଠୋପନିଷଦ ଆଦି ମୁଖ୍ୟ ରଚନାର ଯେଉଁ କିୟଦଂଶ ଶୁଣିବାକୁ ମିଳେ ଓ ସେଗୁଡ଼ିକର ସହଜ ବ୍ୟାଖ୍ୟା ହୃଦୟସ୍ପର୍ଶୀ ହୋଇଥାଏ । ଦ୍ୱୈତବାଦ ଓ ଅଦ୍ୱୈତବାଦ ଭିତରେ ଯେଉଁ ମୌଳିକ ପାର୍ଥକ୍ୟ ରହିଛି ତାହାର ଭେଦ ବୁଝିବାକୁ ମନ ଡାକେ । ଭାରତୀୟ ଦର୍ଶନ ଓ ଧର୍ମଶାସ୍ତ୍ରମାନେ ଯୁଗେ ଯୁଗେ କିପରି ପୃଥିବୀରେ ଜ୍ଞାନାଲୋକ ବିତରଣ କରିଛନ୍ତି ଓ ଏକ ମହନୀୟ ଜୀବନ ଯାପନ କରିବାର

ଆହ୍ୱାନ ଦେଇଛନ୍ତି ତାହା ଜାଣି ଅବାକ୍ ଲାଗେ । ସ୍କୁଲ ଜୀବନରେ ଏସବୁ ଶାସ୍ତ୍ର ଓ ଦର୍ଶନ ସମାହିତ ପୁସ୍ତକମାନ ପଢ଼ିବା ଓ ବୁଝିବା ସହଜ କଥା ନୁହେଁ । ଗଣିତ ଓ ବିଜ୍ଞାନକୁ ଜଣେ ଛାତ୍ର ସହଜରେ ଅନ୍ତଃସ୍ଥ କରିପାରିବ - କିନ୍ତୁ ବିନା ପ୍ରବଚନରେ ଶ୍ରୀମଦ୍ ଭଗବତ୍ ଗୀତାକୁ ହୃଦୟଙ୍ଗମ କରିବା କାଠିକର ପାଠ । ଜଣେ ତର୍କ ଓ ବିତର୍କ କରିବାକୁ ଚାହିଁବ ଭୌତିକ ପୃଥିବୀ ବିଷୟରେ । କିନ୍ତୁ ଆତ୍ମା, ବ୍ରହ୍ମ ଆଦି କେବଳ ଆଧ୍ୟାତ୍ମିକ ସ୍ତରରେ ଅନୁଭବ କରିହେବ । କେଜାଣି କାହିଁକି ବୌଦ୍ଧିକ ସ୍ତରରେ ମୁଁ ବିଜ୍ଞାନ ଓ ଗଣିତର ଛାତ୍ର ହେବାକୁ ମନସ୍ଥ କରିଥିଲି । ଏ ଦିଗରେ ମୋର କୁଆଡେ ଖୁବ୍ ପ୍ରତିଭା ଓ ଅନ୍ୱେଷଣ ଥିଲା ବୋଲି ଛାତ୍ର ଜୀବନର ବନ୍ଧୁମାନେ ମନେ ପକାଇ ଦିଅନ୍ତି । ଦର୍ଶନର ଛାତ୍ର ହେବା ସେ ସମୟରେ ମୋ ପାଇଁ କଦାପି ଗ୍ରହଣ ଯୋଗ୍ୟ ନଥିଲା । ତଥାପି କେବେ କେମିତି ମୁଁ ଅନ୍ୟ ଏକ ଗବାକ୍ଷ ଦେଇ ସେ ଦିଗକୁ ଦୃଷ୍ଟି ନିକ୍ଷେପ କରୁଥିଲି । ବିଜ୍ଞାନ, ଗଣିତ ଓ ଦର୍ଶନର ସମନ୍ୱୟ କେମିତି ହୋଇଛି ଓ ଏହାର ରହସ୍ୟ କିଏ ଉନ୍ମୋଚନ କରିଛି, ମୁଁ ନିଶ୍ଚିତ ଜାଣିବାକୁ ଚାହିଁଥିଲି କିନ୍ତୁ ଚରୈବେତି, ଚରୈବେତିର ଅସଲ ମର୍ମ କଥା କ'ଣ ? କେଉଁଠି ଏ ମନ ଓ ପ୍ରାଣ ନଅଟିକି ଯିବା ପାଇଁ ଯେମିତି ଏହାର କଳ୍ପନା କରାଯାଇଛି ।

ଆଗେଇ ଚାଲିବା ସହଜ କଥା କି ? ଅର୍ଥପୂର୍ଣ୍ଣ ଭାବେ ଆଗେଇ ଚାଲିବା ସବୁଠାରୁ ଦୁରୂହ ବ୍ୟାପାର ବୋଲି ମୁଁ ସବୁବେଳେ ଅନୁଭବ କରିପାରୁ ଥିଲି । ଘରୁ ରାଜରାସ୍ତାକୁ ପାଦ ଦେବା ମାତ୍ରକେ ମୋତେ ଭାବିବାକୁ ପଡୁଥିଲା ଯେ ମୋର ଲକ୍ଷ୍ୟସ୍ଥଳ କେଉଁ ଆଡକୁ । ବାମ ପଟେ ଗଲେ ବଜାର ଓ ଚାକଚକ୍ୟ ଭରା ଆକର୍ଷଣ । ଡାହାଣ ପଟକୁ ଗଲେ ମନ୍ଦିର, ନଦୀ, ସ୍କୁଲ ଓ ତାହାକୁ ଛୁଇଁଥିବା ଅରଣ୍ୟାନୀ । ସବୁ ଯେମିତି ଦ୍ୱିଧାର ଝଲକ । ମନ ଡାକୁଛି ବଜାରର କୋଳାହଳରେ ସାମିଲ ହେବାକୁ । ପ୍ରାଣ ଡାକୁଛି ମହାଜାଗତିକ ଶକ୍ତି ସହ ସମ୍ମିଳିତ ହେବାକୁ । ମୁଁ କିନ୍ତୁ ପିଲାଦିନେ ସ୍କୁଲ, ନଦୀ ଏବଂ ସବୁଜ ସୁନ୍ଦର ଅରଣ୍ୟକୁ ବେଶି ଭଲ ପାଇଥିଲି । ଖରା, ବର୍ଷା ଓ ଶୀତକୁ ନ ଡ଼ରି ମୁଁ ସ୍କୁଲକୁ ଯାଉଥିଲି ଓ ଖୋଜୁ ଥିଲି ପ୍ରେମ ଓ ବନ୍ଧୁତ୍ୱର ପରିଭାଷାକୁ । ସବୁ ସନ୍ଧ୍ୟାରେ ବସୁଥିଲି ନଦୀକୂଳରେ- ଗୋଟାଏ ଅଭିବ୍ୟକ୍ତି ଅନୁଭବ କରିବାକୁ ଯେ ବହମାନ ନଦୀ ଓ ଆଗକୁ ଆଗକୁ ଉନ୍ମୋଚିତ ହେଉଥିବା ସମୟ ଅଟକୁ ନାହାନ୍ତି କାହା ପାଇଁ । ଆମ ସ୍କୁଲର ସାମ୍ନାରେ ରାଣୀ ପାର୍କ ଓ ଏକ ସୁରକ୍ଷିତ ଘଞ୍ଚ ଜଙ୍ଗଲ । ସ୍କୁଲର ଅନତିଦୂରରେ ଗୋଟିଏ ଗାଁ ଓ ତାକୁ ଛୁଇଁ ଛୋଟ ପାହାଡଟିଏ । ମୁଁ ବନ୍ଧୁମାନଙ୍କୁ ସାଙ୍ଗରେ ନେଇ ଆବିଷ୍କାରକର ମାନସିକତା ସହ ପିରଚିତ କରାଉଥିଲି । ସେମାନଙ୍କ କହୁଥିଲି- ଲୁଇ କାରୋଲଙ୍କ "ଆଲିସ୍ ଆଡ୍‌ଭେଞ୍ଚର ଇନ୍ ୱାଣ୍ଡରଲ୍ୟାଣ୍ଡ" (Alice's Adventure in Wonderland)ର କାହାଣୀ । ଆଲିସ୍ ପଚାରୁଛି ଚେସାୟାର ବିରାଡିକୁ - "କହିବୁ କି ମୋତେ, ଏଠାରୁ କେଉଁବାଟରେ ଯିବି ? ବିରାଡି ଆଲିସ୍‌କୁ କହୁଛି - 'ତୁ କେଉଁଠିକୁ ଯିବାକୁ ଚାହୁଁଛୁ ?' ଆଲିସ୍ କହିଛି ଯେକୌଣସି ଦିଗକୁ ଗଲେ ଚଳିବ । ବିରାଡି ଉତ୍ତର ଦେଇଛି - 'ତା'ହେଲେ

ଯେ କେଉଁ ବାଟରେ ଗଲେ ବି ଚଳିବ' । ଆମେ ସମସ୍ତେ ଯେମିତି ଆଲିସ୍ ଭଳି ଠେକୁଆ ଗାତରେ ପଡିଯାଇଛେ ଓ ସବୁକ୍ଷେତ୍ରରେ ସଂଶୟ ଓ ସଂଦିଗ୍ଧତା ବିରାଜମାନ କରୁଛି । ଯାହା ଦେଖୁଛେ, ଯାହା ଶୁଣୁଛେ ଓ ଯାହା ଅନୁଭବ କରୁଛେ, ସେ ସବୁ ଭିତରେ ଯେମିତି ଅନେକ ଅର୍ଥ ଅଛି । ମୁଁ ଭାବୁଛି "ଆଲିସ୍ ଇନ୍ ୱାଣ୍ଡର ଲ୍ୟାଣ୍ଡ' ପୁସ୍ତକଟିର କାହାଣୀ ଓ ରହସ୍ୟ ଆଜି ପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରଲୁବ୍ଧ କରି ରଖିଛି ।

"ଜୀବନ ବିଦ୍ୟାଳୟ" ବହିଟି ଜଣେ ସନ୍ଧାନୀ ମଣିଷର ଜୀବନ ଗାଥା । ଜଣେ ମହନୀୟତାର ସହ ବଞ୍ଚିବ ଓ ଅନ୍ୟ ସମସ୍ତଙ୍କୁ ସେଇ ମହନୀୟତା ସହ ବଞ୍ଚିବାକୁ ଦେବ ଏହା ବୋଧେ ଜୀବନ ବିଦ୍ୟାଳୟର ମୂଳ ତତ୍ତ୍ୱ ଥିଲା । 'ଶିଳାତୀର୍ଥ' ବହିରେ ଚିତ୍ତଭାଇ ହିମାଳୟ ଦର୍ଶନକୁ ଏକ ଭିନ୍ନ ଦର୍ଶନ ରୂପେ ଆତ୍ମିକ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି –

"ଜୀବନରେ ଅଧିକ ସହଜ ହୋଇ ଶିଖିବାକୁ ମୁଁ ହିମାଳୟ ଯାଏ ।

ଅଧିକ ଶାନ୍ତ ହୋଇ ଜୀବନର ଭାର ବହନ କରି ଶିଖିବା ଲାଗି ମୁଁ ହିମାଳୟକୁ ଯାଏ ।"

"ମୋର ଜୀବନର ମାନଚିତ୍ର ଭିତରେ ସଂସାର ଓ ହିମାଳୟ ଉଭୟ ଲାଗି ସ୍ଥାନ ରହିଛି ।

"ସଂସାରରେ ଥିବାବେଳେ ମୁଁ ହିମାଳୟ ଠାରୁ ପ୍ରେରଣା ନେବାକୁ ଚେଷ୍ଟା କରିଥାଏ ଏବଂ ହିମାଳୟରେ ସଂସାରକୁ ଅଧିକ ସୁନ୍ଦର କରି ଦେଖିବାକୁ ଚେଷ୍ଟା କରିଥାଏ । ମଣିଷକୁ ଅଧିକ ସୁନ୍ଦର କରି ଦେଖିବାକୁ ଚେଷ୍ଟା କରିଥାଏ ।" ଏଇ ଅଳ୍ପ କିଛିଦିନ ତଳେ ମୁଁ ବଦ୍ରିନାଥ ଯାତ୍ରାବେଳେ ଚିତ୍ତ ଭାଇଙ୍କ ଉକ୍ତି ସବୁକୁ ମର୍ମେ ମର୍ମେ ଅନୁଭବ କରିଛି । ଛୋଟ ବଡ ଅନେକ ପର୍ବତ ମୁଁ ଅତି ପାଖରୁ ଦେଖିଛି ଓ ସେ ସବୁ ଆରୋହଣ କରିବାର ଶାରୀରିକ ଓ ମାନସିକ ପ୍ରୟାସ କରିଛି । ଜୀବନର ସବୁ ମୁହୂର୍ତ୍ତରେ ପାଇଛି "ଚାଲ, ଆଗେଇ ଚାଲ"ର ଝଲକ । ମୁଁ ଥକି ଯାଇନାହିଁ । ମୁଁ ହାରି ଯାଇନାହିଁ । ମୁଁ ପଛକୁ ଫେରି ନାହିଁ ।

❑ ❑ ❑

# ୧୫

# ଚରୈବେତି ଚରୈବେତି : ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲର କାହାଣୀ

ଜୀବନର ଏକଘଡି ସନ୍ଧି ମୁହୂର୍ତ୍ତରେ ଯେତେବେଳେ ବଞ୍ଚିବା ବା ମରିବା ଅର୍ଥଶୂନ୍ୟ ହୋଇଯାଏ ସେତେବେଳେ ଜଣେ କିଛି ସମୟ ପାଇଁ ସମୁଦ୍ରର ବେଳାଭୂମିରେ ବସିବା ଓ ଆତ୍ମନିରୀକ୍ଷଣ କରିବା ନିତାନ୍ତ ଆବଶ୍ୟକ । ଏକଥା ମୁଁ ନିଜର ଅନୁଭୂତିରୁ ହିଁ କହୁଛି । ଉପରେ ଅନନ୍ତ ଆକାଶ, ତଳେ ବିଶାଳ ସମୁଦ୍ର । ଲହଡିମାନେ ଆସୁଛନ୍ତି । କୂଳରେ ଅଡ଼ାଡି ହୋଇପଡୁଛନ୍ତି ଓ ପୁଣି ଫେରିଯାଉଛନ୍ତି । ଆବହମାନ କାଳରୁ ଏହା କେତେ କବି, ଚିତ୍ରକର, ଦାର୍ଶନିକ ଓ ଭାବୁକମାନଙ୍କୁ ଆକର୍ଷଣ କରିଆସୁଛି । ଅନେକଙ୍କ ଜୀବନର ଗତିପଥ ବଦଳି ଯାଇଛି ସମୁଦ୍ରକୁ ନିଜଭିତରେ ଠାବ ଦେଇ । ସମୁଦ୍ରକୁ ଆପଣାର କରିଲେ ତା'ସହ କଥା ହେବା ସମ୍ଭବ ହୋଇଥାଏ ଓ ଏକାକୀତ୍ୱ ଲୋପପାଇଥାଏ । ଆମର ତାରୁଣ୍ୟରେ, ସତୁରୀ ଦଶକର ପ୍ରାରମ୍ଭରେ ଏଇମିତି ଏକ ଜ୍ୟୋତ୍ସ୍ନା ବିଧୌତ ରାତ୍ରିରେ ଆମେ କେତେଜଣ ବନ୍ଧୁ କୋଣାର୍କର ସମୁଦ୍ରବାଲିରେ ଶୋଇ ଶୋଇ ଜୀବନର ଗତିପଥ ନିର୍ଦ୍ଧାରଣ କରୁଥିଲୁ । ରାତ୍ରିର ଶେଷ ପ୍ରହରରେ ଆମେ ଦେଖିଲୁ ଯେ ଲହଡି ଆମର ପାଦକୁ ଛୁଇଁଛି । ଆମେ ଏକ ନବଚେତନାରେ ଉଦ୍‌ବୁଦ୍ଧ ହୋଇ ଫେରିଥିଲୁ ସେଦିନ ସକାଳୁ । ସମୁଦ୍ରକୁ ସାକ୍ଷୀକରି ଜୀବନରେ ଆହୁରି ଆଗକୁ, ଆଗକୁ ଯିବାକୁ ଆମେ ଯେମିତି ସଂକଳ୍ପବଦ୍ଧ ହୋଇଥିଲୁ । କିନ୍ତୁ ଜୀବନର ଉନ୍ମାଦନା ଓ ପ୍ରଚଣ୍ଡ ଦୁର୍ବଳତା ଆମକୁ ଭାଙ୍ଗି ଦେଇଥିଲା ଗୋଟାଏ ସମୟରେ । ଆମେ ସବୁବନ୍ଧୁ ପୁଣି ସମୁଦ୍ରବେଳାରେ ଉପସ୍ଥିତ ହୋଇଥିଲୁ ପୁନଃଆବିଷ୍କାର ପାଇଁ । ସେତେବେଳକୁ ଆମେ ସମସ୍ତେ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ (Jonathan Livingston Seagull) ବହିଟି ପଢ଼ି ଦେଇଥିଲୁ । ଆମ ଜୀବନର ନୂତନ ପରିଭାଷା ନିର୍ଦ୍ଧାରଣ କରିବା ପାଇଁ ପୁରୀ ସମୁଦ୍ରତଟରେ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍‌କୁ ଖୋଜିବା ପାଇଁ ଅନେକ ସମୟ କାଟିଥିଲୁ । ସିଗଲ୍‌ମାନେ କେଉଁଠି ବସା ବାନ୍ଧନ୍ତି ଓ କେଉଁଭଳି ଜୀବନ କାଟନ୍ତି ତାହା ମଧ୍ୟ ଅଧ୍ୟୟନ କରିବାକୁ ଚେଷ୍ଟା କରିଥିଲୁ । ମଣିଷବସତି ଠାରୁ ଦୂରରେ ରାତ୍ରିଯାପନ କରୁଥିବା ସିଗଲ୍‌ମାନେ ସକାଳ ହେଲା ମାତ୍ରକେ ଉଠି ଆସନ୍ତି ଓ ନୋଳିଆମାନଙ୍କର ଫେରିବାକୁ ଅପେକ୍ଷା କରୁଥାଆନ୍ତି । ସେମାନଙ୍କର

ଜାଲରୁ ମାଛମାନଙ୍କୁ ଝେରାଇ ନେବାକୁ ଚେଷ୍ଟାକରୁଥାଆନ୍ତି । ତଳଉପର ହୋଇ ଆକାଶ ମାର୍ଗରେ ଚକ୍‌କର କାଟୁଥାଆନ୍ତି । କିନ୍ତୁ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ କେଉଁଠି ? ତା'କୁ ଚିହ୍ନିବା ପାଇଁ ଆମେ ସବୁ ବନ୍ଧୁମାନେ ଦୂର ଦୂରାନ୍ତର ଦିଗବଳୟ ପର୍ଯ୍ୟନ୍ତ ଦୃଷ୍ଟିନିକ୍ଷେପ କରୁଥାଉ ।

ସତୁରୀ ଦଶକରେ ରିଚାର୍ଡ ବାକ୍ (Richard Bach)ଙ୍କ ଲିଖିତ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ ବହିଟିର ମୂଳରଚନା ଆମେ ପଢ଼ିବା ପୂର୍ବରୁ ରିଡର୍ସ ଡାଇଜେଷ୍ଟ ପତ୍ରିକାର ପ୍ରକାଶିତ ପୁସ୍ତକର ସାରାଂଶ ପଢ଼ି ଖୁବ୍ ଆକର୍ଷିତ ହୋଇଥିଲୁ । ଛୋଟ ଏ ବହିଟି ପୃଥିବୀ ସାରା ଚହଳ ପକାଇଛି ବୋଲି 'ଟାଇମ୍' (Time) ଓ 'ନିୟୁଜଉଇକ୍' (Newsweek) ପତ୍ରିକାରେ ଆଲୋଚିତ ହୋଇଥିଲା । 'ବେଷ୍ଟ ସେଲର' ତାଲିକାରେ ଏ ବହିଟି ଅନେକ ସପ୍ତାହ ଧରି ମୁଖ୍ୟସ୍ଥାନ ଅଧିକାର କରିଥିଲା । ଯେଉଁଦିନ ମୂଳ ବହିଟି ହସ୍ତଗତ ହେଲା, ଏକାବେଳେକେ କେତେ କପି କିଣିଥିଲୁ ଆମେ । ୧୯୭୨ ମସିହାରେ ପଢ଼ିଥିବା ବହିମାନଙ୍କ ଭିତରେ ଏହା ସବୁଠାରୁ ଶ୍ରେଷ୍ଠ ବହିଥିଲା ବୋଲି ଆମେ ସବୁ ବନ୍ଧୁମାନେ ସ୍ୱୀକାର କରୁଥିଲୁ । ବହିଟିର କାହାଣୀ ସରଳ । ଭାଷାରେ କବିତାର ଛଟା । ବହିସାରା ସିଗଲ୍‌ର ଚିତ୍ର ବିଭିନ୍ନ ଢ଼ଙ୍ଗରେ । ବହିଟିକୁ ଏକା ନିଶ୍ୱାସରେ ଜଣେ ପଢ଼ି ପାରିବ ଏଥିରେ ସନ୍ଦେହ ନାହିଁ । ଏଇଥିପାଇଁ ଆମେ ଏ ବହିଟିକୁ ଅନେକଥର ପଢ଼ିଥିବୁ ବିଭିନ୍ନ ପରିସରରେ । ରିଚାର୍ଡ ବାକ୍‌ଙ୍କୁ ଧନ୍ୟବାଦ ଦେଇଥିଲୁ ଏ ବହିଟି ଲେଖିବା ପାଇଁ । ବଞ୍ଚିବାର ଅର୍ଥ ଆଉ କେହି ଏତେ ସହଜରେ ଓ ସଚିତ୍ର ଉପସ୍ଥାପନାରେ ବୁଝାଇ ପାରି ନାହିଁ ବୋଧହୁଏ । ଲେଖକ ରିଚାର୍ଡ ବାକ୍ ଜଣେ ପାଇଲଟ୍ । ଉଡାଜାହାଜ ଆକାଶରେ ଚଳାଉଥିବା ବେଳେ ସେ ଜୀବନ ଦର୍ଶନର ମୂଳତତ୍ତ୍ୱ ଗୁଡିକୁ ନୂଆ ଭାବେ ବୁଝିଛନ୍ତି ନିଶ୍ଚିତ । ଏଥିପାଇଁ ତାଙ୍କର ସବୁବହିରେ ଜୀବନ ଓ ଭଲପାଇବାର ଝଲକ ରହିଛି । ସ୍ଥାନ ଓ ସମୟର ସୀମା ଅତିକ୍ରମ କରିବାକୁ ସେ ଯେମିତି ଆହ୍ୱାନ ଦେଉଛନ୍ତି । ମଣିଷ ଜନ୍ମ ଓ ମୃତ୍ୟୁ ପାଇଁ ଏ ପୃଥିବୀକୁ ଆସିନାହିଁ । ଆସିଛି ଆନନ୍ଦ ଅନୁଭବ ପାଇଁ, ଶିଖିବା ପାଇଁ, ଆବିଷ୍କାର କରିବା ପାଇଁ ଓ ସବୁବେଳେ ଭଲ ପାଇବା ପାଇଁ ।

ବହିଟିରେ ତିନୋଟି ଅନୁଚ୍ଛେଦ ଅଛି । ପ୍ରଥମ ଅନୁଚ୍ଛେଦରେ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ ତାର ଦୈନନ୍ଦିନ ଓ ଅର୍ଥହୀନ ଜୀବନକୁ ପ୍ରଶ୍ନ କରିଛି । ସିଗଲ୍ କ'ଣ କେବଳ ସମୁଦ୍ର ପୃଷ୍ଠରେ ଖାଦ୍ୟ ସଂଗ୍ରହ ପାଇଁ ମାଛ ଅପେକ୍ଷାରେ ଉଡି ବୁଲୁଥିବ ? ତା'ର କ'ଣ ଉପରକୁ ଆହୁରି ଉପରକୁ ଉଡିବାର ସାହସ ଓ ପ୍ରୟାସ ନାହିଁ ? ଏକ ଅଦ୍‌ଭୁତ ଆକର୍ଷଣରେ ସେ ଉପରକୁ ଉଡିବାକୁ ଚାହିଁଛି । ଯେତିକି ଉପରକୁ ଉଡିଛି, ଏକ ଦିବ୍ୟଭାବନାରେ ଉଦ୍‌ବୁଦ୍ଧ ହୋଇଛି, ଉପରକୁ ଉଡିବା ଓ ତଳକୁ ଖସିବାରେ ସେ ସିଗଲ୍ ଇତିହାସରେ ନୂତନ ରେକର୍ଡ଼ କରିଛି । ସିଗଲ୍ ସମାଜରେ ଏପରି ଉପରକୁ ଉଡିବା କେବେ ଦେଖା ଦେଇନଥିଲା । ଏ ନୂଆ କଥାକୁ ସିଗଲ୍ ସମାଜ ଗ୍ରହଣ ନକରି ନିନ୍ଦା କରିଛି । ଜନାଥନ୍

ଲିଭିଙ୍ଗ୍‌ଷ୍ଟନ ସିଗଲ୍‌କୁ ତା'ର ସମାଜରୁ ବାସନ୍ଦ କରାଯାଇଛି । ଏଥିରେ ଜନାଥନ୍ ବିଚଳିତ ନ ହୋଇ ଦୂର ସ୍ଥାନରେ ରହି ଉର୍ଦ୍ଧ୍ୱକୁ ଓ ଆହୁରି ଉର୍ଦ୍ଧ୍ୱକୁ ଉଡିବାର ପ୍ରକ୍ରିୟା ଅବାରିତ ରଖିଛି । ଏଇମିତି ଦିନେ ସେ ଉର୍ଦ୍ଧ୍ୱମୁଖୀ ହୋଇ ଉଡିଲାବେଳେ ଅନୁଭବ କରିଛି ଯେ ଏକ ନିର୍ଦ୍ଦିଷ୍ଟ ଉଚ୍ଚତାରୁ ଆଉ ଅଧିକ ଉପରକୁ ସେ ଉଡିପାରିବ ନାହିଁ । ଏତିକିବେଳେ ତା'ର ଦୁଇଜଣ ସ୍ୱତନ୍ତ୍ର ସିଗଲ୍‌ଙ୍କ ସହ ଦେଖା ହୋଇଛି । ସେମାନେ ତା'କୁ କହିଛନ୍ତି ଯେ ସେ ଅନେକ କିଛି ଶିଖି ସାରିଲାଣି । ଏବେ ଯଦି ଅଧିକ କିଛି ଶିଖିବାର ଆବଶ୍ୟକତା ଅଛି, ତା'ହେଲେ ତା'କୁ ସେମାନଙ୍କ ସହ ଯିବାକୁ ହେବ । ଏହାଦ୍ୱାରା ଉଚ୍ଚତର ଅସ୍ତିତ୍ୱ କ'ଣ ସେ ସହଜରେ ଜାଣି ପାରିବ । ଜନାଥନ୍ ସେ ଦୁଇଜଣଙ୍କୁ ଅନୁସରଣ କରି ଏପରି ଏକ ପୃଥିବୀରେ ପହଞ୍ଚିଛି ଯେଉଁଠି ସବୁ ସିଗଲ୍'ଉଡିବାର ମହନୀୟ ଆନନ୍ଦ ଉପଭୋଗ କରୁଛନ୍ତି । ସେ ସେଠାରେ କଠୋର ଅଭ୍ୟାସ କରିଛି । 'ଚିଆଙ୍ଗ' ନାମକ ଜଣେ ସବୁଠାରୁ ବିଜ୍ଞ ଓ ଅଭିଜ୍ଞ ସିଗଲ୍ ସହ ତାହାର ବନ୍ଧୁତା ସ୍ଥାପନ ହୋଇଛି । ଜ୍ଞାନର ପୃଥିବୀ ବାହାରେ ଅନ୍ୟ ଏକ ପୃଥିବୀ ଅଛି । ସେ ବିଷୟରେ ଜାଣିବା ମାନେ ସେଠାରେ ପହଞ୍ଚିବା ସଙ୍ଗେ ସମାନ । ତା'ର ନିଜର ପୃଥିବୀରେ ସାଧାରଣ ଜୀବନଯାପନ କରୁଥିବା ସିଗଲ୍‌ମାନଙ୍କ ଠାରୁ ଅତି ସ୍ୱତନ୍ତ୍ର ଭାବେ ସେ ଏକ ନୂତନ ଦିବ୍ୟଜ୍ଞାନ ଅର୍ଜନ କରିଛି । ଏଥିରେ ଅଛି ମୁକ୍ତିର ସ୍ୱାଦ ଓ ଆଧ୍ୟାତ୍ମିକତାର ପ୍ରତିଫଳନ । ନିଜର ଜ୍ଞାନାନୁଭୂତିକୁ ଅନ୍ୟମାନଙ୍କ ଭିତରେ ବାଣ୍ଟିବାକୁ ସେ ପୃଥିବୀକୁ ଫେରିଛି । ଜଣେ ଅସଲ ଶିକ୍ଷକ ହେବାର ଇଚ୍ଛା ତାହାର ଜାଗରିତ ହୋଇଛି । ନିଜ ପୃଥିବୀରେ ଥିବା ପାରମ୍ପରିକ ନିୟମ ଓ ସଂସ୍କୃତିକୁ ବଦଳେଇବା ପାଇଁ ସେ ଅଣ୍ଟା ଭିଡିଛି । ତା'କୁ ଶିକ୍ଷକର ଭୂମିକା ଗ୍ରହଣ କରିବାକୁ ହୋଇଛି । ଯିଏ ଅନ୍ୟକୁ କ୍ଷମା ଦେଇପାରିବ ସେ କେବଳ ଜନାଥନ୍‌ର ଛାତ୍ର ହୋଇପାରିବ । ଯେଉଁମାନେ ସିଗଲ୍ ସମାଜରୁ ବହିଷ୍କୃତ ହୋଇଛନ୍ତି ସେମାନେ ଜନାଥନ୍‌ର ଛାତ୍ର ହୋଇ ଉପରକୁ ଉଡିବାର ପ୍ରୟାସ କରିଛନ୍ତି । ଏମାନଙ୍କ ଭିତରୁ ଫ୍ଲେଚର୍ ଲିଣ୍ଡ ସିଗଲ୍ (Fletcher Lynd Seagull) ନାମକ ଏକ ସିଗଲ୍ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନିଜକୁ ଶିକ୍ଷକ ହିସାବରେ ପ୍ରତିଷ୍ଠା କରିଛି । ଏହା ଯେଉଁଦିନ ସମ୍ଭବ ହୋଇଛି ସେ ଦିନ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ ଆହୁରି ଅଧିକ ଶିକ୍ଷା କରିବା ପାଇଁ ଉପରକୁ ଉଡିଛି ।

'ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍' ବହିଟି ଦଶହଜାର ଶବ୍ଦରେ ଲେଖାଯାଇଛି । ମୁଁ ଅନେକଥର ପଢ଼ିଲା ପରେ ତାହାର କେତେକାଂଶ ମନେ ରହିଯାଇଛି ସବୁ ଦିନ ପାଇଁ । ଗୋଟିଏ ଉଲ୍ଲେଖନୀୟ କଥା ହେଉଛି- ଯେଉଁ ସିଗଲ୍ ବେଶି ଉଚ୍ଚକୁ ଉଡିବ ସେ ସବୁଠାରୁ ଦୂର ଜାଗାକୁ ଦେଖିପାରିବ । (The gull sees the farthest who flies highest) । ଆମର ଭାଗବତରେ ଅନେକ ବର୍ଷ ତଳେ ଠିକ୍ ଏଇକଥା ଲେଖାଯାଇଛି 'ଯେ ପକ୍ଷୀ ଉଡେ ଯେତେଦୂର, ସେ ଜାଣେ ତହିଁର ବେଭାର....' ଜନାଥନ୍ ଆହୁରି ମଧ ଦୃଢ଼ଭାବେ କହିଛି ଯେ ଉର୍ଦ୍ଧ୍ୱକୁ ଉଡିବା ଏବଂ ଉଠିବା ମୁକ୍ତିର ଏକ ସ୍ୱତନ୍ତ୍ର ଅନୁଭବ । ସେ ଉର୍ଦ୍ଧ୍ୱକୁ

ଉଡିବା ଦ୍ୱାରା ଯାହା ଅନୁଭବ କରିଛି, ତାହା ଅନ୍ୟମାନେ ଅନୁଭବ କରନ୍ତୁ ବୋଲି ଦୃଢ଼ ଆଶା ପୋଷଣ କରିଛି । ଏଇଥିପାଇଁ ଉଚ୍ଚତର ପୃଥିବୀରୁ ସେ ସିଗଲ୍‌ମାନଙ୍କ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରିଛି । ତା'ର ଅନୁଭବରେ ଧୀରେ ଧୀରେ ଅନ୍ୟମାନେ ଆକର୍ଷିତ ହୋଇଛନ୍ତି । ଉପରକୁ ଉଡିବାକୁ ଅନେକ ଅଣ୍ଟାଭିଡିଛନ୍ତି । ଜଣେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସାଧାରଣ ମଣିଷଙ୍କ ଭଳି ଜୀବନଟିଏ କାଟିବ ନା ଅସାଧାରଣ ହେବାକୁ ଚେଷ୍ଟା କରିବ ଏହି ପ୍ରଶ୍ନ ସବୁବେଳେ ଉଠିଛି । ଆମ ସମାଜରୁ ଅନେକେ ସବୁ ସାଧାରଣ ବାଧାବନ୍ଧନକୁ ଅତିକ୍ରମ କରି ଉଚ୍ଚତମ ସ୍ତରକୁ ଯିବାକୁ ସମର୍ଥ ହୋଇଛନ୍ତି । ଏଥିପାଇଁ ସେମାନଙ୍କୁ ଅନେକ ଦୁଃଖ କଷ୍ଟ ଭୋଗିବାକୁ ପଡିଛି । ସେମାନେ ଆଜି ମହାମାନବ ହୋଇ ପାରିଛନ୍ତି ।

ରିଚ୍ଚର୍ଡ ବାକ୍ ନିଶ୍ଚିତଭାବେ ଭାରତୀୟ ଏବଂ ଚୀନ୍‌ଦେଶୀୟ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଆମର ଜ୍ଞାନ ଯୋଗରେ ଏହି କଥା ଉଲ୍ଲେଖ କରାଯାଇଛି ଯେ ଜଣେ ଜ୍ଞାନଶକ୍ତି ବଳରେ ତ୍ରିଭୁବନ ପରିକଳ୍ପନା କରିପାରେ ଓ ସେଥିରେ ବିଚରଣ କରିପାରେ । ତାଙ୍କର ଅନ୍ୟ ବହିଗୁଡିକରେ ଏହା ହିଁ ଲକ୍ଷ୍ୟ କରାଯାଇଥାଏ । ମୁଁ ବାରମ୍ବାର ସମୁଦ୍ର ପାଖକୁ ଯାଇଛି - ପୁରୀ କୋଣାର୍କ ଠାରୁ ଆରମ୍ଭ କରି ଦୂର ଦେଶଦେଶାନ୍ତର । ସବୁଆଡେ ସିଗଲ୍‌ମାନଙ୍କୁ ଓ ସେମାନଙ୍କର ଚଳିଚଳନ ଓ ଆଚାର ବ୍ୟବହାର ଆଦିକୁ ନିବିଡତାର ସହ ଲକ୍ଷ୍ୟ କରିଛି । ସେମାନଙ୍କ ଭିତରେ ବାରମ୍ବାର ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ ଏବଂ ଫ୍ଲେଚର ଲିଣ୍ଡ୍ ସିଗଲ୍ ଆଦିକୁ ଖୋଜିଛି ଅନେକବାର । କାରଣ ମୋ ପ୍ରାଣ ଭିତରେ ଜନାଥନ୍ ଲିଭିଙ୍ଗଷ୍ଟନ୍ ସିଗଲ୍ ସବୁଦିନ ପାଇଁ ବଞ୍ଚି ରହିଛି ।

❑ ❑ ❑

୧୬

# ମଣିଷର ଜୀବନ ଯାତ୍ରା : ପଛକୁ ନୁହେଁ ଆଗକୁ

ଜୀବନ ଯାତ୍ରା ସବୁବେଳେ ସରଳ ଓ ରୈଖିକ ନୁହେଁ କଦାପି । ଏକଥା ମୋତେ ଅନୁଭବ କରିବାକୁ ପଡିଥିଲା ଅତି ଅପରିପକ୍ୱ ବୟସରେ । କେଜାଣି କାହିଁକି ମନେ ହେଉଥିଲା ଯେ ପ୍ରତ୍ୟେକ ମୁହୂର୍ତ୍ତ ଯେମିତି ଚଉମୁହାଣୀରେ ପହଞ୍ଚିଥିବା ଏକ ସଂଦିଗ୍ଧ ଓ ସଂଶୟର ସ୍ଥିତି । ଜଣେ ପଥିକ ଏଇଠି ଉପସ୍ଥିତ ହେଲେ କରିବ କ'ଣ ? ଯିବ ଆଗକୁ ନା ପଛକୁ ? ବାମକୁ ନା ଡାହାଣକୁ ? ଗୋଟିଏ ଦୂରଗାମୀ ବିହଙ୍ଗ ଦିଗ୍‌ବଳୟ ଆଡକୁ ଉଡିଯିବ ନା ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଦିଗ ଚିହ୍ନିବାକୁ ପ୍ରୟାସ କରିବ ? ଜଣେ ସାଗରଯାତ୍ରୀ ଯେଉଁ ଆଡକୁ ଯାଉ ପଛକେ ପୃଥିବୀସାରା ଘେରାଏ ବୁଲିଆସି ପୁଣି ପହଞ୍ଚିବ ଯେଉଁଠାରୁ ଯାତ୍ରା ଆରମ୍ଭ କରିଥିଲା ? ଜୀବନଯାତ୍ରାରେ ଅନେକବାର ଅନେକ ପ୍ରକାରର ପ୍ରଶ୍ନ ଉଠିଛି । ଯାତ୍ରା ଓ ଯାତ୍ରାପଥ, ଯାତ୍ରା ଓ ଯାତ୍ରୀର ଲକ୍ଷ୍ୟସ୍ଥଳ ସବୁ ଯେମିତି ମୋ ପାଇଁ ଅସ୍ପଷ୍ଟ ଓ ଖାପ୍‌ଛଡା । ପାହାଡ ଓ ପର୍ବତର ପାଦଦେଶରେ ଛିଡା ହୋଇ ଭାବିବାକୁ ପଡେ ଯେ ଏହାକୁ ଅତିକ୍ରମ କରି ସେପାର୍ଶ୍ୱରେ ଥିବା ଉପତ୍ୟକାର ମଣିଷମାନଙ୍କ ସହ ବନ୍ଧୁତ୍ୱର ଡୋରି ବାନ୍ଧିବା ଯଥାର୍ଥ କି ନାହିଁ । ନଦୀ କୂଳରେ ପହଞ୍ଚିଲା ମାତ୍ରକେ ଇଛା ହୁଏ ଅପରପାର୍ଶ୍ୱର ତୀରରେ ଥିବା ଅପହଞ୍ଚ ଇଲାକାକୁ ଆବିଷ୍କାର କରିବା ପାଇଁ । ମନ୍ଦିର ଓ ଦେବସ୍ଥାନ ମାନଙ୍କରେ ପହଞ୍ଚିଲାକ୍ଷଣି ପ୍ରଶ୍ନ ଉଠେ, ଦିଅଁ ଦର୍ଶନ କରିବା ବା ଏକ ମହାଜାଗତିକ ଶକ୍ତିରେ ବିଲୀନ ହୋଇଯିବା ସଠିକ୍ ପଦକ୍ଷେପ କି ନାହିଁ । ଜୀବନର ରହସ୍ୟ ଉନ୍ମୋଚନ କରିବା ପାଇଁ ଏ ମଣିଷ ଯେମିତି କେଉଁ ଯୁଗରୁ ଚେଷ୍ଟା କରୁଛି ଭୌଗଳିକ ହେବାକୁ ଓ ପରିବ୍ରାଜକ ହେବାକୁ । ଆତ୍ମା ଓ ପରମାତ୍ମାକୁ ଆବିଷ୍କାର କରିବାକୁ ସେ ଯେମିତି ଅହର୍ନିଶ ଉଦ୍ୟମ କରିଆସୁଛି । ସେ ହୋଇଛି 'ସ୍କଲାର ଜିପ୍‌ସୀ'(Scholar Gypsy) ଓ ଅଟକି ନାହିଁ କେଉଁଠି । ସେ ବି ହୋଇଛି ସାଧକ ଓ ସାଧନାର ଉପାସକ । କାଳର କରାଳ ଗର୍ଭରେ ସେ ନିଜକୁ ଲୀନ ହେବାକୁ ଦେଇନାହିଁ । ହଜାର ହଜାର ବର୍ଷର ଜ୍ଞାନ ଓ ବିଜ୍ଞାନ, ସ୍ୱର୍ଗୀୟ ଚିନ୍ତା ଓ ଚେତନା ଏବେ ମଧ୍ୟ ଯେମିତି ଜୀବନ ରହସ୍ୟର ସବୁ ଅଳିନ୍ଦ ଓ ନିଳୟକୁ ଉନ୍ମୋଚନ କରିପାରିନାହିଁ । ମୁଁ ଭାବୁଛି ମଣିଷ ଏଇଥିପାଇଁ ବଞ୍ଚି ରହିଛି ଓ ବଞ୍ଚିରହିବ ସବୁଦିନେ, ସବୁ ଯୁଗରେ ।

କଲେଜରେ ପାଦ ଦେଉଦେଉ ଯେଉଁ ବନ୍ଧୁମାନଙ୍କ ସହ ବୌଦ୍ଧିକ ସ୍ତରରେ ସମ୍ପର୍କ ସ୍ଥାପିତ ହେଲା, ସେମାନଙ୍କ ଠାରୁ ଜାଣିବାକୁ ଓ ଶୁଣିବାକୁ ହେଲା ସାହିତ୍ୟ ଓ ଦର୍ଶନ, ଗଣିତ ଓ ତର୍କ ଶାସ୍ତ୍ର, ବିଜ୍ଞାନ ଓ ସାମାଜିକ ଜ୍ଞାନର ଅପରିସୀମ ବ୍ୟାପ୍ତି ଓ ବିଶ୍ଲେଷଣ । ଆମେ ସବୁ ବିଜ୍ଞାନ ଓ ଗଣିତର ଛାତ୍ର ଥିଲୁ ସତ, କିନ୍ତୁ ଆମେ ନିଜକୁ ବିଜ୍ଞାନାଗାରର କୋଠରି ଭିତରେ ଆବଦ୍ଧ କରି ରଖିନଥିଲୁ । ଆମେ ଗଣିତର ଛାତ୍ର ଥାଇ ବି ଜ୍ୟାମିତିକ ଉପପାଦ୍ୟ ଓ ଜଟିଳ ସମୀକରଣ ଭିତରେ ନିଜକୁ ହଜାଇ ଦେଇନଥିଲୁ । ଆମେ ସବୁ ଜାଣିବାକୁ ଚାହୁଁଥିଲୁ ଯେ ଯେଉଁମାନେ କଳା ଓ ସାହିତ୍ୟ, ଦର୍ଶନ ଓ ଇତିହାସ ଅଧ୍ୟୟନ କରୁଛନ୍ତି, ସେମାନେ ଜୀବନ ଓ ଯୌବନକୁ କେଉଁ ଦୃଷ୍ଟିରେ ଦେଖୁଛନ୍ତି ଓ କେଉଁ ଭାଷାରେ ପରିପ୍ରକାଶ କରୁଛନ୍ତି । ବସ୍ତୁ ଓ ମନସ୍ତତ୍ତ୍ୱ ପୃଥିବୀର ସେପାଖକୁ ସେମାନେ ଯାଉଛନ୍ତି କି ନାହିଁ ଓ ଆମଭଳି ସଂଦିଗ୍ଧତାର ଆବର୍ତ୍ତରେ ପଡିଛନ୍ତି କି ନାହିଁ ? ମୁଁ ଭାବୁଛି କଲେଜ ଜୀବନର ସେସବୁ ଆନନ୍ଦମୟ ମୁହୂର୍ତ୍ତ ଥିଲା ଯେତେବେଳେ ଆମର ଅଧ୍ୟାପକମାନେ ଜୀବନ ଓ ଜିଜ୍ଞାସାର ରହସ୍ୟ ଉନ୍ମୋଚନ କରିବା ପାଇଁ କେବେକେମିତି ଭାଷଣ ଦେଉଥିଲେ । ଆମକୁ ଏକ ବୃହତ୍ତର ପୃଥିବୀ ଓ ତହିଁରେ ମଣିଷର ସ୍ଥାନ ନିରୂପଣ କରିବାର ପ୍ରକ୍ରିୟାରେ ସାମିଲ ହେବାକୁ କହୁଥିଲେ । ଜଣେ ଇଂରାଜୀ ଅଧ୍ୟାପକ ତାଙ୍କର କ୍ଲାସ୍ ନେଲା ଭିତରେ ଇଂରାଜୀ ସାହିତ୍ୟରୁ ବାଛିବାଛି କବି ଓ ଔପନ୍ୟାସିକମାନଙ୍କର ସାହିତ୍ୟକୃତି ବିଷୟରେ କହୁଥିଲେ । ଶୁଣିବାକୁ ମିଳୁଥିଲା ଇଲିଅଟ୍ (T.S. Eliot) ନଚେତ୍ ହେମିଙ୍ଗୱେ(Hemingway)ଙ୍କ କଥା । ଜଣେ ଗଣିତ ଅଧ୍ୟାପକ ଶୂନ୍ୟ ବା ଜିରୋର ସଜ୍ଞା ବୁଝାଉଥିଲା ବେଳେ ଶୂନ୍ୟବାଦ ବା ନଥିଙ୍ଗ୍‌ନେଶ୍ (Nothingness)ର ବ୍ୟାଖ୍ୟା କରିବାକୁ ପଛାଉ ନଥିଲେ । ଗଣିତ ଓ ଦର୍ଶନ ଯେ କେମିତି ମୁଦ୍ରାର ଉଭୟ ପାର୍ଶ୍ୱ ତାହାର ଆଭାସ ମିଳୁଥିଲା ଆମକୁ । ଜଣେ ବିଜ୍ଞାନର ଅଧ୍ୟାପକ ବିଜ୍ଞାନର ତତ୍ତ୍ୱ ବୁଝାଇବାକୁ ଯାଇ ଆଧୁନିକ ମଣିଷର ଅସହାୟତା ଏବଂ ନିର୍ଜନତାର ବିଶ୍ଲେଷଣ କରୁଥିଲେ । ବିଜ୍ଞାନର ସବୁ ସ୍ୱଚ୍ଛ ଏବଂ ତାର୍କିକ ଆଲୋଚନା ତଥା ଯାନ୍ତ୍ରିକ ଅବଦାନ ମଣିଷକୁ ଶକ୍ତିଶାଳୀ କରିଛି କି ଦୁର୍ବଳ କରି ଦେଇଛି ଏହା ଥିଲା ଏକ ବିଶାଳ ପ୍ରଶ୍ନ । ଏଇ ସମୟରେ ଆମେ ଅନୁଭବ କରିଥିଲୁ ଯେ ମଣିଷ ତା'ର ନିଜ ପୃଥିବୀରୁ ଯେମିତି ଛିଟିକି ପଡି ନିର୍ବାସିତ ହୋଇଯାଇଛି । ଆମେ ସବୁ ନୀରବ ପ୍ରେମରେ ପଡିଯାଇଥିବାର ଯନ୍ତ୍ରଣାରେ ବୁଡିଯାଇଥିଲୁ ବୋଧେ । ସେଇଥିପାଇଁ ଏକ ଦ୍ୱୈତବାଦୀ ଜୀବନ ଓ ଜିଜ୍ଞାସା ଆମକୁ ଯେମିତି ଗୋଟାପଣେ ଗ୍ରାସ କରିଥିଲା । ବିଜ୍ଞାନ ଓ ଦର୍ଶନ ଯଦି ଜୀବନର ଏବଂ ଅସ୍ତିତ୍ୱର ମୌଳିକ ପ୍ରଶ୍ନକୁ ସମାଧାନ କରିବାରେ ଅକ୍ଷମ, ତେବେ ଅସଲ ସୂତ୍ର କ'ଣ ? ଯଦି ସାହିତ୍ୟ ଓ ମତବାଦ ଜୀବନ ପଥ ନିର୍ଣ୍ଣୟ କରିବାକୁ ଅସମର୍ଥ, ତେବେ ଜଣେ କାହାକୁ ନେଇ ବଞ୍ଚିବ ? ଆମେ ସମସ୍ତେ ମଣିଷର ସ୍ଥିତି ଓ ପ୍ରବୃତ୍ତିକୁ ବିଭିନ୍ନ ଗବାକ୍ଷ ଦେଇ ଦେଖିବାକୁ ଆରମ୍ଭ କରିଥିଲୁ । ସମ୍ଭବତଃ ସେଇଥିପାଇଁ ସାହିତ୍ୟ ଓ ସାହିତ୍ୟିକ, ଦର୍ଶନ ଓ ଦାର୍ଶନିକ, ବିଜ୍ଞାନ ଓ ବୈଜ୍ଞାନିକମାନଙ୍କ

ସହ ପରିଚିତ ହେବାକୁ ଆମକୁ ଆସିଥିଲା ଏକ ଆହ୍ୱାନ । ଆମେ ସାମୂହିକ ଓ ସଂଗଠିତ ଭାବେ ଜୀବନର ପ୍ରହେଳିକାକୁ ବୁଝିବାକୁ ସମ୍ଭବତଃ ଚେତନ ଓ ଅବଚେତନ ଅବସ୍ଥାରେ ପ୍ରୟାସ କରିଥିଲୁ । କଲେଜର ରୁଦ୍ଧ କୋଠରିକୁ ପରିତ୍ୟାଗ କରି ଆମେ ଯାଇ ବସୁଥିଲୁ କୃଷ୍ଣଚୂଡ଼ା ଗଛ ତଳେ ଥିବା ସିମେଣ୍ଟ ବେଞ୍ଚରେ । ପାଠ ପଢ଼ିବା ସମୟରେ ପାଠ ନ ପଢ଼ି ଆମେ ଅନ୍ୟ ଏକ ଆଲୋଚନାରେ ନିମଗ୍ନ ରହୁଥିଲୁ । ଆନନ୍ଦରେ ମଦମତ୍ତ ହେବାକୁ ଆମେ ସେର୍-ଇ-ପଞ୍ଜାବ ହୋଟେଲ୍ ବା କେଉଁ ରାସ୍ତାକଡ଼ ଢ଼ାବାରେ ଏକାଠି ଖାଉଥିଲୁ । ଆଲ୍‌ଡସ୍ ହକ୍‌ସଲୀ(Aldus Huxley)ଙ୍କ 'ଡୋରସ୍ ଅଫ ପରସେପ୍‌ସନ୍' (Doors of Perception) ବହିଟି ଜଣେ ବନ୍ଧୁ ଯୋଗାଡ଼ କରି ଦେଇଥିଲେ ଓ ଆମେ ନିଶାଗ୍ରସ୍ତ ହେବାକୁ ଚାହୁଁଥିଲୁ ବୌଦ୍ଧିକତାରେ, କିନ୍ତୁ ନିଶାଦ୍ରବ୍ୟ ସେବନରେ ନୁହେଁ । ମୁଁ ଭାବୁଛି ଏକ ନୂତନ ଆଡ୍‌ଭେଞ୍ଚରର ଆନନ୍ଦ ଓ ଉଲ୍ଲାସ ନେବା ପାଇଁ ଆମେ ବିଶୃଙ୍ଖଳିତ ହେବାକୁ ଚାହୁଁଥିଲୁ । ସଫଳ ପ୍ରେମିକ ନହୋଇ ବିଫଳ ପ୍ରେମର ଯନ୍ତ୍ରଣାକୁ ବେଶି ଆଦରିଥିଲୁ । ଆମେ ସବୁ ଆପଣାକୁ ହିଁ ଦସ୍ତୋଭସ୍କି, କାମ୍ୟୁ, କାଫ୍‌କା, ସାର୍ତ୍ତ, ହେମିଙ୍ଗ୍‌ୱେ, ଇଲିୟଟ୍, ହକ୍‌ସଲୀ, ହେସ୍ ଆଦିଙ୍କ ଲେଖନୀ ନିଃସୃତ ନାୟକମାନଙ୍କ ଭିତରେ ନିଜକୁ ଆବିଷ୍କାର କରିଥିଲୁ ଓ ବଞ୍ଚିବାର ନୂତନ ଅର୍ଥ ଖୋଜୁଥିଲୁ । ଆଲୋକର ମହତ୍ତ୍ୱ ଅନୁଭବ କରିବାକୁ ଆମେ ଏକ ଦୀର୍ଘ ଟନେଲ୍ ଭିତରେ ପଶିବାକୁ ଚାହୁଁଥିଲୁ । ଜୀବନ ଯନ୍ତ୍ରଣାକୁ ପାଥେୟ କରି ଜଣେ ଯେ ଏକ ମହନୀୟ ଜୀବନର ସ୍ୱାଦ ଚାଖି ପାରିବ ତାହା ଅନୁଭବ କରିବାକୁ ଚାହୁଁଥିଲୁ ଆମେ ।

ମୁଁ ସ୍ୱୀକାର କରିବି ଯେ ଆମକୁ ଏକ ଚମତ୍କାର ବୌଦ୍ଧିକ ଜଗତକୁ ଆକର୍ଷଣ କରିବାରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ ସ୍ୱର୍ଗୀୟ ପ୍ରଫେସର କେ.ଏସ୍.ଆର୍.ମୂର୍ତ୍ତି । ପଦାର୍ଥ ବିଜ୍ଞାନର ପ୍ରଫେସର ଥିଲେ ଆମର । ବନାରସ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶିକ୍ଷା ପରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ନୋବେଲ୍ ପୁରସ୍କାରପ୍ରାପ୍ତ ବହୁ ବୈଜ୍ଞାନିକଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଥିଲେ । ସେ ସମୟରେ ପାଶ୍ଚାତ୍ୟ ଜଗତରେ ବିଜ୍ଞାନ ଓ ବୈଷୟିକ ଜ୍ଞାନର ବିସ୍ଫୋରଣ ସତ୍ତ୍ୱେ ମଣିଷ କିପରି ଅସହାୟ ହୋଇପଡ଼ିଛି ଓ ଜଣେ କିପରି 'ଆଉଟ୍‌ସାଇଡର' ହୋଇଯାଇଛି, ତାହାର ଏକ ସମ୍ୟକ ଧାରଣା ଦେଇଥିଲେ । ପଦାର୍ଥ ବିଜ୍ଞାନର ଛାତ୍ର ହୋଇ ମଧ୍ୟ ସେ ଇଂରାଜୀ ସାହିତ୍ୟର ଜଣେ ଦକ୍ଷ ପ୍ରଫେସରଙ୍କ ଠାରୁ କୌଣସି ଗୁଣରେ କମ୍ ନଥିଲେ । ଆମର ଅନର୍ସ କ୍ଲାସ୍ ନେଲାବେଳେ ସେ ଦଶପନ୍ଦର ମିନିଟ୍ ପଢ଼ାଇ କହୁଥିଲେ ଯେ, ଆମେ ଯେଉଁମାନେ ମେଧାବୀ ଛାତ୍ର ତାଙ୍କୁ ପଢ଼ାଇ ସମୟ ନଷ୍ଟ କରିବା ଠିକ୍ ନୁହେଁ । ତେଣୁ ସେ ପଦାର୍ଥ ବିଜ୍ଞାନ ବିଷୟ ବ୍ୟତିରେକ ଅନ୍ୟକିଛି ପଢ଼ାଇବେ ବୋଲି ମନସ୍ଥ କରୁଥିଲେ । ଏଇଭଳି କହି ସେ ଆଲୋଚନା ଆରମ୍ଭ କରୁଥିଲେ ଓ ଆମ ସମସ୍ତଙ୍କୁ ଅରୱେଲ୍(George Orwell), କେସ୍‌ଲର(Arthur Koestler), କାମ୍ୟୁ(Albert Camus),କାଫ୍‌କା(Franz Kafka) ଆଦିଙ୍କ କଥା ଓଜସ୍ୱୀନି

ଭାଷାରେ କହୁଥିଲେ । ଆମକୁ କହୁଥିଲେ କଲିନ୍ ଉଇଲ୍‌ସନ୍(Colin Wilson)ଙ୍କ 'ଆଉଟ୍ ସାଇଡର'(Outsider)ବହି ପଢ଼ିବା ପାଇଁ । ସେ କହିବାକୁ ଚାହୁଁଥିଲେ ଯେ ଜ୍ଞାନବିଜ୍ଞାନର ପରିଧି ସେପଟେ ଅନ୍ୟ ଏକ କାବ୍ୟିକ ଓ ମହନୀୟ ପୃଥିବୀ ଅଛି ଯେଉଁଠି ଆମକୁ ପହଞ୍ଚିବାକୁ ପଡିବ ଅତି ଆପଣାର ହିସାବରେ । ନିଜକୁ ଓ ନିଜର ସ୍ଥିତିକୁ ଆବିଷ୍କାର କରିବାକୁ ହେବ । ନିଜର ଜୀବନ ଯାତ୍ରା ନିଜକୁ ହିଁ ନିର୍ଦ୍ଧାରଣ କରିବାକୁ ହେବ । ଆମର ବନ୍ଧୁ ଓ ଆମ ସମସ୍ତଙ୍କ ଭିତରେ ସବୁଠାରୁ ପ୍ରତିଭାବାନ୍ ଶ୍ରୀ ଭଞ୍ଜକିଶୋର ମହାପାତ୍ର ଆଗରୁ ପ୍ରଫେସର ମୂର୍ତ୍ତିଙ୍କୁ ଜାଣିଥିଲେ ବ୍ୟକ୍ତିଗତ ଭାବେ ଓ କଲିନ୍ ଉଇଲ୍‌ସନଙ୍କ ବହି ପଢ଼ିଥିଲେ । ପ୍ରକୃତରେ ଆମ ଭିତରେ ସେ ଜଣେ 'ଆଉଟ୍ ସାଇଡର'ର ଜୀବନ କାଟିବାକୁ ଯେମିତି ସିଦ୍ଧାନ୍ତ ନେଇଥିଲେ । ଭଞ୍ଜ 'ଲଷ୍ଟ ଫର ଲାଇଫ'(Lust for Life)ର ଭାନ୍‌ଗଗ୍ (Van Gogh) ଭଳି ନିଜକୁ ମନେ କରୁଥିଲେ । ଏହା ସହିତ ତାଙ୍କୁ କୁଆଡେ ବେଶି ପ୍ରଭାବିତ କରିଥିବା 'ଜନ୍ କୁପର ପଏସ୍'(John Cowper Powys)ଙ୍କ ଲିଖିତ ଆର୍ଟ ଅଫ୍ ହାପିନେସ୍ (Art of Happiness) ବହିଟିକୁ ନିଜର ଗୀତା ବାଇବେଲ୍ ବୋଲି ମନେକରୁଥିଲେ । ସତୁରୀ ଦଶକରେ କଲିନ୍ ଉଇଲ୍‌ସନଙ୍କ 'ଆଉଟ ସାଇଡର' ବହି ଆମକୁ ଓ ଆମର ଚିନ୍ତା ଓ ଚେତନାକୁ ଖୁବ୍ ସମୃଦ୍ଧ କରିଥିଲା ଓ ଏଥିରେ ପ୍ରଫେସର ମୂର୍ତ୍ତି ଓ ବନ୍ଧୁ ଭଞ୍ଜ ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ଆମ ପାଇଁ 'ଆଉଟ୍ ସାଇଡର' ହେବା ଏକ ଅଫିମ ଭଳି ନିଶା ହୋଇଯାଇଥିଲା । ଏହା ଆମ ପାଇଁ ଏକ ବିଳାସ ଥିଲା କି ବ୍ୟତିକ୍ରମ ଥିଲା କହିବା କଷ୍ଟକର । କିନ୍ତୁ ଆମେ ନିଜକୁ ଆବିଷ୍କାର କରିବା ଲାଗି ଯେ କୌଣସି ମୂଲ୍ୟ ଦେବାକୁ ଚାହୁଁଥିଲୁ ଓ ଭୁଲ ହେଉ କି ଠିକ୍ ହେଉ ଦେଇଥିଲୁ ମଧ୍ୟ ।

'ଆଉଟ୍ ସାଇଡର'ର ସମସ୍ୟା ସମ୍ଭବତଃ ଜଣେ ନିଜେ ଭୁକ୍ତଭୋଗୀ ନହେଲେ ଜାଣିପାରିବ ନାହିଁ କି ହୃଦୟଙ୍ଗମ କରିପାରିବ ନାହିଁ । କିନ୍ତୁ ଏ ସମସ୍ୟାର ସମାଧାନର ବାଟ କଲିନ୍ ଉଇଲ୍‌ସନ ଅତି ସ୍ପଷ୍ଟଭାବେ ତାଙ୍କ ବହିରେ ଉଲ୍ଲେଖ କରିଛନ୍ତି । ଜଣେ ରାସ୍ତାରେ ଅନ୍ଧାରରେ ଗାଡି ଚଳାଇବାବେଳେ ହେଡ୍ ଲାଇଟ୍ ଦେଇ ଚଳାଇବ କି ସାଇଡ୍ ଲାଇଟ୍ ଦେଇ ଚଳାଇବ ତାହାର ଦ୍ୱୈତ ପ୍ରସ୍ତାବ ରଖିଛନ୍ତି । ଯଦି ହେଡ୍ ଲାଇଟ୍ ଲଗାଇ ଗାଡି ଚାଲିବ, ତେଜ ଗତିରେ ଯାଇ ପାରିବ ଆଗକୁ ଆଗକୁ; କିନ୍ତୁ ରାସ୍ତାର ଦୁଇପାର୍ଶ୍ୱରେ କ'ଣ ସବୁ ଶୋଭାମୟ ଦୃଶ୍ୟ ରହିଛି ତାହା ଦେଖିପାରିବ ନାହିଁ । ଯଦି ସାଇଡ୍ ଲାଇଟ୍ ଲଗାଇ ଗାଡି ଚଳାଇବ, ଜଣେ ରାସ୍ତା ପାର୍ଶ୍ୱର ଦୃଶ୍ୟ ଦେଖି ପାରିବ କିନ୍ତୁ ଗତି ମନ୍ଥର ହୋଇଯିବ । ତେଣୁ ଗାଡି ଚାଳକଙ୍କୁ ନିଷ୍ପତ୍ତି ନେବାକୁ ହେବ କେଉଁ ଲାଇଟ୍ ଲଗାଇବ । ମୁଁ ଭାବୁଛି ଆମର ଜୀବନ ଯାତ୍ରା ଏଇଭଳି । ଆମେ କେଉଁ ଗତିରେ ଯିବା ଓ କେଉଁ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ଓ କେଉଁଭଳି ଦୃଶ୍ୟ ଦେଖିବା ସବୁ ଆମ ଉପରେ ନିର୍ଭର କରୁଛି । କିନ୍ତୁ ଆମକୁ ପଛକୁ ଫେରିବାକୁ ହେବ ନାହିଁ । ବ୍ୟାକ୍ ଲାଇଟ୍ ଦେଇ ଗାଡି ଚଳାଇବା 'ଆଉଟ୍ ସାଇଡର' ପାଇଁ ପ୍ରଯୁଜ୍ୟ ନୁହେଁ । ଆମେ ଜାଣିଛେ ଯେ ଚାଲିବାର

ଗତି ସବୁକିଛି ନୁହେଁ (Speed is no Perfection) ବା ଅଟକି ଯିବା ଯୁକ୍ତିଯୁକ୍ତ ନୁହେଁ । ଏଇକଥା ଆଲୋଚନା କରୁଥିବାବେଳେ ଆମର ଜଣେ ବନ୍ଧୁ ଯିଏ ଇଂରାଜୀ ସାହିତ୍ୟର ଛାତ୍ର ଥିଲେ ଓ ଟି.ଏସ.ଇଲିଅଟ୍‌ଙ୍କ କବିତା ଖୁବ୍ ଭଲ ଭାବେ ଆବୃତ୍ତି କରିପାରୁଥିଲେ, ସେ ବି ପ୍ରେମରେ ପଡିଯାଇ କବିତା ଲେଖୁଥିଲେ ଓ ଆମକୁ ଶୁଣାଇ ଥିଲେ ସିମେଣ୍ଟ ବେଞ୍ଚରେ ବସିଥିବାବେଳେ । କେତେବେଳେ ଓ୍ୱେଷ୍ଟଲ୍ୟାଣ୍ଡ୍ ତ ଅନ୍ୟ କେତେବେଳେ ଫୋର୍ କ୍ୱାର୍ଟେଟ୍(Four Quartets) । ଆମକୁ ଚମତ୍କାର ଲାଗୁଥିଲା ସେସବୁ ଶୁଣି । ମୋର ସେସବୁ ବହିକୁ ପଢ଼ିବାର ତୀବ୍ର ଇଚ୍ଛା ଏକଦା ମୋତେ ଗଣିତ ବିଜ୍ଞାନର ଜଟିଳ ପ୍ରଶ୍ନ ସମାଧାନ କରିବା ପରିବର୍ତ୍ତେ ତାକୁ ହିଁ ପଢ଼ିବାକୁ ପ୍ରେରିତ କରିଥିଲା । ଯଲ, ଆଗେଇଚଲ ବିଷୟରେ ଇଲିଅଟ୍ ଗୀତା ଦ୍ୱାରା ଅନୁପ୍ରାଣିତ ହୋଇ ଅନେକ କିଛି ଲେଖିଛନ୍ତି । ସେଥିରୁ କିୟଦାଂଶ ମୋର ମନେ ରହିଯାଇଛି ସବୁଦିନ ପାଇଁ ।

"O Voyager, O Seamen,
You who come to port, and you whose bodies
Will suffer the trial and judgment of the sea
Or whatever event, this is your real destination
So Krishna, as when he admonished Arjuna
on the field of battle.
Not fare well,
But fare forward, voyager" (Four Quartets)

❑ ❑ ❑

୧୭

# ଗାନ୍ଧୀଜୀଙ୍କୁ ଖୋଜି ନ ପାଇବାର ଯନ୍ତ୍ରଣା......

କନ୍ଧମାଳ ଜିଲ୍ଲାରେ ହିଂସା ମୋତେ ଗଭୀର ମର୍ମାହତ କରିଛି । କରିଛି ବାକ୍‌ଶୂନ୍ୟ ଓ ବଳହୀନ । ଏ ହିଂସା ମୋ ଭଳି ମଣିଷଙ୍କ ଭିତରେ ଯେଉଁ ଅପୂରଣୀୟ କ୍ଷତ ସୃଷ୍ଟି କରିଛି ତାହା ସବୁଦିନ ପାଇଁ କଷ୍ଟଦାୟକ ହୋଇ ରହିଯିବ । କନ୍ଧମାଳ ଜିଲ୍ଲାକୁ ଆମେ ଜାଣିଥିଲୁ ଫୁଲବାଣୀ ନାମରେ । ପଢ଼ିଥିଲୁ ହଳଦୀ ଚାଷ ବିଷୟରେ । ଅବାକ୍ ହୋଇଥିଲୁ ଯେ କନ୍ଧମାନଙ୍କର ସାମାଜିକ ରୀତିନୀତି ଶହ ଶହ ବର୍ଷର ଝଡଝଞ୍ଜା ସହି ଅକ୍ଷୁର୍ଣ୍ଣ ରହିଛି । ଆକର୍ଷିତ ହୋଇଥିଲୁ ଆମେ ସବୁ । କନ୍ଧମାନଙ୍କର ଇତିହାସ, କୁଇ ଭାଷାର ବିଶେଷତ୍ୱ ଓ ସେମାନଙ୍କର ଉପନିବେଶବାଦ ବିରୋଧରେ ସଂଗ୍ରାମ ଜାଣିବାକୁ ଆମେ ଆଗ୍ରହ ପ୍ରକାଶ କରିଥିଲୁ । କନ୍ଧମାନଙ୍କ ବିଷୟରେ ବହି ପଢ଼ିବା ବା ସେମାନଙ୍କର ଇଲାକା ଦେଇ ବସ୍‌ରେ ଯାତ୍ରା କରିବା ଅପେକ୍ଷା ଗୋଟିଏ ଗାଁରେ ରାତ୍ରି ଯାପନ କରିବା ଖୁବ୍ ଚମକପ୍ରଦ ଥିଲା ମୋ ପାଇଁ । ଚାରିଆଡେ ଶାଳ ଜଙ୍ଗଲ । କେଉଁଠି ହାତୀ ତ କେଉଁଠି ବାଘ । କେଉଁଠି ଉଚ୍ଚ ପାହାଡ ଓ ତଳେ ଉପତ୍ୟକାରେ ନଦୀଟିଏ ବୋହୁଛି । ହଳଦୀ ଖେତର ବାସ୍ନା ଓ ହଳଦୀ ବୋଳା ଦେହର ଉଜ୍ଜଳଶୋଭା ମନମତାଣିଆ ନୁହେଁ ତ ଆଉ କ'ଣ ? କନ୍ଧମାନଙ୍କୁ ଭଲ ପାଇବାକୁ ହେଲେ ସେମାନଙ୍କର ନୃତତ୍ତ୍ୱକୁ ବି ହୃଦୟଙ୍ଗମ କରିବାକୁ ଆବଶ୍ୟକ ହୋଇଛି । ପ୍ରଥମ ଦେଖାରେ ପ୍ରେମ ଆରମ୍ଭ ହୋଇଥିଲା ଯେଉଁ ଦିନ ମୁଁ ବେଲଘରକୁ ଆବିଷ୍କାର କରିଥିଲି । ବେଲଘର ଯିଏ ନ ଦେଖିଛି, ସେ କନ୍ଧମାନଙ୍କୁ ଜାଣିନାହିଁ । କିନ୍ତୁ କନ୍ଧମାନଙ୍କର ଧର୍ମ, ସଂସ୍କୃତି, ଐତିହ୍ୟ ଓ ଭାଷା ଉପରେ ଶହଶହ ବର୍ଷ ଧରି ଆକ୍ରମଣ ନିଶ୍ଚିତ ହୋଇଛି । କନ୍ଧମାନଙ୍କର ଦୁର୍ଗମ ବସତି ଭିତରକୁ ପଶି ଆସିଛନ୍ତି ଅଣଆଦିବାସୀମାନେ । କିଏ ପାଣ ତ ଆଉକିଏ ସାହୁକାର । ଏମାନେ ସମସ୍ତେ ଓଡ଼ିଆ ଭାଷା କୁହନ୍ତି । ସମତଳ ଅଞ୍ଚଳରୁ ଯାଇ ଅନୁପ୍ରବେଶ କରିଥିବାମାନଙ୍କୁ କନ୍ଧମାନେ ସାଧାରଣତଃ 'ଓଡ଼ିଆ' ବୋଲି କହୁଥିବା କଥା ଜାଣି ମୁଁ ଅଶୀଦଶକରେ ଆଶ୍ଚର୍ଯ୍ୟ ହୋଇଛି । ଅଣଆଦିବାସୀଙ୍କ ଅନୁପ୍ରବେଶ କେବେଠାରୁ ଆରମ୍ଭ ହୋଇଛି କହିବା ସମ୍ଭବ ନୁହେଁ । କିନ୍ତୁ କନ୍ଧମାନଙ୍କ ଉପରେ ଲେଖାଯାଇଥିବା ଅଳ୍ପ କେତୋଟି ବହିରୁ ଯାହା ଜଣା ପଡୁଛି ଯେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଅଣଆଦିବାସୀମାନେ କନ୍ଧ ଦେଶରେ ଜମି ଅଧିକାର

କରି ବସତି ସ୍ଥାପନ କରଛନ୍ତି । ବ୍ରହ୍ମପୁରରୁ ମଧ୍ୟ ଖ୍ରୀଷ୍ଟିଆନ୍ ମିଶନାରୀମାନେ ଏ ଅଞ୍ଚଳକୁ ଏହାପରେ ଆସିଛନ୍ତି । ଦଳେ ମିଶନାରୀ ତାଙ୍କର ବର୍ଣ୍ଣନାରେ ଲେଖିଛନ୍ତି ଯେ ସେମାନେ ଏକଦା ଘଞ୍ଚ ଜଙ୍ଗଲ ଭିତରେ ଯାଉଥିବାବେଳେ ଅକସ୍ମାତ କୋଳାହଳ ଶୁଣିଲେ । ସେଠାରେ କନ୍ଧ ମୁଖିଆମାନଙ୍କର ଏକ ସଭା ହେଉଥାଏ । ମୁଖିଆମାନେ ସମସ୍ତେ ଆନ୍ଦୋଳିତ ହୋଇ ପ୍ରତିବାଦ କରୁଥିଲେ ଯେ ଅଣଆଦିବାସୀମାନେ ସେମାନଙ୍କର ଇଲାକା ଦଖଲ କରୁଛନ୍ତି ଓ ସେମାନଙ୍କର ସଂସ୍କୃତି ନଷ୍ଟ କରୁଛନ୍ତି । ସେମାନେ ବ୍ରିଟିଶ ସରକାରଙ୍କୁ ଏହି ମର୍ମରେ ଦରଖାସ୍ତ କରିଥିଲେ ଯାହା କଲିକତାର ଇଂରାଜୀ ସମ୍ବାଦ ପତ୍ରରେ ପ୍ରକାଶିତ ହୋଇଥିଲା । ଏହାକୁ ଭିତ୍ତିକରି ଇଂରେଜ ସରକାର କନ୍ଧ ଦେଶରେ ବାହାରୁ ଆସୁଥିବା ଲୋକମାନଙ୍କର ବସତି ସ୍ଥାପନ କରିବା ଉପରେ କଟକଣା ଜାରି କରିଥିଲେ । କିନ୍ତୁ ଏହି ଆଦେଶନାମା ସମ୍ଭବତଃ ବେଶି ଦିନ ପର୍ଯ୍ୟନ୍ତ ଲାଗୁ କରାଯାଇ ପାରିନଥିଲା । କନ୍ଧମାନଙ୍କ ଦୁର୍ଗମବସତି ଭିତରକୁ ଉଭୟ ହିନ୍ଦୁ ଓ ଖ୍ରୀଷ୍ଟିଆନ୍‌ମାନେ ଆସି ଅନେକ କିଛି ପ୍ରଭାବ ବିସ୍ତାର କରିଥିଲେ । ଅବଶ୍ୟ ବ୍ରିଟିଶ ଶାସନର ପ୍ରତ୍ୟକ୍ଷ ହସ୍ତକ୍ଷେପ ଫଳରେ ଖ୍ରୀଷ୍ଟିଆନ୍‌ମାନଙ୍କର ସ୍ଥିତି ବେଶ୍ ମଜଭୂତ ହୋଇଥିଲା । ଜି.ଉଦୟଗିରିର ମିଶନାରୀ ଡାକ୍ତରଖାନା ସେ ଅଞ୍ଚଳରେ ସବୁଠାରୁ ଆଧୁନିକ ଥିଲା ବୋଲି ମାନ୍ୟତା ପାଇଥିଲା । ଗୋଟାଏ ପଟେ ହିନ୍ଦୁମାନେ ଓ ଗୋଟାଏ ପଟେ ଖ୍ରୀଷ୍ଟିଆନ୍‌ମାନେ କନ୍ଧମାନଙ୍କୁ ନିଜର କରିବାକୁ ଆପ୍ରାଣ ଉଦ୍ୟମ ନିଶ୍ଚିତ କରିଥିବେ । ବିଖ୍ୟାତ ନୃତତ୍ତ୍ୱବିଦ୍ ଏଫ.ଜି.ବେଲୀ ଏସବୁର ଗଭୀର ଅଧ୍ୟୟନ କରି ଆଦିବାସୀ ଓ ପାଣ ସମ୍ପ୍ରଦାୟଙ୍କ ଭିତରେ ଦ୍ୱନ୍ଦ୍ୱ ଓ ସଂଘର୍ଷର ମୂଳକେନ୍ଦ୍ରକୁ ବିଶ୍ଳେଷଣ କରିଛନ୍ତି । ପାଣମାନେ ସହଜରେ ଖ୍ରୀଷ୍ଟିଆନ୍ ହୋଇ ତତ୍‌କାଳୀନ ପ୍ରଶାସନର ପ୍ରିୟପାତ୍ର ହୋଇଥିଲାବେଳେ କନ୍ଧମାନେ ହିନ୍ଦୁ ମତବାଦ ଆଡକୁ ନିଶ୍ଚିତ ଢ଼ଳିଥିଲେ । କନ୍ଧମାନଙ୍କୁ ପାଣମାନେ ଦବାଇବାକୁ ଚେଷ୍ଟାକରି ସମ୍ଭବତଃ ସଫଳ ହୋଇଥିଲେ । କିନ୍ତୁ କନ୍ଧମାନେ ଦବିବା ଜାତି ନୁହନ୍ତି । ଏଇଥିପାଇଁ ସଂଘର୍ଷ ଲାଗି ରହୁଥିଲା ବୋଲି ତାଙ୍କର ପୁସ୍ତକରେ ନୃତତ୍ତ୍ୱବିଦ୍ ବେଲୀ (F.G Bailey) ଉଲ୍ଲେଖ କରିଛନ୍ତି । ହିଂସା ହେଉ ବା ଅହିଂସା ହେଉ, ସଂଘର୍ଷ କନ୍ଧମାଳରେ ଅସ୍ଥିମଜ୍ଜାଗତ ହୋଇ ପଡିଥିଲା ଅନେକ ଦିନରୁ । ଏ ସଂଘର୍ଷ ସବୁବେଳେ ସୁଯୋଗ ଖୋଜୁଥିଲା ବିସ୍ଫୋରିତ ହେବାକୁ । ବିଭିନ୍ନ ସମୟରେ ଭୟଙ୍କର ଭାବେ ଏ ସଂଘର୍ଷ ବ୍ୟାପିଥିଲା । ସାମ୍ପ୍ରତିକ ହିଂସକ ସଂଘର୍ଷ ଏହାର ଏକ ସମ୍ପ୍ରସାରିତ ଧାରା ବୋଲି ସ୍ୱୀକାର କରିବା ଛଡା ଅନ୍ୟକିଛି ରାସ୍ତା ନାହିଁ ।

କିନ୍ତୁ ଏ ହିଂସା କାହିଁକି ? ରାଜନୈତିକ କ୍ଷମତା ପାଇଁ ? ପ୍ରାକୃତିକ ସମ୍ବଳ ଉପରେ ଅଧିକାର ସାବ୍ୟସ୍ତ ପାଇଁ ? ଗୋଟାଏ ସମ୍ପ୍ରଦାୟର ପରିଚୟ ଜାହିରି କରିବା ପାଇଁ ? ସାମାଜିକ, ଆର୍ଥିକ ଓ ଧାର୍ମିକ ମୂଲ୍ୟବୋଧର ବୈଧତା ଓ ଉତ୍‌କୃଷ୍ଟତା ପ୍ରମାଣ କରିବା ପାଇଁ ? ଗତ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ମନସ୍ତତ୍ତ୍ୱବିଦ୍ ଓ ସମାଜ ବିଜ୍ଞାନୀ ଏରିକ୍ ଫ୍ରମ(Erich Fromm) ଏହାକୁ ବିଶ୍ଳେଷଣ କରିଛନ୍ତି ତାଙ୍କର ପୁସ୍ତକମାନଙ୍କ ଜରିଆରେ ।

ସେ ଲେଖିଛନ୍ତି "The Sane Society" ଏବଂ "Anatomy of Human Destructiveness" ସଭ୍ୟ ସମାଜରେ ସବୁପ୍ରକାର ସାମାଜିକ ସଦ୍‌ଭାବନା ଓ ସହାବସ୍ଥାନ ଅଘଟନକ ସମାପ୍ତ ହୋଇଯାଏ । ଏହା ଫଳରେ ଏକ ପାଗଳାମୀ ନିଶ୍ଚିତ ରହିଛି ବୋଲି ଫ୍ରମ୍ ବ୍ୟାଖ୍ୟା କରିଛନ୍ତି । ଏହା ହିଁ ନିଜକୁ ଧ୍ୱଂସ କରି ଦେବାର ଅଭିପ୍ରାୟ । ଏହା ମଧ୍ୟ ଏକ ବ୍ୟବସ୍ଥିତ ଓ ସୁସ୍ଥ ସମାଜ ଧ୍ୱଂସ ହୋଇଯିବାର ଏକମାତ୍ର କାରଣ । ନାତ୍‌ସୀ ଜର୍ମାନୀର ଇହୁଦୀମାନଙ୍କୁ, କାମ୍ବୋଡିଆରେ ପଲ୍‌ପଟ୍(Pol Pot) ତାହାର ବିରୋଧୀମାନଙ୍କୁ, ଆଫ୍ରିକାର ରୁଆଣ୍ଡାରେ ହୁଟୁମାନେ ଲଘୁ ସମ୍ପ୍ରଦାୟ ଟୁଟ୍‌ସୀମାନଙ୍କୁ ଗଣହତ୍ୟା ଦ୍ୱାରା ନିଶ୍ଚିହ୍ନ କରିବାର ଏକମାତ୍ର କାରଣ ହେଲା ଏଇ ପାଗଳାମୀ । ଗୋଟାଏ ସାମୂହିକ ପାଥୋଲୋଜି (Pathology) । କନ୍ଧମାଳରେ ହିଂସାର ନିଆଁ ନ ଲିଭିବାର ଏକମାତ୍ର କାରଣ ହେଉଛି ନିଃସନ୍ଦେହରେ ପାଥୋଲୋଜିକାଲ୍ ।

ସାମାଜିକ ଓ ଧାର୍ମିକ କାରଣକୁ ନେଇ ସାମ୍ପ୍ରଦାୟିକ ଦଙ୍ଗା ବ୍ୟାପିଲେ ମୁଁ ମହାତ୍ମା ଗାନ୍ଧୀଙ୍କ କଥା ମନେ ପକାଇଥାଏ । ସ୍ପଷ୍ଟତାର ସହ ସେ କହିଛନ୍ତି ଯେ "ରାଷ୍ଟ୍ର ସମ୍ପୂର୍ଣ୍ଣ ରୂପେ ଧର୍ମ ନିରପେକ୍ଷ ହେବାକୁ ବାଧ୍ୟ ହେବ ।....ଏପରି ଭାବରେ ସବୁ ନାଗରିକ ଆଇନ ଚକ୍ଷୁରେ ସମାନ ହୋଇରହିବେ । ମାତ୍ର, ପ୍ରତ୍ୟେକ ବ୍ୟକ୍ତି ସାଧାରଣ ଆଇନର ଭଙ୍ଗ ନକରୁଥିବା ପର୍ଯ୍ୟନ୍ତ ଅବାଧ ଭାବରେ କୌଣସି ଏକ ଧର୍ମ ଅନୁସରଣ କରିବା ଲାଗି ସ୍ୱାଧୀନତା ଲାଭ କରିଥିବ ।" ଜୋରଜବରଦସ୍ତି ଏବଂ ଲୋଭ ଆକର୍ଷଣ ଦେଖାଇ ଧର୍ମାନ୍ତୀକରଣ କରାଯିବା ନିଶ୍ଚିତ ନିନ୍ଦନୀୟ । କନ୍ଧମାଳରେ ଆଦିବାସୀମାନେ ହିନ୍ଦୁଧର୍ମ ପ୍ରତି ଓ ପାଣମାନେ ଖ୍ରୀଷ୍ଟିଆନ୍ ଧର୍ମପ୍ରତି ଆକୃଷ୍ଟ ହେବା ପଛରେ କେଉଁ ମାନସିକତା ଅଛି ଏବଂ ଏଥିରେ ଧର୍ମାନ୍ତରୀକରଣ ହେବାର ପ୍ରକ୍ରିୟା ସଂଶ୍ଳିଷ୍ଟ ହୋଇଛି କି ନାହିଁ ଆଲୋଚନା କରିବାର ସମୟ ଆସିଛି । ଆଦିବାସୀମାନେ ହିନ୍ଦୁ କି ନୁହଁ ତାହା ମଧ୍ୟ ଗଭୀର ଭାବେ ଅଧ୍ୟୟନ କରିବାର ସମୟ ଉପସ୍ଥିତ ହୋଇଛି । ଆଦିବାସୀମାନେ ଏ ବିଷୟରେ ନିଜକୁ ପଚାରିବା ଜରୁରୀ ହୋଇଛି । ପାଣମାନେ ଖ୍ରୀଷ୍ଟିଆନ୍ ହୋଇଗଲେ ତାଙ୍କର ମୌଳିକ ସ୍ଥିତି ଓ ପରିଚୟରେ ପରିବର୍ତ୍ତନ ହୋଇ ପାରୁଛି କି ନାହିଁ ପ୍ରଶ୍ନ ଉଠାଯାଇଛି । ହିନ୍ଦୁଧର୍ମରେ ବିଶ୍ୱାସ ରଖୁଥିବା ଆଦିବାସୀମାନେ ସତରେ କ'ଣ ହିନ୍ଦୁରେ ପରିଣତ ହୋଇଛନ୍ତି ? ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହୋଇଥିବା ଦଳିତମାନେ ସେମାନଙ୍କର ସାମାଜିକ ସ୍ଥିତିରେ ଉନ୍ନତି ଆଣିପାରିଛନ୍ତି କି ? ଏହା ତର୍କ ବିତର୍କରେ ପରିଣତ ହୋଇଛି ।

କନ୍ଧମାଳରେ ହିନ୍ଦୁ ଓ ଖ୍ରୀଷ୍ଟିଆନ୍, ଆଦିବାସୀ ଓ ପାଣଙ୍କ ଭିତରେ ଯେଉଁ ସଂଘର୍ଷ ଲାଗି ରହିଛି, ତାହାର ସମାଧାନ ଏବେ ପ୍ରଶାସନ ବା ରାଜନୈତିକ ଦଳମାନଙ୍କ ହାତରେ ନାହିଁ । କାରଣ ଏ ସଂଘର୍ଷରୁ ଭିନ୍ନ ଭିନ୍ନ ବାଟରେ ଫାଇଦା ଉଠାଇବାକୁ ଶାସକ ଓ କ୍ଷମତାସୀନ ବର୍ଗ ଆଶା ପ୍ରକାଶ କରିଛନ୍ତି । ଯେତେବେଳେ ରାଜନୈତିକ ମୂଲ୍ୟବୋଧ ଧ୍ୱଂସ ହୋଇଯାଏ, ସେତେବେଳେ ସବୁକିଛି ଭୁଶୁଡି ପଡେ । ଏହି ଆବଶ୍ୟକ ନୈତିକତାର

ଘୋର ଅଭାବ ଦେଖାଦେଇଛି କନ୍ଧମାଳରେ । ଏପରିକି ନାଗରିକ ସମାଜରେ ଏହି ନୈତିକତାର ଏବଂ ନେତୃତ୍ୱର ଘୋର ଅଭାବ ଦେଖାଦେଇଛି । ଆମର ତଥାକଥିତ ଗାନ୍ଧୀବାଦୀମାନେ କେଉଁଠି ଲୁଚି ଯାଇଛନ୍ତି । ଯେତେବେଳେ ସମାଜର ଉଚ୍ଚସ୍ଥାନ ଅଧିକାର କରିଥିବା ସମାଜପତି, ଧର୍ମଗୁରୁ, ମଠାଧୀଶମାନଙ୍କ ସହିତ ଶାସକବର୍ଗ ମିଶି ହିଂସାକୁ ନିନ୍ଦା ନକରି ସମର୍ଥନ କରନ୍ତି, ସେତେବେଳେ ସମାଜ ପତନାଭିମୁଖୀ ହେବା ସ୍ୱାଭାବିକ । ଏହା ହିଁ କନ୍ଧମାଳରେ ଦେଖା ଦେଇଛି । ଆମ ଭିତରେ ଏକ ନୂଆ ଧର୍ମାନ୍ଧତା ଜନ୍ମ ହୋଇସାରିଛି । ଏକଥା ଆଜି ସ୍ପଷ୍ଟ ଅନୁଭବ କରିହେଉଛି ।

କନ୍ଧମାଳରେ ଶାନ୍ତି ପ୍ରତିଷ୍ଠା କରି ସ୍ୱାଭାବିକ ସ୍ଥିତି ଫେରାଇ ଆଣିବା ସହଜ କଥା ନୁହେଁ । ଏବେ ସୂଚନା ମିଳୁଛି ଯେ ବିଭିନ୍ନ ସ୍ଥାନରେ ଶହ ଶହ ସଶସ୍ତ୍ର ଯୁବକ ଏକତ୍ରିତ ହୋଇ ଏକ ନିର୍ଦ୍ଦିଷ୍ଟବର୍ଗକୁ ଆକ୍ରମଣ କରୁଛନ୍ତି । ଗୃହଦାହ ଓ ଲୁଣ୍ଠନ ଆଦି ଅବାରିତ ଅଛି, ମୃତାହତଙ୍କ ସଂଖ୍ୟା ବଢ଼ି ଚାଲିଛି । ପୋଲିସ ନିଷ୍କ୍ରିୟ ହୋଇଯାଇଛି । ସ୍ଥାନୀୟ ନେତୃବର୍ଗ ଓ ବୁଦ୍ଧିଜୀବୀ ନୀରବ ହୋଇରହିଛନ୍ତି । ଜଣେ ପ୍ରତ୍ୟକ୍ଷଦର୍ଶୀ ବନ୍ଧୁ ହିଂସାର ରୂପ ବର୍ଣ୍ଣନା କରିବାକୁ ଯାଇ କହିଥିଲେ ଯେ ବିଭିନ୍ନ ଦୁର୍ଗମ ସ୍ଥାନରେ ଆଦିବାସୀମାନେ ହାତ ହତିଆର ଧରି ସନ୍ଧ୍ୟାରେ ଏକାଠି ହେଉଛନ୍ତି । ରାତ୍ରି ହେଲେ ଏକ ନିର୍ଦ୍ଦିଷ୍ଟ ଗାଁର ହରିଜନ ଘରମାନଙ୍କ ଉପରେ ଅମାନୁଷିକ ଆକ୍ରମଣ କରୁଛନ୍ତି । ସେ ଅଞ୍ଚଳରେ ସୁରକ୍ଷାର କୌଣସି ବ୍ୟବସ୍ଥା ନାହିଁ । କେଉଁଭଳି ଭୟାନକ ସ୍ଥିତି ସୃଷ୍ଟି ହୋଇଛି ତାହା ଜଣେ ନ ଦେଖିଲେ ବିଶ୍ୱାସ କରିପାରିବ ନାହିଁ । ପାଣ ଓ ଅନ୍ୟ ଲଘୁ ସମ୍ପ୍ରଦାୟର ପରିବାର ଗାଁ ଛାଡି ପଳାୟନ କରୁଛନ୍ତି ଓ ଶରଣାର୍ଥୀ ଶିବିରରେ ଆଶ୍ରୟ ନେଇଛନ୍ତି । ସେମାନଙ୍କର ସ୍ଥିତି ବିପଦଜନକ ଅବସ୍ଥାରେ ପହଞ୍ଚିଛି । ରାଷ୍ଟ୍ର ଓ ପ୍ରଶାସନ ଆବଶ୍ୟକ ସୁରକ୍ଷା ଦେବାରେ ବିଫଳ ହୋଇଛି । ଆଦିବାସୀମାନେ ରକ୍ତମୁଖା ହୋଇ ପଡିଥିବାରୁ ଏମାନଙ୍କୁ ନିୟନ୍ତ୍ରଣ କରିବାକୁ ରଣନୀତି ତିଆରି ହୋଇପାରୁନାହିଁ । ଏଇ ସମୟରେ ଗାନ୍ଧୀଜୀଙ୍କ ଭଳି ଜଣେ ପ୍ରଭାବଶାଳୀ ମଣିଷଙ୍କର ଅଭାବ ପରିଲକ୍ଷିତ ହେଉଛି । ଯଦି ଗାନ୍ଧୀଜୀ ବଞ୍ଚିଥାଆନ୍ତେ, ସେ କନ୍ଧମାଳରେ ନିଜେ ପ୍ରଥମେ ପହଞ୍ଚି ଥାଆନ୍ତେ ଓ ଅହିଂସା ଓ ସତ୍ୟାଗ୍ରହର ରାସ୍ତା ଅବଲମ୍ବନ କରି ଅନ୍ୟମାନଙ୍କୁ ସାମିଲ୍ କରିବାକୁ ଚାହିଁ ଥାଆନ୍ତେ । ନୋଆଖାଲି, ଦିଲ୍ଲୀ ଓ କଲିକତାରେ ସ୍ୱାଧୀନତା ପ୍ରାପ୍ତି ବେଳର ସାମ୍ପ୍ରଦାୟିକ ଦଙ୍ଗାରେ ଉପସ୍ଥିତି ରହି ନିଜର ଯେଉଁ ନୈତିକ ସାହସ ଦେଖାଇଛନ୍ତି, ତାହା ନିଶ୍ଚୟ ଆଉଥରେ ପ୍ରଦର୍ଶନ କରିଥାଆନ୍ତେ । ହିଂସାରେ ମାତୁଥିବା ମୌଳିକତାବାଦୀ ମାନଙ୍କ ସହ ଯୁକ୍ତିକରି ଥାଆନ୍ତେ ସେ । ଜଳୁଥିବା ନିଆଁକୁ ଲିଭାଇବାକୁ ଉଦ୍ୟମ କରି ଥାଆନ୍ତେ । ଜୀବନକୁ ଭ୍ରୂକ୍ଷେପ ନକରି ସଦ୍‌ଭାବନା ଯାତ୍ରା କନ୍ଧମାଳର ଦୁର୍ଗମ ଅଞ୍ଚଳରେ ଆରମ୍ଭ କରିଥାଆନ୍ତେ । ଆଦିବାସୀମାନଙ୍କୁ ବାଟକୁ ଆଣି ଥାଆନ୍ତେ, ଦଙ୍ଗାଗ୍ରସ୍ତ ଓ ପୀଡିତ ପରିବାରମାନଙ୍କ ପାଖରେ ପହଞ୍ଚି ସାନ୍ତ୍ୱନା ଦେଇଥାଆନ୍ତେ । ସରକାରଙ୍କ ହାତ ବାରସୀ ନାହୋଇ ନିଜର ସ୍ପଷ୍ଟ ଓ ନିର୍ଭିକ ମତାମତ

ଦେଇଥାଆନ୍ତେ । ଶାସନଗାଦୀରେ ବସିଥିବା ଅସହିଷ୍ଣୁ ମଣିଷମାନଙ୍କୁ ସଚେତନ କରିଥାଆନ୍ତେ । ନୋଆଖାଲିରେ ସେ 'ଏକଲା ଚଲ' କଥା କହୁଥିଲେ । କାହାକୁ ଅପେକ୍ଷା ନକରି ସେ ଏକାକୀ ଲୋକଙ୍କ ଦୁର୍ଗତି ବେଳେ ପହଞ୍ଚି ଥାଆନ୍ତେ । ଗାନ୍ଧୀଜୀ ତାଙ୍କର ନିଜ ବହି "The Way to Communal Harmony" ରେ ଯେଉଁ ଆହ୍ୱାନ ଦେଇଛନ୍ତି ତାହା ଆଜି ବି ଦେବାକୁ ପଛେଇ ନଥାନ୍ତେ । ବ୍ୟକ୍ତିଗତ ସ୍ତରର ଘୃଣା, ଭୟ ଓ ସଂକୀର୍ଣ୍ଣ ମନୋଭାବ ଏକାଠି ହୋଇ ସାମ୍ପ୍ରଦାୟିକ ବିଦ୍ୱେଷରେ ପରିଣତ ହୋଇଛି । ଏଣୁ ଏହାର ଊର୍ଦ୍ଧ୍ୱକୁ ଯିବା ଦ୍ୱାରା ହିଁ ସାମ୍ପ୍ରଦାୟିକତାର ମୂଳୋତ୍ପାଟନ କରିବା ସମ୍ଭବ ହେବ । ତେଣୁ ବର୍ତ୍ତମାନ ବ୍ୟକ୍ତିଗତ ଓ ସାମୂହିକ ମଧ୍ୟସ୍ଥତାର ଘୋର ଆବଶ୍ୟକତା ରହିଛି ।

ଦୁଃଖର କଥା ଯେ ଏ ସମାଜରେ ନାଥୁରାମ ଗଡ୍‌ସେ ବା ଯୁଡା ଇସ୍କାରିଅଟ୍‌ଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ଅଥଚ ଗାନ୍ଧୀଙ୍କ ଭଳି ମଣିଷମାନେ ନିଜର ସତ୍ତା ହଜାଇ ବସିଛନ୍ତି । ଏ ରୋଗଗ୍ରସ୍ତ ଓ ହିଂସ୍ର ସମାଜରେ ଗାନ୍ଧୀଙ୍କୁ ଖୋଜି ନପାଇବା ଆଜି ସବୁଠାରୁ ବେଶି ଯନ୍ତ୍ରଣା ଦେଉଛି ।

❑ ❑ ❑

୧୮

# ଶୂନ୍ୟ ଓ ଶୂନ୍ୟତା

ପିଲାଦିନେ ସଂଖ୍ୟା ଗଣି ଶିଖିବା ସମୟରୁ ଶୂନ ସହ ନିବିଡ ସମ୍ପର୍କରେ ବାନ୍ଧି ହୋଇଯାଇଛି । ପଣକିଆ, ଅଙ୍କକଷା ଆଦି ଖୁବ୍ ଭଲ ଲାଗୁଥିଲା । ପରୀକ୍ଷାରେ ଅଙ୍କର ପ୍ରଶ୍ନୋତ୍ତର ଲେଖି ଶହେରୁ ଶହେ ନମ୍ବର ପାଇବାର ଗୌରବ ଅନେକ ଥର ମିଳିଥିଲା । ମାନସାଙ୍କ ପ୍ରତିଯୋଗିତାରେ ପୁରସ୍କାର ପାଇବା ଏକ କୃତିତ୍ୱ ଥିଲା ମୋର । ଆମ ସ୍କୁଲରେ ଆଖପାଖ ସ୍କୁଲମାନଙ୍କ ସହ ମିଳିତ ଭାବେ ପରୀକ୍ଷା ଦେଉଥିଲା ବେଳେ ପରୀକ୍ଷା କେନ୍ଦ୍ରରେ ଗଣିତ ପ୍ରଶ୍ନ ସବୁଠାରୁ ଆଗ ଉତ୍ତର ଦେଇ ବାହାଦୁରୀ ନେବାରେ ଆନନ୍ଦ ମିଳୁଥିଲା । ସ୍କୁଲ ଜୀବନରେ ଯିଏ ଗଣିତ ବିଷୟରେ ସଫଳତା ଅର୍ଜନ କରେ, ସେ ଭଲ ଓ ମେଧାବୀ ଛାତ୍ର ବୋଲି ପରିଗଣିତ ହୋଇଥାଏ । ଆମ ପରିବାରରେ ଓ ସ୍କୁଲ ଜୀବନରେ ଗଣିତ ବିଷୟ ପ୍ରତି ମୋର ମାତ୍ରାଧିକ ଆକର୍ଷଣ ଅନେକଙ୍କୁ ଆଶ୍ଚର୍ଯ୍ୟ କରୁଥିଲା । ହାଇସ୍କୁଲର ଗଣିତ, ବୀଜଗଣିତ, ଜ୍ୟାମିତି ଆଦି ଯାହା ପାଠ୍ୟକ୍ରମରେ ଥିଲା ତାହା ମୁଁ ଅଷ୍ଟମ ଶ୍ରେଣୀରୁ ପ୍ରାୟ ଶେଷ କରିଦେଇଥିଲି । ତେଣୁ ଉଚ୍ଚ ଶ୍ରେଣୀମାନଙ୍କରେ ସବୁ ଖୁବ୍ ସହଜ ଲାଗୁଥିଲା । ଖୁବ୍ ଜଟିଳ ପ୍ରଶ୍ନ ଗୁଡିକୁ ଆମର ଶିକ୍ଷକମାନେ ବେଳେବେଳେ ସମାଧାନ କରିବାକୁ ସକ୍ଷମ ହେଉନଥିଲେ । କ୍ଲାସରେ କାଳେ ସେମାନଙ୍କର ଅବମାନନା ହେବ, ମୁଁ ଆଗରୁ ସେ ସବୁର ଉତ୍ତର ନୋଟ୍ ବୁକ୍‌ରେ ଲେଖି ଦେଇଥାଏ ଓ ଆମ ପ୍ରିୟ ସାର୍‌ମାନଙ୍କୁ ଦେଖାଇଥାଏ । ସେମାନେ ନିଜ ତରଫରୁ ମଧ୍ୟ ବେଳେବେଳେ ଜଟିଳ ଗଣିତର ପ୍ରଶ୍ନ ଗୁଡିକୁ ସମାଧାନ କରିବାକୁ ମୋର ସାହାଯ୍ୟ ନେଇ ଥାଆନ୍ତି । ସମସ୍ତେ ମୋର ଗଣିତରେ ପ୍ରତିଭା ଦେଖି ଭାବି ଥାଆନ୍ତି ଯେ ବଡ ହୋଇ ମୁଁ ଭବିଷ୍ୟତରେ ଜଣେ ଗଣିତଜ୍ଞ ହେବି । ବିଶ୍ୱ ବିଖ୍ୟାତ ଗଣିତଜ୍ଞ ଓ ବିଶାରଦମାନଙ୍କ ଜୀବନ କାହାଣୀ ମଧ୍ୟ ସ୍କୁଲ ଜୀବନରେ ପଢ଼ିବାକୁ ସୁଯୋଗ ମିଳିଥିଲା । ସେତେବେଳେ ଆଭାସ ମିଳିଥିଲା ଯେ ଗଣିତଜ୍ଞମାନେ ଅନେକ କ୍ଷେତ୍ରରେ ମଧ୍ୟ ଦାର୍ଶନିକ ଓ ଲେଖକ । ଗଣିତ ଓ ଦର୍ଶନ ଭିତରେ ଯେ ନିବିଡ ସମ୍ପର୍କ ରହିଛି ତାହା ଜାଣିବାକୁ ଅନେକ ସମୟ ନେଇଥିଲା । ଗଣିତ ସହ ତର୍କଶାସ୍ତ୍ର ବା ଲଜିକ(Logic) ଏବଂ ଲଜିକ୍ ସହ ଦର୍ଶନ ଓତପ୍ରୋତଭାବେ ଜଡିତ ଏହା ବୁଝିବାକୁ କସରତ କରିବାକୁ ପଡିଥିଲା । ୧+୧ କାହିଁକି ୨ ହେଉଛି ଅଥଚ ଶୂନ

କାହିଁକି ହେଉନାହିଁ ଏହାର ବିଶ୍ଳେଷଣ କରିବା ସହଜ କଥା ନୁହେଁ । ସବୁକଥା ବୁଝି ହେଉଛି ଅଥଚ ବିଶ୍ଳେଷଣ କିର ହେଉନାହିଁ ସାଧାରଣ ଭାବେ । ଗଣିତ ଶାସ୍ତ୍ରକୁ ଉଚ୍ଚ ସ୍ତରରେ ପଢ଼ିଲା ପରେ ୦(ଶୂନ), ∞ (ଅନନ୍ତ) ଆଦିର ପ୍ରକୃତ ଅର୍ଥ ହୃଦୟଙ୍ଗମ କରିହେଲା । କଲେଜରେ ପାଦ ଦେଉ ଦେଉ, ଗଣିତ କ୍ଲାସ୍‌ରେ ଏ ପ୍ରଶ୍ନ ମୁଁ ପଚାରିଥିଲି ଆମର ଅଧ୍ୟାପକମାନଙ୍କୁ । ସେମାନଙ୍କୁ ଚମକେଇ ଦେବା ଏକ ଭିତିରିଆ ଉଦ୍ଦେଶ୍ୟ ସମ୍ଭବତଃ ଥିଲା । କିନ୍ତୁ ଆମର ଅଧ୍ୟାପକମାନେ ଆମ ଭଳି ଗଣିତକୁ ପଢ଼ିଥିବାରୁ ସେଥିରେ ଥିବା ତର୍କ ଓ ଦର୍ଶନକୁ ଆତ୍ମସ୍ଥ କରି ନାହାନ୍ତି । ଗଣିତ ଶାସ୍ତ୍ରରେ କେତେ ରୋମାଞ୍ଚ ଅଛି ସେମାନେ ହୃଦୟଙ୍ଗମ କରି ନାହାନ୍ତି କି ନିଜେ କାହାକୁ କରାଇ ନାହାନ୍ତି । ଗଣିତ ଶାସ୍ତ୍ର ସହ ପଦାର୍ଥ ବିଜ୍ଞାନ, ରାସାୟନିକ ବିଜ୍ଞାନ, ବୈଷୟିକ ବିଜ୍ଞାନ ଓ ଅର୍ଥଶାସ୍ତ୍ର ଆଦିର ଯେଉଁ ଅନ୍ତରଙ୍ଗ ସମ୍ପର୍କ ଅଛି ତାହା ଜଣେ ବୁଝି ଅନ୍ୟକୁ ବୁଝାଇବା କଠିନ କାମ । କିନ୍ତୁ ପୃଥିବୀର ଏହା ମୌଳିକ ବୋଲି ଅନେକ ପ୍ରମାଣିତ କରିଛନ୍ତି । ଉଚ୍ଚ ସ୍ତରରେ ଗଣିତ ଓ ଭୌତିକ ବିଜ୍ଞାନ ଏବଂ ଦର୍ଶନ କୁଆଡେ ସବୁ ଏକାକାର ହୋଇଛନ୍ତି । ନିଉଟନ୍ ଓ ଗାଲିଲିଓଙ୍କ ଠାରୁ ଆରମ୍ଭ କରି ଡେକାର୍ଟ ଏବଂ ଆଇନ୍‌ଷ୍ଟାଇନ୍‌ଙ୍କ ପର୍ଯ୍ୟନ୍ତ ଏହା ବଳିଷ୍ଠ ଭାବେ ପ୍ରମାଣ କରି ଆସିଛନ୍ତି । ଶୂନ କଥା ବିଚାରକୁ ନେଲେ ଗଣିତ ଓ ଦର୍ଶନର ଅଭୂତପୂର୍ବ ସମନ୍ୱୟ ହୋଇଛି ବୋଲି ସ୍ପଷ୍ଟ ବୁଝି ହେଉଛି ।

ଶୂନର ପରିକଳ୍ପନା କିପରି କରାଗଲା ଜଣେ ଜାଣିଲେ ଅବାକ୍ ହୋଇଯିବ । ମିଶରୀୟ ସଭ୍ୟତା, ବେବିଲୋନିଆନ୍ ସଭ୍ୟତା, ମାୟା ସଭ୍ୟତା, ଗ୍ରୀକ୍ ସଭ୍ୟତା ଆଦି ଅନେକ ପ୍ରାଚୀନ ସଭ୍ୟତାରେ ସଂଖ୍ୟାମାନଙ୍କୁ ଗଢ଼ାଯାଉଛି ଓ ସେମାନଙ୍କୁ ସାଙ୍କେତିକ ଭାଷାରେ ଉପସ୍ଥାପନା କରାଯାଉଛି କିନ୍ତୁ ଶୂନ ବିଷୟରେ କିଛି ସ୍ପଷ୍ଟ ଧାରଣା ଦିଆଯାଉନାହିଁ । ଶୂନର ସ୍ପଷ୍ଟ ରୂପରେଖ କେବଳ ଭାରତୀୟ ସଭ୍ୟତାରେ ଖ୍ରୀଷ୍ଟପୂର୍ବ ୩୦୦୦ରେ କରାଯାଇଛି ବୋଲି ଅନୁମାନ କରାଯାଇଛି । କିନ୍ତୁ ୪୫୮ ଖ୍ରୀଷ୍ଟାବ୍ଦରେ ଏହାର ନିର୍ଦ୍ଦିଷ୍ଟ ବ୍ୟବହାର ଜୈନଧର୍ମର ବିଭିନ୍ନ ପୁସ୍ତକରେ ଆବିଷ୍କାର କରାଯାଇଛି । ଏହାକୁ ଭିତ୍ତିକରି କୁହାଯାଇଛି ଯେ ଶୂନର ପରିକଳ୍ପନା ଓ ସଙ୍କେତ ଖ୍ରୀ.ପୂ.୨୦୦ରୁ ନିର୍ଦ୍ଧାରିତ ହୋଇ ବ୍ୟବହାର କରାଯାଇଛି । ଭାରତୀୟ ଶୂନ କାଳକ୍ରମେ ଚୀନ ଓ ଆରବ ଦେଶମାନଙ୍କୁ ବିଭିନ୍ନ ବାଟରେ ନିଆଯାଇଛି । ୬୨୮ ଖ୍ରୀଷ୍ଟାବ୍ଦରେ ଭାରତୀୟ ଗାଣତିକ ବ୍ରହ୍ମଗୁପ୍ତ ଶୂନର ମିଶାଣ, ଫେଡାଣ, ଗୁଣନ ଓ ହରଣ ଆଦିର ସୂତ୍ର ତିଆରି କରିଛନ୍ତି । ଶୂନ ବା '୦' କେମିତି ଏକ ଗୋଲାକାର ରେଖା ହୋଇ ଭାରତବର୍ଷରେ ବ୍ୟବହାର କରାଗଲା ତାହା ଗଣିତର ଇତିହାସରେ ଉଲ୍ଲେଖ କରାଯାଇଛି ।୦,୧,୨,୩,୪,୫,୬,୭,୮,୯ କୁ ନେଇ ଦଶଟି ସଂଖ୍ୟାର ଇତିହାସ ସମ୍ପୂର୍ଣ୍ଣ ହୋଇଛି । ସଂଖ୍ୟାର ବିଜ୍ଞାନ ଓ ସମସ୍ତ ସୂତ୍ର ଏଇ ଦଶଟି ସଂଖ୍ୟା ଉପରେ ପର୍ଯ୍ୟବେସିତ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଭାରତୀୟ ଦାର୍ଶନିକ ଓ ଗଣିତଜ୍ଞମାନେ ଶୂନକୁ ଶୂନ୍ୟତାର ପରିକଳ୍ପନାରୁ ସୃଷ୍ଟି କରିଛନ୍ତି ବୋଲି ସ୍ୱୀକାର କରାଯାଇଛି । ଏହାକୁ ସ୍ୱୀକାର କରି ବିଶ୍ୱବିଖ୍ୟାତ ଗଣିତଜ୍ଞ ଲେବ୍‌ନିଜ (Leibniz) କହିଛନ୍ତି

> "It is true that as the empty voids and
> the dismal wilderness belongs to zero, so
> the spirit of God and his light belong to
> the all – powerful one."

ଭାରତୀୟ ଧର୍ମଶାସ୍ତ୍ରରେ ଏଇ ଶୂନ୍ୟତାର ମଧ୍ୟ ଚମତ୍କାର ବ୍ୟାଖ୍ୟା କରାଯାଇଛି । ସ୍ଥିତି ସହ ସ୍ଥିତିହୀନତାକୁ ସମ ଦୃଷ୍ଟିରେ ଦେଖା ହୋଇଛି । ସୃଷ୍ଟି ଆରମ୍ଭ ହୋଇଛି ଏକ ଶୂନ୍ୟତା ବା ନଥିଙ୍ଗନେଶ(Nothingness)ରୁ ଏବଂ ବିଲୟ ହେବ ଏଇ ଶୂନ୍ୟତାରେ । ପରିବର୍ତ୍ତନ ଏଇଭଳି ଚାଲିଥିବ ଯାହାର ଆରମ୍ଭ ନାହିଁ କି ଶେଷ ନାହିଁ । ଏହା ସବୁବେଳେ ସ୍ୱୀକାର କରାଯାଇଛି ଯେ ଭାରତୀୟ ସଭ୍ୟତାର ଏ ପୃଥିବୀକୁ ଯାହାକିଛି ଦାନ ରହିଛି, ସେଥିରେ ଶୂନ୍ୟ ପ୍ରଥମେ ରହିବ । ଶୂନ ଓ ଶୂନ୍ୟତା ଆଜି ପର୍ଯ୍ୟନ୍ତ ଏ ମଣିଷକୁ ବୌଦ୍ଧିକତାର ଆବର୍ତ୍ତ ଭିତରେ ପକାଇ ରଖିଛି ।

ମୋତେ ସବୁବେଳେ ଶୂନ ଓ ଶୂନ୍ୟତା ଆକର୍ଷଣ କରିଛି କେଜାଣି କାହିଁକି ? ଯୁଗ ଯୁଗ ଧରି ଶୂନ ଓ ଶୂନ୍ୟତା ଦାର୍ଶନିକମାନଙ୍କୁ ଆହ୍ୱାନ ଦେଇଛି, ରହସ୍ୟବାଦୀମାନଙ୍କୁ ଆକ୍ରାନ୍ତ କରିଛି । ବୈଜ୍ଞାନିକମାନଙ୍କୁ ଶୂନ୍ୟତା ସୃଷ୍ଟିକରିବାକୁ ଡାକରା ମିଳିଛି । ମହାକାଶ ବିଜ୍ଞାନୀମାନେ ଏହି ଶୂନ୍ୟତାକୁ ବିଶାଳ ବ୍ରହ୍ମାଣ୍ଡ ଭିତରେ ଖୋଜିବାକୁ ଲାଗିଛନ୍ତି । ତର୍କଶାସ୍ତ୍ରୀ ମାନେ ଏବେସୁଦ୍ଧା ଶୂନ୍ୟତାର ରହସ୍ୟ ଖୋଜି ନପାରି ପଥଭ୍ରଷ୍ଟ ହୋଇ ପଡିଛନ୍ତି । ଆଧ୍ୟାତ୍ମିକବାଦୀ ଧର୍ମଶାସ୍ତ୍ରୀମାନେ ଏହାକୁ ସବୁ ସୃଷ୍ଟିର ମୂଳ ବୋଲି କହିଆସୁଛନ୍ତି । ଭୀମ ଭୋଇଙ୍କ ଭଳି କବି ଶୂନ୍ୟଦେହୀର ପରିକଳ୍ପନା ମଧ୍ୟ କରିଛନ୍ତି । ଶୂନ ଓ ଶୂନ୍ୟତାକୁ କେବଳ ଗଣିତଜ୍ଞମାନେ ଏକ ନିର୍ଦ୍ଦିଷ୍ଟ ରୂପଦେବାକୁ ସଫଳ ହୋଇଛନ୍ତି । ଏହା ସଂଖ୍ୟାରେ ଏବଂ ପରିଭାଷାରେ ସୀମିତ ହୋଇ ରହିନାହିଁ ।

ଜୀବନ ଜିଜ୍ଞାସାର ସବୁ ପ୍ରଶ୍ନ ଏବଂ ଅସ୍ତିତ୍ୱବାଦର ପ୍ରହେଳିକା ଭିତରେ ମୁଁ ଶୂନ ଓ ଶୂନ୍ୟତାର ପରିପ୍ରକାଶ ଦେଖି ପାରିଛି । ଏକଥା ସତ୍ୟ ଯେ ଶୂନ୍ୟତା ନିଶ୍ଚିତ ଭାବେ ରହିଛି କଳ୍ପନା ଭିତରେ ଓ ବାହାରେ । ଯଦି ଶୂନ୍ୟ ବା ଜିରୋ ସତରେ ନଥାନ୍ତା ଏ ଜଗତକୁ ମାପି ହୁଅନ୍ତା କି ? କଳ୍ପନା କରିହୁଅନ୍ତା କି ? ଶୂନ୍ୟତାରେ ବିଶ୍ୱାସ କରିବାକୁ ହିଁ ପଡିବ ବୋଲି କୁହାଯାଇଛି । ବିଶ୍ୱ ସାହିତ୍ୟକୁ ଆଖି ପକାଇଲେ ଅନେକ କିଛି ଏ ବିଷୟରେ ଲେଖାଯାଇଛି ବୋଲି ଜଣାପଡେ । ସେକ୍‌ସପିଅର ଲେଖିଛନ୍ତି Much Ado about Nothing । ଏପରିକି ତାଙ୍କର Winter's Tale, Hamlet ଓ Macbeth ରେ ମଧ୍ୟ ଏଇ ବିଷୟକୁ ନେଇ ବିଭିନ୍ନ ମତାମତ ରହିଛି । ଜାଁ ପଲ୍ ସାର୍ତ୍ତ(Jean Paul Sartre)ଙ୍କ Being and Nothingness ଏକ ଯୁଗାନ୍ତକାରୀ ପୁସ୍ତକ ଯାହା ଅଧ୍ୟୟନ କରିଲେ ନାସ୍ତିକଙ୍କ

ପୃଥିବୀକୁ ଅଧିକ ବୁଝିହେବ । ମଣିଷର ଅସ୍ତିତ୍ୱର ଅନ୍ୟ ଏକ ଦିଗ ଜାଣିବା ସମ୍ଭବ ହେବ । ପୃଥିବୀ ସାରା ସତରେ କ'ଣ ଶୂନ୍ୟତା ଭରି ରହିଛି ? ଏ କଥା କେତେକ ଲୋକ ପ୍ରଶ୍ନ କରିଛନ୍ତି । ଆଉ କେତେକ ମଧ୍ୟ ଏ ପ୍ରଶ୍ନର ଉତ୍ତର ଦେଇ ଭିନ୍ନମତ ପୋଷଣ କରିଛନ୍ତି । ସବୁ ମତବାଦ ଓ ଏ ସମ୍ପର୍କିତ ପୁସ୍ତକମାନ ପଢ଼ିବାକୁ ଜଣେ ସୁଯୋଗ ଖୋଜିବା ଆବଶ୍ୟକ । ମୁଁ ସମ୍ଭବତଃ ଜୀବନ ସାରା ଏହା ହିଁ ଚେଷ୍ଟା କରିଆସିଛି ।

ଶୂନ୍ୟତା ଓ ନିଃସଙ୍ଗତା ଜୀବନରେ କେତେବେଳେ କେମିତି ଅଘଟନକ ଆସିଯାଏ ଜାଣି ହୁଏ ନାହିଁ । ସବୁ ଅଛି ଅଥଚ କିଛି ନାହିଁ । କୋଳାହଳ ଭିତରେ ଚରମ ନୀରବତା । ସବୁ ଆଶାର ଆଲୋକ ଭିତରେ ଘନ ଅନ୍ଧକାର ଏକ Black Hole । ରେଭେନ୍‌ସା କଲେଜରେ ପାଦଦେଲା କ୍ଷଣି ଆମକୁ ଶୁଣିବାକୁ ସୁଯୋଗ ମିଳିଥିଲା ସାର୍ତ୍ତଙ୍କ Being and Nothingness ବହି ବିଷୟରେ । ଆମର ଜଣେ ଦି'ଜଣ ଉପର ଶ୍ରେଣୀର ଛାତ୍ର ମଧ୍ୟ ହାତରେ ଏ ମୋଟା ବହିଟି ଧରି ଗର୍ବରେ ଚାଲିବାର ଦୃଶ୍ୟ ମଧ୍ୟ ନଜରକୁ ଆସିଥିଲା । କିନ୍ତୁ ମଣିଷ ଆସ୍ତିସୂଚକ ଜୀବନ ସଙ୍ଗୀତ ଭିତରେ ନାସ୍ତିସୂଚକ ବିଚ୍ଛେଦ ସଙ୍ଗୀତ କାହିଁକି ଶୁଣିବାକୁ ଚାହିଁବ ? କାହିଁକି ସବୁକଥାକୁ ହତାଦର କରିବ ? ଏସବୁ ପ୍ରଶ୍ନ ବାରମ୍ବାର ମନକୁ ଆପେଆପେ ଆସି ଯାଉଥିଲା । ଭଲ ପାଇବା ଓ ଭଲ ନପାଇ ପାରିବାର ଏକ ଅଭିନବ ଯନ୍ତ୍ରଣା ସବୁବେଳେ ରହିଆସିଛି । ତାରୁଣ୍ୟରେ ଏଇ ଯନ୍ତ୍ରଣା ଆମ ସମସ୍ତଙ୍କୁ ବିଭିନ୍ନ ଢ଼ଙ୍ଗରେ ପ୍ରଭାବିତ କରିଥିଲା । ସେଇଥିପାଇଁ ଶୂନ୍ୟତାକୁ ଖୋଜିବାକୁ ଆମେ କେତେ କ'ଣ ଯୋଜନା ନକରିଛୁ ! ବେଳେ ବେଳେ ଜଣେ ବନ୍ଧୁ ପ୍ରସ୍ତାବ ଦିଅନ୍ତି ଯେ ଆମେ ଟ୍ରେନ୍ ଧରି ସବୁଠାରୁ ଅନ୍ଧକାରାଚ୍ଛନ୍ନ ଷ୍ଟେସନ୍‌ରେ ଓହ୍ଲେଇ ପଡିବା ଯେଉଁଠି କେବେହେଲେ କେହି ଟ୍ରେନରେ ଚଢ଼ନ୍ତି ନାହିଁ କି ଓହ୍ଲାନ୍ତି ନାହିଁ । ସେଇଠି ଗୋଟାଏ ଦି'ଟା ସିମେଣ୍ଟ ବେଞ୍ଚ ଥିବ । ଆମେ ସବୁ ନୀରବରେ ବସି ରହି କେତେ ରାତି ସେଇଠି କାଟି ଦେବା । ତା'ହେଲେ ଶୂନ୍ୟତାକୁ ଆଉ ଟିକିଏ ନିକଟରୁ ଅନୁଭବ କରାଯାଇ ପାରିବ । ଯୋଜନା ଆମ ଚମତ୍କାର ଥିଲା କିନ୍ତୁ ଏହା ସାକାର ହୋଇ ପାରିଲା କି ? ମନର କଥା ମନ ଭିତରେ ରହିଗଲା । ଆହୁରି ମଧ୍ୟ ଅଦ୍ଭୁତ ଖିଆଲ ମନକୁ କେବେ କେମିତି ଆସିଯାଏ । ଶୂନ୍ୟତା ଯେମିତି ଆନନ୍ଦମୟ ଜୀବନର ଏକ ଭିନ୍ନ ପ୍ରତିଫଳନ । ସୂର୍ଯ୍ୟାସ୍ତ ବେଳାରେ ଅଥବା ମଧ୍ୟରାତ୍ରିର ନିର୍ଜନ ଚନ୍ଦ୍ରାଲୋକ ମଧ୍ୟରେ ଜଣାପଡେ ଜୀବନ ଅର୍ଥହୀନ । ସେ ସମୟରେ ନିଜକୁ ଆବିଷ୍କାର କରିଲାବେଳେ ଅନୁଭବ କରିହୁଏ ଶୂନ୍ୟତାକୁ କିନ୍ତୁ ଶୂନ୍ୟତା କ'ଣ ? ଲିଓନାର୍ଡୋ ଦ'ଭିଞ୍ଚି (Leonadro da Vinci) କହିଛନ୍ତି "Among the Great Things which are Found among us the existence of Nothing is the Greatest."

❑❑❑

୧୯

# ଅସ୍ତିତ୍ୱହୀନତା ସମ୍ପର୍କରେ

ଓଡ଼ିଶାରେ ଅସ୍ତିତ୍ୱବାଦ ବିଷୟରେ ବେଶୀ ଅଧ୍ୟୟନ କରିଥିବା ଓ ଲେଖିଥିବା ବ୍ୟକ୍ତିମାନଙ୍କ ଭିତରେ ସ୍ୱର୍ଗତ ଅଧ୍ୟାପକ ଶରତକୁମାର ମହାନ୍ତି ଅଗ୍ରଗଣ୍ୟ । ଆମକୁ ଗଣିତ ପଢ଼ାଉଥିଲେ ସେ ରେଭେନ୍‌ସା କଲେଜରେ । କ୍ଲାସ୍‌ରେ ଅବଶ୍ୟ ସେ ଜଣେ ପ୍ରବୀଣ ଶିକ୍ଷକ ଥିଲେ କି ନାହିଁ ଏହା ଆମେ କେବେ ମୂଲ୍ୟାଙ୍କନ କରିନଥିଲୁ । ତାଙ୍କୁ ଜଣେ ବୁଦ୍ଧିଜୀବୀ ଓ ଅସ୍ତିତ୍ୱବାଦୀ ହିସାବରେ ଆମେ ନିଃସର୍ତ୍ତ ଗ୍ରହଣ କରିଥିଲୁ । ସମୟ ହେଉଛି ସତୁରୀ ଦଶକର ଆରମ୍ଭ । ଆମେ ଆମର ଲକ୍ଷ୍ୟ ଓ ଅଲକ୍ଷ୍ୟରେ ନିଜକୁ ଅସ୍ତିତ୍ୱବାଦୀ ବୋଲି ଘୋଷଣା କରି ସେଇଭଳି ଜୀବନ ବିତାଇବାର ପ୍ରୟାସ କରିଥିଲୁ । ଉପନ୍ୟାସରେ ପଢୁଥିବା ଚରିତ୍ରମାନଙ୍କୁ ନକଲ କରି ନିଜକୁ ସେଇଭଳି ରୂପାନ୍ତରିତ ହେବାକୁ ଭଲ ପାଉଥିଲୁ । ଜଣେ ବନ୍ଧୁ 'କାଫ୍‌କା'ଙ୍କ ମେଟାମରଫସିସ୍ ଢ଼ାଞ୍ଚାରେ ସକାଳୁ ଉଠି ପଡି କହିବେ ସେ ଜଣେ ଭୂତ ଦ୍ୱାରା କବଳିତ ହୋଇଛନ୍ତି । ଆଉ ଜଣେ ବନ୍ଧୁ 'ଭାନ୍‌ଗଗ୍'ଙ୍କୁ ଅନୁଭବ କରି କ୍ଲାସରେ ସବୁ ସୁନ୍ଦରୀ ଝିଅଙ୍କ ପ୍ରେମରେ କିପରି ପଡି ଯାଇଛନ୍ତି ସେ କଥା ବର୍ଣ୍ଣନା କରିବେ ଓ କିପରି ପ୍ରେମ ନିବେଦନ କରାଯିବ ତାହା ରିହର୍ସାଲ୍ କରିବେ । ଆଉ ଜଣେ ବନ୍ଧୁ ଦୁଃସାହସିକ ଜୀବନ ପ୍ରଦର୍ଶନ କରିବା ପାଇଁ ନନ୍ଦନକାନନରେ ବାଘମାନଙ୍କର କାନ ଛୁଇଁବେ । ଆଉ ଜଣେ ବନ୍ଧୁ ନିଜକୁ ସବୁଠାରୁ ଦୁଃସ୍ଥ ଓ ପତିତ ବୋଲି ମନେ କରି ଦସ୍ତୋଭସ୍କିଙ୍କ ସୃଷ୍ଟ 'ସୋନ୍ୟା' ବୋଲି ଝିଅଟିର ସାନ୍ନିଧ ପାଇଁ ଦିବାସ୍ୱପ୍ନରେ ହଜିଯିବେ । ଜୀବନ ଓ ଯୌବନକୁ ହତାଦର କରି ଅସ୍ତିତ୍ୱବାଦୀ ପାଲଟିବାର ଆହ୍ୱାନକୁ ଆମେ ସମସ୍ତେ ଗ୍ରହଣ କରିଥିଲୁ । ସେଇଥିପାଇଁ ଅସ୍ତିତ୍ୱହୀନତାକୁ ଆମେ ନିବିଡଭାବେ ଅନୁଭବ କରିପାରୁଥିଲୁ । ଆମେମାନେ ଗୋଟିଏ ଦୃଷ୍ଟିରୁ ବିଦ୍ରୋହୀ ହୋଇପଡିଥିଲୁ । ସ୍ଥିତିହୀନତାର ପରିପ୍ରକାଶ କ'ଣ ? ଯେଉଁଠି ସବୁ ଅସତ୍ୟ ଓ ଅବାସ୍ତବ ପ୍ରତୀୟମାନ ହେଉଛି, ସେଇଠି ବଞ୍ଚିବାର ପାଥେୟ କ'ଣ ? ଏ ପ୍ରଶ୍ନ ଆମେ ବାରମ୍ବାର ପଚାରୁଥିଲୁ । ଏକଥାର ରହସ୍ୟ ବୁଝିବା ପାଇଁ ବିଶ୍ୱ ସାହିତ୍ୟକୁ ବେଶ୍ ଘଣ୍ଟା ଚକଟା କରୁଥିଲୁ । କେହି ଯଦି ଏ ବିଷୟରେ ବିଚାର ଆଲୋଚନା କରୁଥିଲେ, ତାଙ୍କୁ ମନଧ୍ୟାନଦେଇ ଶୁଣୁଥିଲୁ । ସାହିତ୍ୟ ଓ ଦର୍ଶନର ବିଭିନ୍ନ ଦିଗକୁ ଆବିଷ୍କାର କରିବାକୁ ଗୋଡ ବଢ଼ାଇଥିଲୁ । ସେଇଥିପାଇଁ ଦସ୍ତୋଭସ୍କିଙ୍କ ଠାରୁ ଆରମ୍ଭ କରି ସାର୍ତ୍ତଙ୍କ ପର୍ଯ୍ୟନ୍ତ ବିଶିଷ୍ଟ

ଲେଖକମାନେ ଆମର ଅତି ଆପଣାର ହୋଇଥିଲେ । ସେମାନଙ୍କର ଚରିତ୍ରମାନେ ମଧ୍ୟ । ଆମର ଚେତନା ବୋଧ ସବୁଠାରୁ ଗଭୀର ଥିଲା । ଅସ୍ତିତ୍ୱବାଦୀ ସାହିତ୍ୟକୁ ସେଥିପାଇଁ ବୁଝିବା କଷ୍ଟକର ହୋଇନଥିଲା । "କିନ୍ତୁ ଅସ୍ତିତ୍ୱବାଦ କ'ଣ ? ଏହାର ଗୋଟିଏ ସିଧାସଳଖ ଉତ୍ତର ଦେବା ହଠାତ ସମ୍ଭବ । ମାତ୍ର ଅସ୍ତିତ୍ୱବାଦକୁ ବୁଝି ସେଥିରୁ କିଛି ଗ୍ରହଣ କରିବାକୁ ଇଚ୍ଛା କରୁଥିବା ପ୍ରଶ୍ନକର୍ତ୍ତାଙ୍କୁ ଏ ଉତ୍ତର ସାହାଯ୍ୟ କରେ ନାହିଁ । 'ବାଦ'ର ପ୍ରଚଳିତ ଅର୍ଥରେ ଅସ୍ତିତ୍ୱବାଦ ଗୋଟିଏ 'ବାଦ'ନୁହେଁ । ବରଂ ଅସ୍ତିତ୍ୱବାଦ ଏକ ବାଦବିରୋଧୀବାଦ ।"

(ଶ୍ରୀ ଶରତ କୁମାର ମହାନ୍ତି : ଅସ୍ତିତ୍ୱବାଦର ମର୍ମକଥା)

ଶ୍ରୀ ଶରତ ମହାନ୍ତି ଅସ୍ତିତ୍ୱବାଦକୁ ଓଡ଼ିଆ ପାଠକଙ୍କ ପାଖରେ ସରଳ ଭାବରେ ଉପସ୍ଥାପନା କରି ଆମ ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇଛନ୍ତି । ବୁଦ୍ଧିଜୀବୀ ମହଲରେ ସବୁଦିନ ପାଇଁ ଏ ବହିଟି ଗୋଟିଏ ମୂଲ୍ୟବାନ ଜ୍ଞାନଭଣ୍ଡାର ହୋଇସାରିଛି । ଅସ୍ତିତ୍ୱବାଦ ସମ୍ପର୍କରେ ଶ୍ରୀ ମହାନ୍ତି ଆହୁରି କହିଛନ୍ତି -

> "ମଣିଷ ଜୀବନ ଏପରି ଜଟିଳ, ଅଙ୍କାବଙ୍କା ଓ ଖଣ୍ଡିତ ଯେ ବିଚାର-ପାତ୍ରରେ
> ଜୀବନକୁ ଭରିହୁଏ ନାହିଁ । ମଣିଷ ଜୀବନ ଖାଲି ଆଲୁଅ
> ନୁହେଁ, ଅନ୍ଧାର ଆଲୁଅର ମିଶ୍ରଣ; ସଳଖ ନୁହେଁ, ଅଙ୍କା ବଙ୍କା-
> ସଂଦିଗ୍ଧ (Ambiguous), ଅବିଚ୍ଛିନ୍ନ ନୁହେଁ ବିଚ୍ଛିନ୍ନ । ସେ
> ଜଗତଠାରୁ ବିଚ୍ଛିନ୍ନ, ଈଶ୍ୱରଙ୍କଠାରୁ ବିଚ୍ଛିନ୍ନ, ଏପରିକି ନିଜ
> ଠାରୁ ବିଚ୍ଛିନ୍ନ (ଶ୍ରୀ ଶରତ କୁମାର ମହାନ୍ତି- ଅସ୍ତିତ୍ୱବାଦର ମର୍ମ କଥା)

ଆମେ ସବୁ କଲେଜର ବିସ୍ତୀର୍ଣ୍ଣ ପଡିଆରେ ଥିବା ସିମେଣ୍ଟ ବେଞ୍ଚରେ ସବୁଦିନ ସନ୍ଧ୍ୟାରେ ଏକାଠି ହେଉଥିଲୁ । ଜୀବନ ଓ ଯୌବନ ବିଷୟରେ ଭାବ ବିନିମୟ କରୁଥିଲୁ । ନିଜ ପୃଥିବୀରେ ପ୍ରକୃତରେ ଆମେ ନିର୍ବାସିତ ହୋଇଛୁ କି ନାହିଁ ତାହା ଜାଣିବାକୁ ଚାହିଁଥିଲୁ । ସାର୍ତ୍ତଙ୍କ 'ନସିଆ'(NauSea) କାମ୍ୟୁଙ୍କ 'ଆଉଟସାଇଡର'(Outsider), କାଫ୍‌କାଙ୍କ 'ଦି ଟ୍ରାୟଲ୍'(The Trial) ବହି ମଧ୍ୟ ସବୁ ଆଲୋଚିତ ହେଉଥିଲା । ଆମେ ସବୁ କ୍ଲାସ୍‌ରୁମ୍‌ରେ ଲେକ୍‌ଚର ନ ଶୁଣି କେଉଁ ଚା'ଦୋକାନରେ ବସି ଏକ ଭିନ୍ନ ଆଲୋଚନାରେ ନିମଗ୍ନ ହୋଇଯାଉଥିଲୁ । ହୋଟେଲରେ ବସିଥିଲା ବେଳେ କ୍ଷୁଧାର ବିଶ୍ଳେଷଣ କରୁଥିଲୁ । ରାସ୍ତା କଡରେ ଛିଡା ହୋଇ ଚଳପ୍ରଚଳ ହେଉଥିବା ଅଗଣିତ ଅପରିଚିତ ମଣିଷମାନଙ୍କର ମୁହଁରେ ହସ ଅଛି କି ଲୁହ ଅଛି ଜାଣିବାକୁ ଚେଷ୍ଟା କରୁଥିଲୁ । ଯିଏ ଆମ ସହ ମିଶୁ ନାହିଁ ବା ଆମକୁ ଜାଣି ନାହିଁ, ତାହାର ପୃଥିବୀଟି କିପରି ହୋଇଥିବ, ଏକଥା ମଧ୍ୟ ଆମର କୌତୂହଳୀ ମନରେ ସବୁବେଳେ ସ୍ଥାନ ପାଇଥିଲା । ଆମେ ଜାଣିଥିଲୁ ଯେ ସମୟ ଆମ ଉପରେ ବୋଝ୍ ହୋଇ ସାରିଛି । ସାଧାରଣ ମଣିଷଙ୍କର ଦୁଃଖ ଓ ଯନ୍ତ୍ରଣାକୁ ଅନ୍ତଃସ୍ଥ କରିବା ସ୍ୱାଭାବିକ ହୋଇ ଯାଇଥିଲା ସେ ସମୟରେ । କୌଣସି ନୈତିକ, ଆଧାତ୍ମିକ ଓ ମହାଜାଗତିକ ମୂଲ୍ୟବୋଧ ଆମ ପାଇଁ ଗ୍ରହଣଯୋଗ୍ୟ ହୋଇନଥିଲା । ଅସ୍ତିତ୍ୱବାଦୀ ସାହିତ୍ୟରେ ନାୟକମାନେ ଆମର "ହିରୋ" ଥିଲେ । ଅସ୍ତିତ୍ୱବାଦୀ ଲେଖକମାନେ

ଆମର ଗୁରୁର ସ୍ଥାନ ଅଧିକାର କରିଥିଲେ । ପୃଥିବୀକୁ ଆମେ ଅସ୍ତିତ୍ୱବାଦର ମାପକାଠି ଦ୍ୱାରା ମାପୁଥିଲୁ ଯେ ଏହା ଆମ ପାଇଁ ବଞ୍ଚିବାଯୋଗ୍ୟ କି ନୁହେଁ । ଆମେ ପୃଥିବୀ ଭିତରେ ଆଉ ଏକ ପୃଥିବୀ ଖୋଜୁଥିଲୁ । ଏକଥା ସତ ଯେ ଏକ ଅସମ୍ଭବ ଅସହାୟତା ଓ ଶୋଚନୀୟତା ଆମକୁ ଗୋଟାପଣେ ଗ୍ରାସ କରିଥିଲା । ସେଇଥିପାଇଁ ଆମେ ଅଜବ ଓ ଉଦ୍‌ଭଟ ଜଣାପଡୁଥିଲୁ । ଆମେ ଯାହା କିଛି କରୁଥିଲୁ ତାହାର ଯଥାର୍ଥତା ପ୍ରତିପାଦନ କରୁଥିଲୁ । ତେଣୁ ଆମେ ନିଜକୁ ଆଶ୍ୱାସନା ଦେଇ ପାରୁଥିଲୁ । ସେ ଦିନର ଆଶ୍ୱାସନା ସମ୍ଭବତଃ ବଞ୍ଚି ରହିବାର ପ୍ରେରଣା ଆମକୁ ଦେଇ ଆସୁଛି ଆଜି ପର୍ଯ୍ୟନ୍ତ ।

ଜାଁ ପଲ୍ ସାର୍ତ୍ର (Jean Paul Sartre)ଙ୍କର ଲିଖିତ ଉପନ୍ୟାସ ନସିଆ (NauSea) ଏବଂ ଗଳ୍ପ ସଙ୍କଳନ 'ଇଣ୍ଟିମେସି' ଆମ ଗହଣରେ ବେଶ ଆଦର ଲାଭ କରିଥିଲା । ସେ ଭିତରୁ 'ଦି ୱାଲ' (The wall) ନାମକ ଗଳ୍ପ ଅସ୍ତିତ୍ୱବାଦର ଏକ ଦୃଢ଼ ଦୃଷ୍ଟାନ୍ତ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସମାଲୋଚକମାନେ କୁହନ୍ତି ଯେ ଓ'ହେନ୍‌ରୀ ବା ହେମିଂଗ୍‌ୱେଙ୍କ ଗଳ୍ପ ଠାରୁ ଏ ଗଳ୍ପଟି ସମୃଦ୍ଧ ଓ ବଳିଷ୍ଠ । ମୃତ୍ୟୁ ସହ ମହାଁମୁହିଁ ହେବା ଜନିତ ଅନୁଭୂତି ଏଥିରେ ଲେଖାଯାଇଛି । ଗୋଟାଏ ନିଶାଗ୍ରସ୍ତ ମଣିଷ ଭଳି ଆମକୁ ସାର୍ତ୍ରଙ୍କ ସବୁ ମୂଳଲେଖା ପଢ଼ିବାକୁ ହୋଇଥିଲା । ଅସ୍ତିତ୍ୱବାଦର ନୂତନ ସଜ୍ଞା ବୁଝିବାକୁ ହୋଇଥିଲା । ସାର୍ତ୍ରଙ୍କୁ ପ୍ରକୃତରେ ବୁଝିବାକୁ ଯାଇ କିଏର କେ ଗାର୍ଡ(Kierkgaard), ନିତ୍‌ସେ (Nietzsche), ରିଲକେ(Rilke), ଯସ୍‌ପର୍‌ସ(Jaspers), ହାଇଡଗାର୍ (Heidegger), ସିମନ୍ ଦେ ବିଭୁଆ (Simone de Beauvoir) ଆଦିଙ୍କୁ ବି ପଢ଼ିବାକୁ ପଡିଥିଲା । କାମ୍ୟୁ ଓ ସାର୍ତ୍ରଙ୍କ ଭିତରେ ଥିବା ମୌଳିକ ପ୍ରଭେଦ ଓ ବୌଦ୍ଧିକ ଉନ୍ନତି ମଧ ବୁଝିବାକୁ ପଡିଥିଲା । ଅସଲକଥା ଯେ ଅସ୍ତିତ୍ୱବାଦ ସମ୍ପର୍କରେ ଟୀକା ଟିପ୍‌ପଣୀ ସେତେବେଳେ କ୍ୱଚିତ ପଢ଼ିବାକୁ ସୁଯୋଗ ମିଳିଥିଲା । କେବେ କେମିତି ଅଧାପକମାନେ ପରୋକ୍ଷଭାବେ କହିବସୁଥିଲେ । ଜୀବନଟା ଯେ ଫମ୍ପା ଓ ଶୂନ୍ୟତାରେ ଭରି ଯାଇଛି ଓ ଆମକୁ Hollow man ବା ଫମ୍ପା ମଣିଷ ବୋଲି ଆଖ୍ୟାୟିତ କରାଯାଇ ସାରିଛି ତାହା ଅନୁଭବ କରିବାକୁ ବେଶୀ ସମୟ ଲାଗିନଥିଲା । ସାର୍ତ୍ରଙ୍କ ଦୁଇଟି ତତ୍ତ୍ୱ ଆମକୁ ବୌଦ୍ଧିକତାରେ ସ୍ୱଚ୍ଛତା ଆଣିବା ପାଇଁ ଯଥେଷ୍ଟ ଖୋରାକ ଯୋଗାଇଥିଲା । ଗୋଟିଏ ଥିଲା ଅସ୍ତିତ୍ୱବାଦ ବନାମ ମାର୍କସବାଦ ଏବଂ ଅନ୍ୟଟି ଥିଲା ଅସ୍ତିତ୍ୱବାଦ ହିଁ ମାନବବାଦ । ଏହାର ବିଶ୍ଳେଷଣ ସାର୍ତ୍ର ଯେଉଁଭଳି କରିଛନ୍ତି ତାହା ଅନେକଙ୍କୁ ଯେ ନିଶ୍ଚିତ ପ୍ରଭାବିତ କରିଛି ତାହା ଅସ୍ୱୀକାର କରିହେବ ନାହିଁ । ସାର୍ତ୍ର କ'ଣ ସତରେ ଅସ୍ତିତ୍ୱବାଦ ଭିତରେ ମାର୍କସବାଦ ଏବଂ ମାନବବାଦକୁ ଆବିଷ୍କାର କରିଥିଲେ ? ମୁଁ ଅନେକ ବର୍ଷ ପରେ ସାର୍ତ୍ରଙ୍କର ଅନ୍ୟତମ ଶ୍ରେଷ୍ଠ ଓ ସ୍ୱଷ୍ଟକୃତି 'Search for a Method' ପଢ଼ିବାକୁ ସୁଯୋଗ ପାଇଥିଲା । କର୍ମ ଚିନ୍ତନର ଯେଉଁ ଉଠାଣି ଗଡାଣି ଦେଇ ଆମକୁ ଯିବାକୁ ହୋଇଛି ଓ ଆମ ସମସ୍ତଙ୍କର ଅନ୍ୱେଷା ଯେ ଚିରନ୍ତନ ହୋଇ ପାରିଛି, ତାହା ଜଣେ 'Search for a Method' ବହି ପଡିଲେ ହୃଦୟଙ୍ଗମ କରିପାରିବ ।

କଲେଜ ଜୀବନରେ ଏଇଭଳି ଦୁଇମୁହାଁଣୀରେ ଆମକୁ ହିଁ ବହୁତ ସମୟରେ ପଡ଼ିବାକୁ ହୋଇଥିଲା । ବନ୍ଧୁ ଶ୍ରୀ ଚିତ୍ତ ବେହେରା ଆମ ଭିତରେ ଜଣେ କଠୋରପନ୍ଥୀ ମାର୍କସିଷ୍ଟ ଥିଲେ ଓ ଆମ ସହ ଡାଇଲେକ୍‌ଟିକ୍‌ସର ସବୁ ଦିଗକୁ ନେଇ ଯୁକ୍ତି କରୁଥିଲେ । ବସ୍ତୁବାଦକୁ ମାନ୍ୟତା ଦେବାକୁ କହୁଥିଲେ । ଚାଷୀ ମୂଲିଆ ଓ ଶ୍ରମିକଙ୍କ ପାଇଁ ଯୁକ୍ତି ବାଢ଼ୁଥିଲେ । ଆମ ସମୟରେ ଛାତ୍ର ସଂଗଠନମାନଙ୍କରେ ପ୍ରଭାବ ବିସ୍ତାର କରିବାକୁ ତାଙ୍କର ଉଦ୍ୟମ ସବୁଠାରୁ ଉଲ୍ଲେଖନୀୟ ଥିଲା । ମୋର ମନେ ଅଛି ଯେ ମଣିଷର ସାଧାରଣ ଓ ମୌଳିକ ସମସ୍ୟା ଗୁଡ଼ିକର ସମାଧାନର ରାସ୍ତା କ'ଣ ତାହା ବିଷୟରେ ଏକ ଯୁକ୍ତିତର୍କ ହୋଇଥିଲା ତାଙ୍କ ସହ । ମୋର ଯୁକ୍ତି ଥିଲା ଯେ ପୃଥିବୀର ଓ ମଣିଷର ସବୁ ସମସ୍ୟାର ସମାଧାନ ମାର୍କ୍‌ସବାଦ ଦ୍ୱାରା ସମ୍ଭବ ନୁହେଁ । ପ୍ରତ୍ୟେକ ମଣିଷ ସ୍ୱତନ୍ତ୍ର ଓ ଅନନ୍ୟ । ତାହାର ସମସ୍ୟାଗୁଡ଼ିକର ସମାଧାନ ପାଇଁ କୌଣସି 'ଇଜମ୍' ବା ମତବାଦ ଯଥେଷ୍ଟ ନୁହେଁ । କେଜାଣି କାହିଁକି ମାର୍କସବାଦ ପ୍ରତି ଆମର ଆକର୍ଷଣ ଯଥେଷ୍ଟ ନଥିଲା । ଅନ୍ୟ ପକ୍ଷରେ ମାନବବାଦକୁ ଆପଣାର କରିବା ପାଇଁ ବିଶିଷ୍ଟ ଲେଖକ ଓ ସମାଲୋଚକ ପ୍ରଫେସର ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ସାହିତ୍ୟକୃତି ଆମକୁ ଯଥେଷ୍ଟ ସାହାଯ୍ୟ କରିଥିଲା । ମଣିଷ ସହ ମଣିଷର ସମ୍ପର୍କ ଓ ବାର୍ତ୍ତାଳାପ, ପ୍ରେମ ଓ ବନ୍ଧୁତ୍ୱ, ନିଜକୁ ଆବିଷ୍କାର କରିବାକୁ ଯାଇ ମହାଜାଗତିକ ରହସ୍ୟ ଭେଦ କରିବାର ରୋମାଞ୍ଚ ଆଦି ଚିତ୍ତଭାଇ ବିଭିନ୍ନ ମାଧ୍ୟମରେ ଲେଖା ହେଉକି ଭାଷଣ ହେଉ ପ୍ରକାଶ କରୁଥିଲେ । ମାର୍ଟିନ ବୁବର(Martin Buber) ଏବଂ ଜିଡ୍ଡୁ କୃଷ୍ଣମୂର୍ତ୍ତି (J. Krishnamurthy)ଙ୍କ ସହ ପରିଚିତ ହେଲା ଚିତ୍ତଭାଇଙ୍କ ଲେଖା ମାଧ୍ୟମରେ । ସମ୍ପର୍କକୁ ବସ୍ତୁବାଦର ସଂକୀର୍ଣ୍ଣ ଗଣ୍ଡି ଭିତରେ ସୀମିତ କରି ରଖିହେବ ନାହିଁ । ବାହାର ପୃଥିବୀ ସବୁବେଳେ ନିଜ ଭିତରର ସମ୍ପର୍କକୁ ଆକର୍ଷଣ କରିଛି ତାହା ଏକ ଅନ୍ତଃଅନୁଭବ ଛଡା ଆଉକିଛି ନୁହେଁ ।

ଅସ୍ତିତ୍ୱହୀନତାକୁ ବୁଝିବାକୁ ହେଲେ ବା ଅଙ୍ଗେନିଭେଇବାକୁ ହେଲେ ଜଣକୁ ଅସ୍ତିତ୍ୱବାଦୀ ହେବାକୁ ପଡିବ ବୋଲି କେହି ଜଣେ କହିଛନ୍ତି କି ? ଏକ୍‌ଜିଷ୍ଟେନ୍‌ସ ଏବଂ ଏସେନ୍‌ସ ଭିତରେ ଥିବା ମୌଳିକ ଭିନ୍ନତା ବୁଝିବାକୁ କେଉଁଭଳି ପଦକ୍ଷେପ ନେବାକୁ ହେବ ? ଅସ୍ତିତ୍ୱବାଦର ଅସଲ ଗୁରୁ ହେଉଛନ୍ତି ଋଷୀୟ ଲେଖକ ଓ ଔପନ୍ୟାସିକ ଦସ୍ତୋଭସ୍କି । ତାଙ୍କର ଉପନ୍ୟାସ 'Notes from under ground' ନ ପଢ଼ିଲେ ଏଇ ମତବାଦର ଦ୍ୱାର ଖୋଲି ଭିତରକୁ ଜଣେ ପ୍ରବେଶ କରିପାରିବ ନାହିଁ । ସାରା ପୃଥିବୀ ଆଜି ସ୍ୱୀକାର କରିଛି ଯେ ଦସ୍ତୋଭସ୍କି ପ୍ରତ୍ୟେକ ଅସ୍ତିତ୍ୱବାଦୀ ଦାର୍ଶନିକ ଓ ସାହିତ୍ୟିକଙ୍କୁ ଅନୁପ୍ରାଣିତ କରିଆସିଛନ୍ତି । ପ୍ରତ୍ୟେକ ମଣିଷ ନିନ୍ଦିତ ଓ ଅଭିଶପ୍ତ । ପ୍ରତ୍ୟେକ ମଣିଷ ନିର୍ବାସିତ ଓ ନିର୍ଯ୍ୟାତିତ । ବିଭିନ୍ନ ବାଟରେ ଓ ବିଭିନ୍ନ ପରିସରରେ । ଜଣେ ଏକ ନିବୁଜ କୋଠରୀରେ ପଶି ଯାଉଛି ବା ତା'କୁ ସେଠାରେ ପଶିଯିବାକୁ ବାଧ୍ୟ କରାଯାଇଛି । ସେଠାରେ ଆଲୋକ ନିଷ୍ପ୍ରଭ ଓ ବାହାରର ସ୍ୱର କ୍ଷୀଣ । କିନ୍ତୁ ସବୁ ଯୋଜନା ଓ ଯନ୍ତ୍ରଣା ସତ୍ତ୍ୱେ ସେ ଏକ ଅଭିନବ ଓ ସ୍ୱର୍ଗୀୟ ଚେତନାର ଅଧିକାରୀ । ଏକଥା ବାରମ୍ବାର ଦସ୍ତୋଭସ୍କି

ତାଙ୍କର ଚରିତ୍ରମାନଙ୍କ ଜରିଆରେ ତାଙ୍କ ସମୟରେ ମଣିଷମାନଙ୍କୁ ତଥା ଆଗାମୀ ଯୁଗର ମଣିଷମାନଙ୍କୁ ଚେତାଇ ଦେଇଛନ୍ତି । ଅସ୍ତିତ୍ୱହୀନତା ଜୀବନରେ ପରିପୂର୍ଣ୍ଣତା କେବେନା କେବେ ଆପଣାର ମଣିଷଟି ଆଣିଦେବ ଏକଥା ବିଶ୍ୱାସ ରଖିବାର ଅଛି ।

ଆଜିର ପୃଥିବୀର ମଣିଷ ବିଜ୍ଞାନ ଓ ଟେକ୍‌ନୋଲଜିର ସବୁ ସୁବିଧା ହାସଲ କରି ମଧ୍ୟ ଅସ୍ତିତ୍ୱହୀନତାକୁ ବାରମ୍ବାର ଅନୁଭବ କରି ଆସୁଛି । ସଭ୍ୟତାର କଳାଦାଗ ହେଉଛି ଅସ୍ତିତ୍ୱହୀନତା ଓ ଶୂନ୍ୟତା । ଏହା ହେଉଛି ଭୟଙ୍କର ସତ୍ୟ । ଏହାର ମୁକାବିଲା କରିବାକୁ ଆଜି ଆହ୍ୱାନ ଆସିଛି । ଏ ଆହ୍ୱାନ ଅତୀତରେ ଥିଲା ଓ ଭବିଷ୍ୟତରେ ମଧ୍ୟ ଥିବ ।

□ □ □

২০

# ୟୁଟୋପିଆ : ଏକ ଅନନ୍ତ ଅନ୍ୱେଷଣ

୧୯୮୯ ମସିହା ମେ ମାସ । ହଲାଣ୍ଡର ଏନ୍‌ସ୍କେଡେ ସହରରେ ସ୍ଥାପିତ ହୋଇଥିବା ବୈଷୟିକ ବିଶ୍ୱବିଦ୍ୟାଳୟ 'ୟୁନିଭର୍‌ସିଟି ଅଫ ଟ୍ୱେଣ୍ଟେ' (University of Twente)ରେ ମୁଁ ସାମୟିକ ଭାବେ ଅଧ୍ୟୟନ କରୁଥାଏ । ହଲାଣ୍ଡ ଓ ଜର୍ମାନୀର ସୀମାରେ ଏ ସହର ଅବସ୍ଥିତ । ଏକ ପ୍ରଶସ୍ତ ରାଜରାସ୍ତା ବା ବୁଲେଭାର୍ଡ଼ ସହରକୁ ଦୁଇ ଭାଗରେ ବିଭକ୍ତ କରିଛି । ମେ ମାସରେ ବି ଥଣ୍ଡା ଥାଏ ସେଇଠି । ବେଳେବେଳେ ଆକାଶ ମେଘାଛନ୍ନ ହୋଇଯାଏ । ଏକ ବିଷର୍ଣ୍ଣ ପରିବେଶ । ମୁଁ ଘେରାଏ ବୁଲି ଆସିବାକୁ ଋହିଁଥିଲି ଓ ବିଶ୍ୱବିଦ୍ୟାଳୟର ବହି ଦୋକାନରେ କିଛି ସମୟ ପୁସ୍ତକର ପୃଷ୍ଠା ଓଲଟାଇବା ଛଡା ଆଉ କିଛି ଯେମିତି ରାସ୍ତା ନଥିଲା । ନଜର ପଡିଥିଲା ଗୋଟାଏ ବହି ଉପରେ । ନା' ଥିଲା 'ଗଡେଲ, ଏସର୍, ବାକ୍' (Gödel, Escher, Bach) । ଲେଖକ 'ଡଗଲାସ୍ ହଫଷ୍ଟାଡର' (Douglas Hofstadter) । ଆମେରିକାର ବିଖ୍ୟାତ "ପୁଲିଜର୍" ପୁରସ୍କାର ଏ ବହିଟିକୁ ମିଳିଥିଲା ୧୯୮୦ ମସିହାରେ । ମୁଁ ଗଣିତର ଛାତ୍ର ହିସାବରେ ଗଣିତଜ୍ଞ ଗଡେଲ୍‌ଙ୍କୁ ଜାଣିଥିଲି । ପେଣ୍ଟିଙ୍ଗ ଓ ଚିତ୍ରକାରମାନଙ୍କ ଉପରେ ବିଶେଷ ଆଗ୍ରହ ଥିବାରୁ ଏସର୍‌ଙ୍କ ଚିତ୍ରମାନଙ୍କୁ ଦେଖିଥିଲି । ପଶ୍ଚିମ ଦେଶମାନଙ୍କର ସଂଗୀତଜ୍ଞମାନଙ୍କ ଭିତରେ 'ଜୋହାନ୍ ସେବାଷ୍ଟିଆନ୍ ବାକ୍' (Johan Sebastian Bach) ଅଗ୍ରଗଣ୍ୟ ଥିଲେ ଓ ତାଙ୍କର ସଙ୍ଗୀତ ରଚନା ଗୁଡିକୁ ମୁଁ ଅନେକବାର ଶୁଣିଥିଲି । ଗଣିତ, ଚିତ୍ର ଓ ସଙ୍ଗୀତର ସମନ୍ୱୟ ହେଲେ କେଉଁ ରୂପ ପ୍ରକାଶ ପାଇବ ତାହା ଜାଣିବାକୁ କୌତୁହଳ ପ୍ରକାଶ ପାଇଥିଲା । କିନ୍ତୁ ଲେଖକ ନିଜେ କହିଛନ୍ତି ଯେ ବହିଟି ଗଣିତ, କଳା ବା ସଙ୍ଗୀତ ବିଷୟ ଉପରେ ଆଧାରିତ ନୁହେଁ । ମଣିଷର ଚିନ୍ତା ଓ ଚିନ୍ତନର କିପରି ସଂଯୋଜନା ହୋଇଥାଏ ମସ୍ତିଷ୍କରେ ଓ ସବୁ ବିକ୍ଷିପ୍ତ ଚିନ୍ତାର କିପରି ସମନ୍ୱୟ ହୋଇ ଏକ ନିର୍ଦ୍ଦିଷ୍ଟ ରୂପରେ ପ୍ରକାଶ ପାଏ ତାହା ହଫ୍‌ଷ୍ଟାଡର ସ୍ପଷ୍ଟ ଆଲୋଚନା କରିଛନ୍ତି ଓ ପିମ୍ପୁଡି ସମାଜର ସଙ୍ଗଠିତ ପରିଋଳନା ସହ ତୁଳନା କରିଛନ୍ତି । ଏ ବହିଟି ପ୍ରକାଶିତ ହେବା ପରେ ପରେ ସାରା ପୃଥିବୀରେ ବୁଦ୍ଧିଜୀବୀ ମହଲରେ ବେଶ୍ ଆଲୋଡନ ହୋଇଥିଲା । ବହିଟି କାହାଣୀ ଉପନ୍ୟାସ ନୁହେଁ ଅଥଚ ଏପରି କାହିଁକି ଲୋକପ୍ରିୟ ହେଲା, ତାହା ଜଣେ ପଢ଼ିଲେ ଜାଣି ପାରିବ । ବହିଟିକୁ ମୁଁ

୧୯୮୯ ମସିହାରେ କିଣିଥିଲି । ଏହା ପରେ ପରେ 'ଡଗଲାସ୍ ହଫଷ୍ଟାଡର'ଙ୍କ ଲିଖିତ ଅନ୍ୟ ଦୁଇଟି ବହି 'ମେଟାମ୍ୟାଜିକାଲ ଥେମା' (Metamagical Themas) ଏବଂ 'ଦି ମାଇଣ୍ଡସ୍ ଆଇ' (The Mind's I) ବହି ମଧ୍ୟ ମୁଁ ପଢ଼ିଥିଲି । ଗତ କୋଡିଏ ବର୍ଷଧରି କେବେ କେମିତି ଏ ବହି ସବୁ ଆଉ ଥରେ ପଢ଼ିବାକୁ ମୁଁ ଚେଷ୍ଟା କରି ଆସୁଛି ଯଦିଓ ସଫଳ ହୋଇନାହିଁ । କାର୍ଯ୍ୟବ୍ୟସ୍ତତା ଭିତରୁ ଅବସର ବାହାର କରି ଏ ବହିସବୁ ମୋତେ ପଢ଼ିବାକୁ ହେବ ମୋର ଅନ୍ୱେଷଣରେ ସ୍ୱଷ୍ଟତା ଆଣିବା ପାଇଁ । ସବୁ ଗୋଟାଏ ୟୁଟୋପିଆର ଅନ୍ୱେଷଣ ଯାହା ଜୀବନର ଶେଷ ନିଶ୍ୱାସ ଋଲିଥିବା ପର୍ଯ୍ୟନ୍ତ ଉଦ୍‌ଜୀବିତ ହୋଇ ରହିଥିବ । ମୁଁ ଜାଣେ ପ୍ରତ୍ୟେକ ସଚେତନ ମଣିଷ ଏକ ସୁନ୍ଦର ପୃଥିବୀର ପରିକଳ୍ପନାରେ ନିଜକୁ ବିଲୀନ କରିଦେଇଛି ଯେଉଁଠି ସ୍ନେହ, ମମତା, ସୌନ୍ଦର୍ଯ୍ୟ ଓ ସଦ୍‌ଭାବନା ଭରି ରହିଥିବ । ୟୁଟୋପିଆ ଅସହାୟ ମଣିଷର ଖିଆଲୀ ଭାବନା ନୁହେଁ ବା କଳ୍ପନା ବିଳାସ ନୁହେଁ । ଏହା ଏକ ସଚେତନ ମଣିଷର ଆସ୍ଥାସୂଚକ ମାନସିକତା ଏବଂ ସ୍ୱପ୍ନବାଦୀମାନଙ୍କର ପରିକଳ୍ପିତ ସମାଜ । କେଜାଣି କାହିଁକି "ୟୁଟୋପିଆ" ଶବ୍ଦକୁ ଚିହ୍ନିଲା ଦିନଠାରୁ ମୁଁ ବାରମ୍ବାର ଆକର୍ଷିତ ହୋଇଛି ଏଥିପ୍ରତି । ଜୀବନର ଅଶାନ୍ତ ଓ ଉଦ୍‌ବେଳିତ ମୁହୂର୍ତ୍ତମାନଙ୍କରେ ଏଇଭଳି ଏକ ସ୍ୱପ୍ନ ରାଜ୍ୟରେ ବିଚରଣ କରିବା ମୋ ପାଇଁ ମହୌଷଧି ହୋଇଯାଇଛି । ପ୍ରଶାନ୍ତି ଓ ସଂପ୍ରୀତି ଖୋଜୁଥିବା ମଣିଷଟିର ଆବଶ୍ୟକତା କ'ଣ ? କିଏ କହୁଛି ଗଣିତ, ସଂଗୀତ ଓ ଆଧ୍ୟାତ୍ମିକ ଧ୍ୟାନ । ଆଉ କିଏ କହୁଛି ଗଣିତ, ସଙ୍ଗୀତ ଓ ଚିତ୍ର । ଯୁଗେ ଯୁଗେ ଏହି ପରିକଳ୍ପନା ବିଭିନ୍ନ ଲେଖକ ଓ ଦାର୍ଶନିକ କରିଆସିଛନ୍ତି ଓ ଏକ ବିଶ୍ୱ ସାହିତ୍ୟ ସୃଷ୍ଟି ହୋଇଛି ୟୁଟୋପିଆକୁ କେନ୍ଦ୍ରକରି । ଗ୍ରୀକ୍ ଦାର୍ଶନିକ 'ପ୍ଲାଟୋ' ଲେଖିଛନ୍ତି 'ଦି ରିପବ୍ଲିକ୍' ଯାହାକୁ ୟୁଟୋପିଆର ମୂଳାଧାର କୁହାଯାଏ । ଏହାପରେ ୧୫୧୬ ମସିହାରେ 'ସାର୍ ଥୋମାସ୍ ମୋର' (Sir Thomas More) ଲେଖିଛନ୍ତି ୟୁଟୋପିଆ (Utopia) ଏବଂ ଏ ବହିଟିର ଆଲୋଚନା ଆଜି ପର୍ଯ୍ୟନ୍ତ ଋଲିଛି । ୟୁଟୋପିଆ ଶବ୍ଦର ସୃଷ୍ଟି ହୋଇଛି ତାଙ୍କ ଠାରୁ । ଏ ବହିଟି ଗାନ୍ଧୀ, ଥୋରୋ ଏବଂ ଟଲଷ୍ଟୟ ଆଦିଙ୍କୁ ପ୍ରଭାବିତ କରିଛି । ୧୬୨୭ ମସିହାରେ 'ସାର୍ ଫ୍ରାନ୍‌ସିସ୍ ବାକନ୍' (Sir Francis Bacon) 'ଦି ନିୟୁ ଆଟ୍‌ଲାଣ୍ଟିସ୍' (The New Atlantis) ବହି ଲେଖିଛନ୍ତି । ବିଖ୍ୟାତ ଲେଖକ 'ଏଚ୍.ଜି.ୱେଲସ୍' (H. G. Wells) ୧୯୦୫ ମସିହାରେ ଲେଖିଛନ୍ତି 'ଏ ମଡର୍ଣ୍ଣ ୟୁଟୋପିଆ' (A Modern Utopia) । ବିଖ୍ୟାତ ମନସ୍ତତ୍ତ୍ୱବିଦ୍ 'ବି.ଏଫ.ସ୍କିନର' (B. F. Skinner) ୧୯୪୮ ମସିହାରେ ଲେଖିଛନ୍ତି 'ୱାଲେଡେନ୍ ଟୁ' (Walden Two) । ବିଖ୍ୟାତ ଔପନ୍ୟାସିକ 'ଆଲ୍‌ଡସ୍ ହକ୍‌ସଲୀ' (Aldus Huxley) ଲେଖିଛନ୍ତି 'ଆଇଲ୍ୟାଣ୍ଡ' (Island) । ଏଇଭଳି ଅନେକ କାହାଣୀ ଓ ପ୍ରବନ୍ଧ ବିଭିନ୍ନ ସମୟରେ ସୃଷ୍ଟି ହୋଇଛି ଓ ସବୁସ୍ତରର ମଣିଷମାନଙ୍କୁ ଆକର୍ଷଣ କରିଛି । ଗାନ୍ଧୀଜୀଙ୍କ କଳ୍ପିତ 'ରାମରାଜ୍ୟ' ଏଇ ୟୁଟୋପିଆର ଅନ୍ୟଏକ ପରିପ୍ରକାଶ ବୋଲି ଭାବିବାକୁ ହେବ । ସବୁ କିଛି ଏକ ସାହସିକ

ଓ ସାମଗ୍ରିକ ଚିନ୍ତାଧାରାର କେନ୍ଦ୍ରବିନ୍ଦୁ । ବିଜ୍ଞାନ ଓ ବୈଷୟିକ ଜ୍ଞାନ କ୍ଷେତ୍ରକୁ ଏହା ସମ୍ପ୍ରସାରିତ ହୋଇଛି । ଏହାକୁ ଆଧାର କରି 'ଆଇଜାକ୍ ଆସିମୋଭ୍' ଲେଖିଛନ୍ତି 'ଫାଉଣ୍ଡେସନ୍ ସିରିଜ୍' ଓ 'ମିଚିଓ କାକୁ' (Michio Kaku) ଲେଖଛନ୍ତି 'ଭିଜନ୍' (Vision) । 'ଆଲଡସ୍ ହକ୍ସ୍‌ଲୀ' ଲେଖିଛନ୍ତି 'ଦି ବ୍ରେଭ୍ ନିୟୁ ୱାର୍ଲ୍ଡ' । ଅବଶ୍ୟ 'ହରମାନ୍ ହେସ୍'ଙ୍କ 'ଦି ଗ୍ଲାସ୍‌ବିଡ୍ ଗେମ୍' (The Glass Bead Game) ଏଇ ୟୁଟୋପିଆର ଅନ୍ୟତମ ପରିକଳ୍ପନା ଓ ସ୍ୱପ୍ନ ସମ୍ଭବତାର ବର୍ଣ୍ଣନା । ମୋର ସବୁବେଳେ ଆତ୍ମପ୍ରତ୍ୟୟ ରହିଆସିଛି ଯେ ସନ୍ଦେହ ଓ ସଂଶୟରେ ପଡିଯାଉଥିବା ମଣିଷ ପାଇଁ ଏସବୁ ଲେଖକ ଓ ଦାର୍ଶନିକମାନେ ବିଭିନ୍ନ ପ୍ରକାରର ମାର୍ଗଦର୍ଶନ କରି ଆସିଛନ୍ତି । ମୁନିଋଷିମାନେ ମଧ ଏଇଭଳି ଏକ ପୃଥିବୀର ବିଚରଣ କରିଛନ୍ତି ବୋଲି ସେମାନଙ୍କର ଉକ୍ତି ଓ ମହତ୍‌ବାଣୀରୁ ଜଣାପଡିଛି । ପୃଥିବୀ ଯେତିକି ଯେତିକି ସଙ୍କଟମୟ ପରିସ୍ଥିତି ଦେଇ ଗତି କରିବ, ୟୁଟୋପିଆର ଯଥାର୍ଥତା ସେତିକି ବଢ଼ିଯିବ ଏଥିରେ ସନ୍ଦେହ ନାହିଁ ।

'ସାର୍ ଥୋମାସ୍ ମୋର୍'ଙ୍କ ଲିଖିତ 'ୟୁଟୋପିଆ' ପୁସ୍ତକ ଯୁଗେଯୁଗେ ତର୍କ ବିତର୍କର ପରିଧି ଭିତରକୁ ଆସିଛି । ୧୫୧୬ ମସିହାରେ ଏ ବହି ପ୍ରଥମେ ଲାଟିନ୍ ଭାଷାରେ ପ୍ରକାଶ ପାଇଥିଲା । ବହିଟି ଏକ ଦ୍ୱୀପରେ ବସବାସ କରୁଥିବା ମଣିଷମାନଙ୍କର ଧାର୍ମିକ, ସାମାଜିକ ଏବଂ ରାଜନୈତିକ ଜୀବନ ଉପରେ ପର୍ଯ୍ୟବେସିତ । ଲେଖକଙ୍କ ସମସାମୟିକ ସମାଜ ଓ ରାଜନୀତିରେ ଯେଉଁ ଦୁର୍ବଳତା ଓ ବିଶୃଙ୍ଖଳା ରହିଥିଲା ତାହା ପରିବର୍ତ୍ତେ ଏକ ବିକଳ୍ପ ସମାଜ ଓ ରାଜନୀତିର ପରିକଳ୍ପନାର ଉପସ୍ଥାପନା ଏ ବହିଟିର ସାରାଂଶ । ଗୋଟାଏ ଦ୍ୱୀପରେ ଅବସ୍ଥିତ ଏ ୟୁଟୋପିଆରେ ଥିଲା ୫୪ଟି ସହର ଓ ପ୍ରତ୍ୟେକ ସହରରେ ବସବାସ କରୁଥିଲେ ୬୦୦୦ ବାସିନ୍ଦା । ସହରମାନଙ୍କରେ ଜନସଂଖ୍ୟା ବଢ଼ିଲେ, ଲୋକେ ମୂଳ ରାଜ୍ୟରେ ଯାଇ ବସବାସ କରୁଥିଲେ । ମୂଳ ରାଜ୍ୟ ଏବଂ ଦ୍ୱୀପ ଭିତରେ ୧୫ କି.ମି. ଦୀର୍ଘ ଏକ କେନାଲ୍ ଥିଲା ଯାହା ଯୋଗାଯୋଗର ମୁଖ୍ୟ ବ୍ୟବସ୍ଥା ଥିଲା । ଦ୍ୱୀପର ବାସିନ୍ଦାମାନେ କୌଣସି ପାରିବାରିକ ସମ୍ପତିର ଅଧିକାରୀ ନଥିଲେ । ଏକ ସାମୁହିକ ଗୋଦାମ ଘରେ ସବୁ ଜିନିଷ ସଂରକ୍ଷିତ ରହୁଥିଲା । ଆବଶ୍ୟକ ଅନୁସାରେ ପ୍ରତ୍ୟେକ ଲୋକ ସେଠାରୁ ଜିନିଷପତ୍ର ନେଉଥିଲେ । କାହାରି ଘରେ ତାଲା ପଡୁ ନଥିଲା । କୃଷି ଥିଲା ମୁଖ୍ୟ ଜୀବିକା । ସମସ୍ତେ କୃଷି କାର୍ଯ୍ୟ କରିବାକୁ ବାଧ୍ୟ । ଏହାକୁ ଛାଡି ପ୍ରତ୍ୟେକ ବ୍ୟକ୍ତି ଲୁଗା ବୁଣିବା, ବଢ଼େଇ କାମ, ଲୁହା କାମ ଏବଂ ମିସ୍ତ୍ରୀ କାମ ଶିଖିବାକୁ ପଡୁଥିଲା । ସମସ୍ତେ ସମାନ ଧରଣର ବସ୍ତ୍ର ପରିଧାନ କରୁଥିଲେ । ଯଦିଓ କିଛି ବ୍ୟକ୍ତି ଅଧିକ ପାଠଶାଠ ପଢ଼ି ପୁରୋହିତ ହେଉଥିଲେ, ସମସ୍ତଙ୍କର ସାକ୍ଷରତା ବାଧ୍ୟତାମୂଳକ ଥିଲା । ପ୍ରତ୍ୟେକ ପରିବାରରେ ଦୁଇଜଣ ଲେଖାଏଁ କ୍ରୀତଦାସ ଥିଲେ । ଯେଉଁମାନେ ଅନ୍ୟ ଦେଶରୁ ଆସିଥିଲେ ବା ଅପରାଧୀ ଥିଲେ, ସେମାନଙ୍କୁ ହିଁ ଦାସତ୍ୱର ବନ୍ଧନରେ ବନ୍ଧା ହେବାକୁ ପଡୁଥିଲା । ସ୍ୱାସ୍ଥ୍ୟ ସେବା ମାଗଣାରେ ମିଳୁଥିଲା । ସମସ୍ତେ ଏକାଠି ଭୋଜନ

କରୁଥିଲେ । ଯେଉଁମାନେ ବୃଦ୍ଧ ଓ ଶାସନ ଦାୟିତ୍ୱରେ ଥିଲେ ସେମାନଙ୍କୁ ଭଲ ଖାଇବା ମିଳୁଥିଲା । ଯିବା ଆସିବାରେ କୌଣସି ବାଧା ନଥିଲା । ଧାର୍ମିକ ସ୍ୱାଧୀନତା ଥିଲା । ଅର୍ଥାତ୍ ଯିଏ ଯେଉଁଭଳି ପୂଜା କରିପାରେ । ଏଥିରେ ବ୍ୟାପକ ସହନଶୀଳତା ଥିଲା । ଧର୍ମାନ୍ଧତା ସ୍ପର୍ଶ କରିନଥିଲା କାହାକୁ କେବେହେଲେ । ନାରୀମାନଙ୍କୁ ଅବଶ୍ୟ ମିଳିନଥିଲା ସ୍ୱାଧୀନତା ଓ ସମତା । ମହିଳା ଓ ସ୍ୱାମୀମାନଙ୍କୁ ଘରକରଣା କାର୍ଯ୍ୟ ନ୍ୟସ୍ତ କରାଯାଉଥିଲା । ବର୍ତ୍ତମାନର ସାମ୍ୟବାଦୀ ମତବାଦ ସହ ଏହା କେତେକାଂଶରେ ମିଶୁଥିଲା । ତଥାକଥିତ ଶୋଷଣହୀନ ଓ ଶ୍ରେଣୀହୀନ ସମାଜର ରୂପରେଖ ୟୁଟୋପିଆରେ ଦେଖାଯାଉଥିଲା । ସମ୍ଭବତଃ କାର୍ଲମାର୍କ୍ସଙ୍କ ତିନିଶହ ବର୍ଷପୂର୍ବରୁ ଏ ପ୍ରକାର ଚିନ୍ତାଧାରା ନିଶ୍ଚୟ ବିପ୍ଳବାତ୍ମକ ଥିଲା ବୋଲି ସ୍ୱୀକାର କରିବାକୁ ହେବ । ଏବେର ସମାଜ ଓ ଏହାର ଢ଼ାଞ୍ଚାକୁ ବିଶ୍ଳେଷଣ କରିଲେ, ୟୁଟୋପିଆର ଢ଼ାଞ୍ଚା କେତେ ଉନ୍ନତ ସ୍ତରରେ ପହଞ୍ଚିଥିଲା, ସହଜରେ କଳ୍ପନା କରାଯାଇପାରେ । ମଣିଷ ଋହିଁଛି ତାହାର ସମାଜକୁ ସବୁବେଳେ ନୂଆ କରି ଗଢ଼ିବାକୁ । ଗୋଟାଏ ସମାଜ, ସଂସ୍କୃତି ଓ ରାଜନୀତିର ଅବକ୍ଷୟ ଓ ବିଲୟ ହେଲାପରେ ନୂତନ ସମାଜ ଓ ମୂଲ୍ୟବୋଧ ଆସିବାକୁ ବାରମ୍ବାର ୟୁଟୋପିଆ ସାହାଯ୍ୟ କରିଆସିଛି, ଏହା ସ୍ୱୀକାର କରିବାକୁ ହେବ ।

ଏ ସ୍ତମ୍ଭରେ ୟୁଟୋପିଆର ଅନ୍ୱେଷଣ ଜନିତ ଜିଜ୍ଞାସା ଓ ଅଭୀପ୍ସାକୁ ମୁଁ ବାରମ୍ବାର ଉପସ୍ଥାପନା କରିବାକୁ ଚେଷ୍ଟା କରିବି । ବିକଳ୍ପ ପୃଥିବୀର ସନ୍ଧାନର କେବେ ଶେଷ ନାହିଁ । 'ୟୁନିଭର୍ସିଟି ଅଫ ଟ୍ୱେଣ୍ଟେ'ର ଶ୍ରେଣୀକକ୍ଷରେ ବିଜ୍ଞାନ ଓ ଟେକ୍ନୋଲୋଜିର ପ୍ରୟୋଗ ଦ୍ୱାରା ଏକ ୟୁଟୋପିଆ ସମ୍ଭବ କି ନାହିଁ ମୁଁ ବାରମ୍ବାର ନିଜକୁ ପଋରୁଥିଲି । ପ୍ରତ୍ୟେକ ପ୍ରୟୋଗଶାଳାର ସମ୍ମୁଖରେ ଜଣେ କଳାକାର ବା ଚିତ୍ରକାରଙ୍କ କୃତି । ତାହା ବିଭିନ୍ନ ଷ୍ଟ୍ରକ୍‌ଚର, ମ୍ୟୁରାଲ୍‌ସ୍ ଆଦି ରୂପରେ ଛିଡା ହୋଇଛି । ବିଶ୍ୱବିଦ୍ୟାଳୟରେ ଚୌହଦୀକୁ ଲାଗି ଛୋଟ ହ୍ରଦଟିଏ ଯେଉଁଠି ଶୀତଦିନେ ବରଫର ଆସ୍ତରଣ ଜମାହୁଏ ଏବଂ ସ୍କି ଖେଳିବାକୁ ଭୀଷଣ ଭିଡ ହୁଏ । ହଲାଣ୍ଡ ଭଳି ପାଶ୍ଚାତ୍ୟ ଦେଶରେ ମଧ୍ୟ ମଣିଷ ତଥାକଥିତ ସଭ୍ୟତାର ପାଚେରୀ ଡେଇଁ ୟୁଟୋପିଆ ଖୋଜୁଛି ବିଭିନ୍ନ ବାଟରେ । ବିଶ୍ୱବିଦ୍ୟାଳୟ ଜୀବନର ନିଃସଙ୍ଗତା ସତ୍ତ୍ୱେ ମୁଁ 'ଡଗ୍‌ଲାସ୍ ହଫଷ୍ଟାଡର୍'ଙ୍କୁ ଏକାନ୍ତ ଭାବେ ଅନୁଭବ କରୁଥିଲି ସେ ଦିନ । ୟୁଟୋପିଆର ଅନ୍ୱେଷଣ ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ ।

❏ ❏ ❏

**୨୧**

# ୟୁଟୋପିଆ : ଯନ୍ତ୍ର ଓ ମନ୍ତ୍ରରୁ ମୁକ୍ତି

କଲେଜ ଜୀବନରେ ଯେଉଁ ଦୁଇଜଣ ଲେଖକ ଆମକୁ ଅସମ୍ଭବ ଆକର୍ଷଣ କରିଥିଲେ, ସେମାନେ ହେଲେ ଲୁଇ ମମ୍‌ଫୋର୍ଡ (Lewis Mumford) ଏବଂ ଆର୍ଥର କୋଏସ୍‌ଲର (Arthur Koestler) । ମମପୋର୍ଡଙ୍କ ବହି ଥିଲା 'ଦି ମିଥ୍ ଅଫ ମେସିନ୍'(The Myth of Machine) ଏବଂ କୋଏସ୍‌ଲରଙ୍କ ବହିର ନାମ 'ଘୋଷ୍ଟ ଇନ୍ ଦି ମେସିନ୍'(Ghost in the Machine) । ମଣିଷ ମେସିନ୍ ଯୁଗରେ ଯନ୍ତ୍ରମାନଙ୍କର କ୍ରୀତଦାସ ନହୋଇ ମୁକ୍ତ ଓ ସ୍ୱାଧୀନ ଜୀବନର ସ୍ୱାଦ ଅନୁଭବ କରୁ ବୋଲି ମମ୍‌ଫୋର୍ଡ ଯୁକ୍ତି ଉପସ୍ଥାପନା କରିଛନ୍ତି । ସତ୍ୟ ହିଁ ସୁନ୍ଦର ଓ ସୁନ୍ଦର ହିଁ ସତ୍ୟ । ଏହା ଉପରେ ସେ ଦୃଢ଼ ଆସ୍ଥା ଓ ବିଶ୍ୱାସ ପ୍ରକଟ କରିଛନ୍ତି । ମେସିନ୍ ମଣିଷକୁ ଶକ୍ତିଶାଳୀ କରିଛି ଓ ଏହି ମେସିନ୍ ଚାଳିତ ଶକ୍ତି ମଣିଷକୁ କରି ଦେଇଛି ଅସୁର । ସେ ପ୍ରଶ୍ନ କରିଛନ୍ତି ସତରେ ବୃହତାକାର ବସ୍ତୁ କ'ଣ ସୁନ୍ଦର ? ଗତି କ'ଣ ପ୍ରଗତି ? ଶକ୍ତିଶାଳୀ କ'ଣ ଭଲ ? ଯେଉଁ ମନ ଓ ପ୍ରାଣ ସଂକୀର୍ଣ୍ଣ ବୈଷୟିକ ଜ୍ଞାନ ଦ୍ୱାରା ନିୟନ୍ତ୍ରଣ, ତାହା କ'ଣ ପ୍ରେମ ଓ ଜୀବନର ସଂଗୀତର ମାଧୁର୍ଯ୍ୟ ହୃଦୟଙ୍ଗମ କରିପାରିବ ? ଅନ୍ୟ ପକ୍ଷରେ କୋଏସ୍‌ଲର ମଣିଷର ମନ ଭିତରେ ମେସିନ୍‌ର ଭୂତ କେମିତି ବସା ବାନ୍ଧିଛି ଓ ହିଂସା ଓ ନିଜକୁ ଧ୍ୱଂସ କରିବାର ଯୋଜନାରେ ଅନୁପ୍ରାଣିତ ହୋଇଛି ତାହା ବିଶ୍ଳେଷଣ କରିଛନ୍ତି । ମଣିଷ ସୁଲଭ ମନ ଓ ପ୍ରାଣ ଭିତରେ ଜାନ୍ତବ ଓ ପାଶବିକ ଘୃଣା, ରାଗ ଓ ଦ୍ୱେଷ ବିରାଜମାନ କରିଛି ଓ ସମୟ ଅସମୟରେ ସର୍ପିଳ ଫଣା ଟେକୁଛି । ବିଜ୍ଞାନ ଓ ବୈଷୟିକ ଜ୍ଞାନ ବଳରେ ବଳୀୟାନ ହୋଇ ଜଣେ ସ୍ୱେଚ୍ଛାଚାରୀ ଓ ଏକଛତ୍ରବାଦୀ ହୋଇଯାଇପାରେ ବୋଲି କୋଏସ୍‌ଲର୍ ସବୁବେଳେ ଭୟ ପ୍ରକାଶ କରିଛନ୍ତି । ଏହା ତାଙ୍କର ଅନ୍ୟ ଏକ ବହି 'ଡାର୍କନେସ୍ ଆଟ୍ ନୁନ୍' (Darkness at Noon)ରେ ସ୍ପଷ୍ଟ ଉଲ୍ଲେଖିତ ହୋଇଛି । ଏ ବହିର ନାୟକ ରୁବାସୋଭ୍ ଓ ୟୁଟୋପିଆ ଏକାଠି ସହାବସ୍ଥାନ କରିପାରିବେ ନାହିଁ ବୋଲି ସ୍ପଷ୍ଟ ଅନୁଭବ କରୁଛି ।

ସାରା ପୃଥିବୀ ଆଜି ମେସିନ୍‌ର କ୍ରମବର୍ଦ୍ଧିଷ୍ଣୁ ଜାଲ ଭିତରେ ବାନ୍ଧି ହୋଇଯାଇଛି । ପ୍ରତ୍ୟେକ ବିଷୟରେ ମେସିନ୍ ସବୁକଥା ନିର୍ଦ୍ଧାରଣ କରୁଛି ଓ ଚିନ୍ତାରେ ବି । ଥରେ

ଏଥିରେ ଜଣେ ମଣିଷ ପଡିଗଲେ ବାହାରିବାର ସମ୍ଭାବନା ନାହିଁ । ଯେଉଁ ସବୁକଥା ଜୀବ ଓ ଜୀବନ ହିସାବରେ ମଣିଷ କରିବାକୁ ଚାହୁଁଛି, ତାହା ଏବେ ମେସିନ୍ କରିବାକୁ ସମର୍ଥ ହେଉଛି । ମଣିଷ ସଚେତନ ଭାବେ ଏହା ମଧ ଗ୍ରହଣ କରିଛି ଯେ 'ରୋବୋ' ସବୁକିଛି କରିପାରିବ ଓ ମଣିଷର ଜୀବନର ବୋଝକୁ ହାଲୁକା କରିଦେବ । ଏଇଥିପାଇଁ କୃତ୍ରିମ ବୁଦ୍ଧି ବା ଆର୍ଟିଫିସିଆଲ୍ ଇଣ୍ଟେଲିଜେନ୍‌ସ (Artificial Intelligence) ଉପରେ ଏକ ଗଭୀର ଗବେଷଣା ଚାଲିଛି । କମ୍ପ୍ୟୁଟର ଏମିତି ତିଆରି କରାଯିବ ଯାହା ମଣିଷ ଭଳି ଚିନ୍ତାକରିପାରିବ ଓ ମସ୍ତିଷ୍କ ନେଇଥିବା ନିଷ୍ପତ୍ତି ନେଇପାରିବ । ଜାପାନରେ ଖେଳଣା ତିଆରି ହୋଇଛି ଯାହା ଆବେଗ ଅନୁସାରେ କାନ୍ଦିବ,ହସିବ ଓ ନିଜର ମନୋଭାବ ପ୍ରଦର୍ଶନ କରିବ । ଜ୍ଞାନ ବିଜ୍ଞାନରେ ମଣିଷ ତା'ର ନିଜ ଢ଼ାଞ୍ଚାରେ ଆଉ ଏକ ମଣିଷ ସୃଷ୍ଟି କରିବାକୁ ଚେଷ୍ଟା କରିଆସୁଅଛି । କୃତ୍ରିମ ହେଉ କି ପ୍ରାକୃତିକ ହେଉ, ମଣିଷ ବିଜ୍ଞାନାଗାରରେ ଜନ୍ମ ନେବ ଏକଥା ଏବେ ସମ୍ଭବ ହେବ ବୋଲି ଭବିଷ୍ୟତବାଣୀ ଶୁଣାଯାଇଛି । ବିଶିଷ୍ଟ ବୈଜ୍ଞାନିକ ଓ ଲେଖକ ମିଚିଓ କାକୁ ତାଙ୍କ 'ଭିଜନ୍' ବହିରେ ତିନୋଟି ଯୁଗାନ୍ତକାରୀ ବିଜ୍ଞାନ ସମ୍ମତ ବିପ୍ଳବ କଥା ଉଲ୍ଲେଖ କରିଛନ୍ତି । ପ୍ରଥମଟି ହେଲା କ୍ୱାଣ୍ଟମ୍ ବିପ୍ଳବ; ଦ୍ୱିତୀୟଟି ହେଲା କମ୍ପ୍ୟୁଟର ବିପ୍ଳବ ଓ ତୃତୀୟଟି ହେଲା ବାଇଓମଲେକ୍ୟୁଲାର ବିପ୍ଳବ । ମଣିଷ ଯଦି ବିଜ୍ଞାନକୁ ବୁଝିବାକୁ ଚାହିଁବ ତେବେ ବସ୍ତୁ, ମନ ଓ ଜୀବନକୁ ହିଁ ବୁଝିବାକୁ ପଡିବ । ଏଗୁଡିକ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଉପରୋକ୍ତ ବିପ୍ଳବମାନଙ୍କ ସହ ସମ୍ପୃକ୍ତ । ଏସବୁ ଯେଉଁ ବିପ୍ଳବ ଆସୁଛି ମଣିଷ ଯେ ମହାମାନବ ରୂପେ ଆଖାୟିତ ହେବ ଏହା କହିବା ଅତିରଂଜନ ନୁହେଁ । କିନ୍ତୁ ଏସବୁ ସତ୍ତ୍ୱେ ମଣିଷର ମଣିଷ ପଣିଆ ସତ୍ୟ, ଶିବ ଓ ସୁନ୍ଦର ପାଇଁ ଅନ୍ୱେଷଣ ସଦାସର୍ବଦା ଲାଗି ରହିବ । ମଣିଷ ପ୍ରକୃତିକୁ ଭଲ ପାଇବ ଓ ଉପାସନା କରିବ କିନ୍ତୁ ଏ ପ୍ରକୃତିକୁ ଓ ତାହାର ବୈଚିତ୍ର୍ୟକୁ କୃତ୍ରିମ ଭାବେ ବିଜ୍ଞାନବଳରେ ସୃଷ୍ଟି କରିପାରିବ ନାହିଁ । ମଣିଷ ପର୍ଯ୍ୟାବରଣକୁ ଆପଣାର କରିବ କିନ୍ତୁ କୃତ୍ରିମ ଭାବେ ଏଇ ପର୍ଯ୍ୟାବରଣକୁ ସୃଷ୍ଟି କରିପାରିଲେ ମଧ ସେଠାରେ ସବୁଦିନେ ରହିପାରିବ ନାହିଁ । ମଣିଷ କୃତ୍ରିମ ଭାବେ ବିଭିନ୍ନ ସଂଗୀତ ସୃଷ୍ଟି କରିପାରିବ ସତ ପ୍ରକୃତିରେ ସୃଷ୍ଟି ହୋଇଥିବା ସଂଗୀତକୁ ବେଶୀ ପସନ୍ଦ କରିବ । ମଣିଷ ଆନନ୍ଦ ଉପଭୋଗ ପାଇଁ ଯେତେପ୍ରକାର ମାଧ୍ୟମ ବ୍ୟବହାର କରିଲେ ମଧ ଅସଲ ଆନନ୍ଦ ପାଇବାକୁ ହେଲେ ତାକୁ ଅନ୍ୟ ପରିସର ଭିତରେ ବିଚରଣ କରିବାକୁ ହେବ । ବିଜ୍ଞାନ ଦ୍ୱାରା ସଂଚାଳିତ ବିପ୍ଳବ ହେଉ କି ରାଜନୀତି ଦ୍ୱାରା ନିୟନ୍ତ୍ରିତ ବିପ୍ଳବ ହେଉ, ମଣିଷ ଏକ ଆଧ୍ୟାତ୍ମିକ ବିପ୍ଳବର ସନ୍ଧାନରେ ସବୁବେଳେ ଯାତ୍ରା କରୁଥିବ ।

ଯେଉଁଦିନ ମୁଁ ଅନୁଭବ କରିଥିଲି ଯେ ବିଜ୍ଞାନ ଓ ଗଣିତ ସବୁକିଛି ସମସ୍ୟାର ସମାଧାନ କରିପାରିବ ନାହିଁ, ସେଦିନ ଠାରୁ ମୁଁ ବିକଳ୍ପର ସନ୍ଧାନରେ ହିଁ ବାହାରିଛି । ସେଇଥିପାଇଁ ବସ୍ତୁ, ମନ ଓ ଜୀବନର ପରିସୀମା ବାହାରେ ମୁଁ ନିଜର ପରିଚୟ ଖୋଜିଛି ।

ଆପଣାର ମନର ମଣିଷଟିକୁ ଠାବ କରିବା ପାଇଁ ବିଭିନ୍ନ ପ୍ରକାରର ପରୀକ୍ଷା ମୁଁ କରିଆସିଛି । ମୁଁ କିଏ ଓ କାହିଁକି ଏ ପୃଥିବୀରେ ଜନ୍ମ ନେଉଛି ତାହା ପଚାରିଛି । ମୁଁ ଜାଣିବାକୁ ଚାହିଁଛି ଆତ୍ମା କ'ଣ ? ଆତ୍ମା ସହ ପରମାତ୍ମାର ସମ୍ପର୍କ କ'ଣ ? ପରମାତ୍ମା କେଉଁଠି ଥାଆନ୍ତି ଓ କେଉଁ ମହାଜାଗତିକ ଶକ୍ତିର ଅଧିକାରୀ ହୋଇଛନ୍ତି ? ପରମାତ୍ମା କ'ଣ ସତରେ ମଣିଷ ପାଇଁ ଆଣି ଦେଇପାରିବେ ମହାନନ୍ଦ ଓ ପ୍ରଶାନ୍ତି ?

ଯଦି ପରମାତ୍ମା ନାହାଁନ୍ତି, ତେବେ ପୃଥିବୀର ଅଗଣିତ ମଣିଷ କାହିଁକି ତାଙ୍କୁ ବିଶ୍ୱାସ କରୁଛନ୍ତି ? କାହିଁକି ଭଗବାନଙ୍କର ଏତେ ପୂଜା ଆରାଧନା କରୁଛନ୍ତି ? କାହିଁକି ଅଗଣିତ ଧର୍ମାନୁଷ୍ଠାନ ପ୍ରତିଷ୍ଠା କରୁଛନ୍ତି ? କାହିଁକି ଏତେ ଧର୍ମଶାସ୍ତ୍ର ରଚନା କରୁଛନ୍ତି ? ଏସବୁର ଉତ୍ତର ଖୋଜିବାକୁ ପଡିବ ମୋତେ । କେବଳ ବହି ପଢିବା ଦ୍ୱାରା ନୁହେଁ ବା ଯୋଗୀ ଓ ସ୍ୱାମୀମାନଙ୍କର ପ୍ରବଚନ ଶୁଣି ନୁହେଁ । ନିଜକୁ ଆଧ୍ୟାତ୍ମିକ କ୍ଷେତ୍ରରେ ନିୟୋଜିତ କରି ଏହା ମୋତେ ହାସଲ କରିବାକୁ ହେବ । ଏ ପ୍ରଶ୍ନର ଉତ୍ତର ନ ମିଳିଲେ ବଞ୍ଚିବା ଅସମ୍ପୂର୍ଣ୍ଣ ଓ ନିରାନନ୍ଦ ହୋଇ ରହିଯିବ । ମୋ ମନ ଭିତରେ ଉଠିଥିବା ପ୍ରଶ୍ନ ସବୁ ସମ୍ଭବତଃ ଆଧୁନିକ ମଣିଷଙ୍କ ଭିତରେ ବାରମ୍ବାର ଉଠିଥିବା ପ୍ରଶ୍ନମାନଙ୍କ ଠାରୁ ଭିନ୍ନ ନଥିଲା । ଏସବୁ ପ୍ରଶ୍ନମାନଙ୍କର ଉତ୍ତର ବୈଜ୍ଞାନିକ ଓ ଦାର୍ଶନିକ ମାନେ ବାରମ୍ବାର ଚେଷ୍ଟା କରି ଆସିଛନ୍ତି ଓ ଅଗଣିତ ପୁସ୍ତକ ମଧ୍ୟ ସୃଷ୍ଟି ହୋଇଛି । ଆଧୁନିକ ସାହିତ୍ୟରେ ଏ ପ୍ରଶ୍ନମାନଙ୍କର ସ୍ଥାନ ଓ ଗୁରୁତ୍ୱ ବଦଳି ନାହିଁ ।

ବିଜ୍ଞାନ ଓ ଧର୍ମ ଦର୍ଶନକୁ ବିଶ୍ଳେଷଣ କରିଥିବା ବ୍ୟକ୍ତିମାନଙ୍କ ଭିତରେ ଦୁଇଜଣଙ୍କୁ ବିଶେଷଭାବେ ମନେ ରଖିଛି । ଜଣେ ହେଉଛନ୍ତି ବୈଜ୍ଞାନିକ ଓ ଦାର୍ଶନିକ ଏ.ଏନ୍. ହ୍ୱାଇଟ୍‌ହେଡ (A. N. Whitehead) ଏବଂ ଅନ୍ୟ ଜଣେ ହେଉଛନ୍ତି ଖ୍ରୀଷ୍ଟୋଫର ଇସରଉଡ୍(Christopher Isherwood) । ଆମର ବିଶିଷ୍ଟ ଦାର୍ଶନିକ ପ୍ରଫେସର ରାଧାକୃଷ୍ଣନ୍ ମଧ୍ୟ ଏ ବିଷୟରେ ଆଲୋକପାତ କରିଛନ୍ତି । ପ୍ରଫେସର୍ ହ୍ୱାଇଟ୍‌ହେଡ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ପରେ ଲଣ୍ଡନର ବିଖ୍ୟାତ ଇମ୍ପେରିଆଲ୍ କଲେଜରେ ଗଣିତର ଅଧ୍ୟାପକ ଥିଲେ ଓ ତାହାକୁ ପରିତ୍ୟାଗ କରି ହାର୍ଭାଡ଼୍ ବିଶ୍ୱବିଦ୍ୟାଳୟରେ ଦର୍ଶନର ଅଧ୍ୟାପକ ହେଲେ । ବିଖ୍ୟାତ ଦାର୍ଶନିକ ଓ ଗଣିତଜ୍ଞ ବ୍ରାଟାଣ୍ଡ ରସେଲ୍‌ଙ୍କ ସହ ମିଶି ସେ ଲେଖିଥିଲେ ପ୍ରିନ୍‌ସିପିଆ ମ୍ୟାଥେମାଟିକା । ନୂତନ ଦାର୍ଶନିକ ତତ୍ତ୍ୱକୁ ଉପସ୍ଥାପନା କରିଥିଲେ ସେ । ପୃଥିବୀରେ ବସ୍ତୁ ଅପେକ୍ଷା ପ୍ରକ୍ରିୟା ମୌଳିକ । ପୃଥିବୀରେ ତତ୍ତ୍ୱମୀମାଂସା ବା ମେଟାଫିଜିକ୍‌ସ ସ୍ଥାନ ମୌଳିକ ଓ ସ୍ୱତନ୍ତ୍ର । ଏଇଥିପାଇଁ ବସ୍ତୁବାଦୀ ବିଜ୍ଞାନର ପରିସୀମା ବାହାରେ ଧର୍ମ ଓ ଦର୍ଶନର ଅନ୍ୟ ଏକ ପୃଥିବୀ ରହିଛି ଯାହା ମଣିଷକୁ ଓ ସଭ୍ୟତାକୁ ପରିଚାଳିତ କରିଆସିଛି । ଅନ୍ୟ ପକ୍ଷରେ ଖ୍ରୀଷ୍ଟୋଫର ଇସରଉଡ ଲେଖିଥିଲେ "ବେଦାନ୍ତ ଫର ମଡର୍ଣ୍ଣ ମ୍ୟାନ" (Vedanta for Modern Man) ବେଦାନ୍ତର ସବୁ ଜଟିଳ ତତ୍ତ୍ୱକୁ ସେ ସାଧାରଣ ଭାବେ ବ୍ୟାଖ୍ୟା କରିଥିଲେ । ବ୍ରହ୍ମ ଅଦ୍ୱିତୀୟ ଓ ବ୍ରହ୍ମକୁ ଅନୁଭବ କରିଲେ

ପରମାତ୍ମାକୁ ସହଜରେ ଅନୁଭବ କରିହେବ ଏକଥା ବେଦାନ୍ତର ମୂଳକଥା । ବିଜ୍ଞାନ ଜରିଆରେ ବ୍ରହ୍ମକୁ ବ୍ୟାଖ୍ୟା କରିହେବ ନାହିଁ । ବିଜ୍ଞାନ ଓ ବୈଷୟିକ ଜ୍ଞାନର ମେସିନ୍ ଜରିଆରେ ଏହାକୁ ଅନୁଭବ କରିହେବ ନାହିଁ । ଅନେକ ଦାର୍ଶନିକ ଓ ବୈଜ୍ଞାନିକ ବାରମ୍ୱାର ଏହା ଉଲ୍ଲେଖ କରିଆସିଛନ୍ତି । ଏମାନଙ୍କ ଭିତରେ ମୁଖ୍ୟ ଅଛନ୍ତି ଆଲ୍‌ଡସ ହକ୍‌ସେଲ । ତାଙ୍କର 'ଆଇଲ୍ୟାଣ୍ଡ' ଏବଂ 'ବ୍ରେଭ ନ୍ୟୁ ୱାର୍ଲଡ୍' ଆଦି ସାହିତ୍ୟ ଜଗତରେ ଅନବଦ୍ୟକୃତି ବୋଲି ଆଖ୍ୟାୟିତ ହୋଇସାରିଛି ।

ବିଜ୍ଞାନ ଓ ଯନ୍ତ୍ରମାନଙ୍କ ପୃଥିବୀରୁ ମୁକୁଳି ଅନ୍ୟ ଏକ ପୃଥିବୀର ପରିକଳ୍ପନା ଗୋଟାଏ ନୂତନ ୟୁଟୋପିଆ ନୁହେଁ ତ ଆଉ କ'ଣ ? ବୈଜ୍ଞାନିକ କାହାଣୀ ଓ ଉପନ୍ୟାସ ସବୁ ଲେଖା ଯାଇଛି । ଅନେକ ଚଳଚ୍ଚିତ୍ର ନିର୍ମାଣ ମଧ୍ୟ କରାଯାଇଛି । ପ୍ରତ୍ୟେକ ମଣିଷ ଭିତରେ ଯଦି ମୁକ୍ତି ଓ ସ୍ୱାଧୀନତାର ଅନ୍ୱେଷଣ ଜାଗରିତ ହୋଇଛି ଓ ମହାଜାଗତିକ ଶକ୍ତିକୁ ଅନୁଭବ କରିବାର ଆଶା ଅଙ୍କୁରିତ ହୋଇଛି, ତେବେ ସବୁ ଯନ୍ତ୍ର ଓ ମନ୍ତ୍ରର ବନ୍ଧନକୁ ଛିନ୍ନ କରିବାକୁ ହେବ । ବାସ୍ତବରେ ହେଉ ବା ପରିକଳ୍ପନାରେ ହେଉ, ୟୁଟୋପିଆ ସବୁ ସୃଷ୍ଟି କରିବାକୁ ହେବ । ମୁଁ ଭାବୁଛି ମେସିନ ଉପରେ ବିଜୟ ହାସଲ କରିବା ପାଇଁ ମଣିଷ ଅବିରତ ଚେଷ୍ଟା କରି ଆସିଛି ଓ ସଫଳତା ଦେଖାଇ ସାରିଛି । ମଣିଷ ମଧ୍ୟ ତାହାର ସମଭାବାପନ୍ନ ମଣିଷ ସହ ହାତ ମିଳାଇଛି । ନୂତନ ୟୁଟୋପିଆର ପରିକଳ୍ପନା ଏବେ ମଧ୍ୟ ଶେଷ ହୋଇନାହିଁ ଓ ଭବିଷ୍ୟତରେ ମଧ୍ୟ ଶେଷ ହେବ ନାହିଁ ।

❑❑❑

୨୨

# ୟୁଟୋପିଆ ଓ ମ୍ୟାଜିଷ୍ଟର୍ ଲୁଡି

ସବୁ ଶୀତ ସକାଳରେ ମଣିଷର ଅସହାୟତା ବିଷୟରେ ମୁଁ କେଜାଣି କାହିଁକି ଭାବି ବସେ । ବାହାର ପୃଥିବୀରେ କୁହୁଡିର ଏକ ଆସ୍ତରଣ । ସୂର୍ଯ୍ୟୋଦୟ ହୋଇନାହିଁ । କାଉ କୋଇଲି ବି ଉଠି ନାହାଁନ୍ତି । ସବୁକିଛି ଯେମିତି ସଙ୍କୁଚିତ ହୋଇଯାଇଛି । ଏ ସମୟରେ ବସ୍ତୁବାଦୀ ଜୀବନ, ଅଶାନ୍ତ ମନ ଓ ଅତୃପ୍ତପ୍ରାଣର ସମସ୍ତ ଅନ୍ଧକାରମୟ ପରିପ୍ରକାଶ ଏ ମଣିଷକୁ କେଜାଣି କାହିଁକି ଖୁବ୍ ଭୟଭୀତ କରାଇଥାଏ । ଯୁଗଯୁଗଧରି ମଣିଷ କାହିଁକି ନିଜକୁ ଓ ନିଜର ପୃଥିବୀକୁ ଧ୍ୱଂସମୁଖକୁ ଟାଣିବାରେ ଲାଗିଛି । ଏଥିପାଇଁ କରିଛି ଯୁଦ୍ଧ ଓ ସୃଷ୍ଟି କରିଛି ଘୃଣା ଓ ଦ୍ୱେଷ । ଆଙ୍କିଛି ମୃତ୍ୟୁ ବିଭୀଷିକାର ଏକ ଚିତ୍ର । ବିଶ୍ୱର ଅନ୍ୟତମ ଶ୍ରେଷ୍ଠ ଚିତ୍ରକର ପିକାଶୋ ତାଙ୍କର ପେଣ୍ଟିଂ 'ଗ୍ୱେର୍ଣିକା'ରେ ଏଇ ବିଷୟ ହିଁ ତୂଳୀ ମାଧ୍ୟମରେ ପ୍ରକାଶ କରିଛନ୍ତି । ଟଲଷ୍ଟୟ ଲେଖିଛନ୍ତି 'ଓ୍ୱାର ଆଣ୍ଡ ପିସ୍' । ସଂଗୀତଜ୍ଞ ଚେକୋଭସ୍କି ରଚନା କରିଛନ୍ତି ପ୍ରଭାବଶାଳୀ ସଙ୍ଗୀତ । ମଣିଷର ଆତ୍ମ ଧ୍ୱଂସକାରୀ କର୍ମ ଓ ଚିନ୍ତନକୁ ବିଶ୍ଳେଷଣ କରିଛନ୍ତି ବିଖ୍ୟାତ ସମାଜଶାସ୍ତ୍ରୀ ଏରିକ୍ ଫ୍ରମ୍ ତାଙ୍କର ଯୁଗାନ୍ତକାରୀ ବହି 'ଆନାଟୋମି ଅଫ୍ ହ୍ୟୁମାନ ଡେଷ୍ଟ୍ରକ୍‌ଟିଭ୍‌ନେସ୍' ମାଧ୍ୟମରେ । ସଇତାନ ଆମ ସମସ୍ତଙ୍କ ଭିତରେ ବସା ବାନ୍ଧିଛି । ସଇତାନ ପଣିଆ ଆମ ସମସ୍ତଙ୍କର ଏକ ପରିଚୟ ହୋଇ ସାରିଛି । 'ସଇତାନ'ରୁ ସାଧୁସନ୍ଥ ହେବାର ପ୍ରୟାସ ସରିନାହିଁ କିନ୍ତୁ ମଣିଷ ମଧ୍ୟ ସବୁବେଳେ ଶାନ୍ତି ଓ ପ୍ରେମ, ଭ୍ରାତୃତ୍ୱ ଓ ସହାବସ୍ଥାନ, ଏକତା ଓ ସଂହତି, ସୁନ୍ଦର ଓ ମଧୁରର ଅନ୍ୱେଷଣରେ ଯାତ୍ରା କରିଛି । ଖୋଜିଛି ଏକ ଅନ୍ତରଙ୍ଗ ପୃଥିବୀକୁ ଯେଉଁଠି ତାର ସ୍ୱପ୍ନ ବାସ୍ତବ ହୋଇପାରିବ । ଯେଉଁଠି ସେ ଖୋଜୁଥିବା ମାନବିକ ମୂଲ୍ୟବୋଧ ଓ ଆଧାତ୍ମିକ ସ୍ୱର୍ଗକୁ ଅନୁଭବ କରିପାରିବ । ଏହା ଯୁଗଯୁଗର ଅନ୍ୱେଷା ଓ ପରିପୂର୍ଣ୍ଣତାର ପରିଭାଷା । ଏହା ୟୁଟୋପିଆର ସୃଷ୍ଟି ଓ ସାର୍ଥକତା । ମୁଁ ଏଇ ୟୁଟୋପିଆକୁ ଖୋଜୁଛି ଓ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଖୋଜୁଥିବି । ଯେଉଁ ଦାର୍ଶନିକ, କବି ଓ ଲେଖକ, ବୈଜ୍ଞାନିକ ଓ ବିଶେଷଜ୍ଞ ମାନେ ୟୁଟୋପିଆର ପରିକଳ୍ପନା କରିଛନ୍ତି, ତାଙ୍କର ଚିନ୍ତାଧାରାକୁ ବୁଝିବା ଓ ଅନ୍ତଃସ୍ଥ କରିବା ଏକ ଆହ୍ୱାନରେ ପରିଣତ ହୋଇଯାଇଛି । ଏଇ ପରିକଳ୍ପନାର ତାଲିକା କରିବାକୁ ପ୍ରୟାସ କରିଲେ ବିଶିଷ୍ଟ ଲେଖକ ଓ ସାହିତ୍ୟରେ ନୋବେଲ୍

ପୁରସ୍କାର ପ୍ରାପ୍ତ ହରମାନ୍ ହେସ୍‌ଙ୍କ ଅନ୍ୟତମ ଶ୍ରେଷ୍ଠକୃତି 'ଦି ଗ୍ଲାସ୍ ବିଡ୍ ଗେମ୍' (The Glass Bead Game) ନିଶ୍ଚିତ ସ୍ଥାନ ପାଇବ । ପରିପକ୍ୱ ବୟସରେ ଏହାକୁ ସେ ଲେଖିଥିଲେ । ପୂର୍ବରୁ ଲେଖିଥିବା ବହି ମାନଙ୍କ ଭିତରେ ଚହଳ ପକାଉଥିବା ବହିଥିଲା 'ସିଦ୍ଧାର୍ଥ' ଏବଂ 'ଜର୍ଣ୍ଣି ଟୁ ଦି ଇଷ୍ଟ' । ଭାରତୀୟ ଓ ଚୀନ ଦେଶୀୟ ଧର୍ମ ଓ ଦର୍ଶନ ତାଙ୍କୁ ବାରମ୍ବାର ଆକୃଷ୍ଟ କରିଥିଲା । ଜୀବନର ଶେଷବେଳକୁ ହରମାନ୍ ହେସ୍ ଚୀନୀୟ ଦାର୍ଶନିକ ଲାଓ ଏତ୍-ସିଙ୍କ ଦ୍ୱାରା କୁଆଡେ ଖୁବ୍ ପ୍ରଭାବିତ ହୋଇଥିଲେ । ଏ ବହିଟିର ଲେଖା ଆରମ୍ଭ ହୋଇଥିଲା ୧୯୩୧ ମସିହାରେ ଓ ଶେଷ ହୋଇଥିଲା ୧୯୪୩ ମସିହାରେ । ଲେଖକ ବାରମ୍ବାର ବହିଟିର ଭାଷା ଓ ବିଷୟ ବଦଳାଉ ଥିବା ବହିଟି ୧୯୪୬ ମସିହାରେ ନୋବେଲ ପୁରସ୍କାରରେ ଗୌରବାନ୍ୱିତ ହୋଇଥିଲା । ବହିଟିର ଅନ୍ୟନାମ ମଧ୍ୟ ଦିଆଯାଇ 'ମ୍ୟାଜିଷ୍ଟର ଲୁଡି' ଭାବେ ଉପସ୍ଥାପନା କରାଯାଇଛି । ବହିଟି ଆଗାମୀ ଭବିଷ୍ୟତରେ ଅନେକ ଶତାବ୍ଦୀ ପରେ ପ୍ରାୟ ପଞ୍ଚବିଂଶ ଶତାବ୍ଦୀ ବେଳର ସମୟକୁ ସୂଚୀତ କରିଛି । ସେତେବେଳେ ଇୟୁରୋପର କେନ୍ଦ୍ରସ୍ଥଳରେ ଏକ ଦେଶ ଜନ୍ମ ନେଇଛି ଯାହାକୁ ହେସ୍ କାଷ୍ଟାଲିଆ ନାମରେ ନାମୀତ କରିଛନ୍ତି । ଏଠାରେ ସବୁକିଛି ବୌଦ୍ଧିକ ଓ ମନସ୍ତାତ୍ତ୍ୱିକ । ଟେକ୍ନୋଲୋଜି ଏବଂ ବସ୍ତୁବାଦୀ ଜୀବନ ଓ ମୂଲ୍ୟବୋଧ ଗୁଡିକର ସ୍ଥାନ ନାହିଁ । କାଷ୍ଟାଲିଆରେ ଯେଉଁମାନେ ବସବାସ କରନ୍ତି ସେମାନେ ଗୋଟାପଣେ ବୁଦ୍ଧିଜୀବୀ । ସେମାନଙ୍କର ଦୁଇଟି କାମ । ଗୋଟିଏ ହେଲା ଏକ ଆବାସିକ ବିଦ୍ୟାଳୟର ସ୍ଥାପନା, ଯେଉଁଠି ପିଲାମାନେ ଏକ ନୂତନ ଶିକ୍ଷା ଓ ମାନସିକତା ସହ ପରିଚିତ ହେବେ । ଅନ୍ୟଟି ହେଲା, ଏକ ନୂତନ ଖେଳ ସମସ୍ତେ ଖେଳିବେ ଯାହାକୁ କୁହାଯାଏ 'ଗ୍ଲାସ୍ ବିଡ୍ ଗେମ୍' । ଜୋସେଫ ନେଚ୍ (Joseph Knetch) ହେଉଛନ୍ତି ଏ ଉପନ୍ୟାସର ନାୟକ । ସେ ଗ୍ଲାସ୍ ବିଡ୍ ଗେମ୍ ଖେଳରେ ଖେଳୁଆଡ ହୋଇ ନିଜକୁ ପ୍ରତିଷ୍ଠା କରିଛନ୍ତି । ସେ ହୋଇଛନ୍ତି 'ମ୍ୟାଜିଷ୍ଟର ଲୁଡି' ବା ଜଣେ ମାଷ୍ଟର । ଅର୍ଥାତ୍ ଏ ଖେଳର ସର୍ବୋଚ୍ଚ ସ୍ତରକୁ ସେ ପହଞ୍ଚି ପାରିଛନ୍ତି । କିନ୍ତୁ 'ଗ୍ଲାସ୍ ବିଡ ଗେମ୍' କ'ଣ ? ଏହା ହେଉଛି ସଂଗୀତ, ଗଣିତ ଓ ଅଧ୍ୟାତ୍ମିକ ଧ୍ୟାନର ଏକ ସମ୍ମିଶ୍ରଣ । ଏହାକୁ ଯିଏ ଖେଳିବ ସେ ଏକାଧାରରେ ସଂଗୀତ, ଗଣିତ ଓ ଆଧ୍ୟାତ୍ମିକ ଭାବନାର ମହନୀୟତାର ଅଧିକାରୀ ହେବ । ସଂଗୀତ ଆଣିଦେବ ହୃଦୟସ୍ପର୍ଶୀ ମୂର୍ଚ୍ଛନା । ଗଣିତ ଆଣିଦେବ ମାନସିକ ସ୍ତରରେ ତାର୍କିକ ସ୍ପଷ୍ଟତା । ଆଧ୍ୟାତ୍ମିକ ଚେତନା ଆଣିଦେବ ପ୍ରଶାନ୍ତି ଓ ଦିବ୍ୟଜ୍ଞାନ । ଏଇ ମ୍ୟାଜିଷ୍ଟର ଲୁଡିମାନେ ଯୁଗ ଯୁଗ ଧରି ରହି ଆସିଛନ୍ତି ଓ ଗ୍ଲାସ୍ ବିଡ୍ ଗେମ୍‌କୁ ଗୁଦ୍ଧିମନ୍ତ କରିଛନ୍ତି । ଋଗ୍‌ବେଦ ସମୟର ମୁନିଋଷି ମାନେ, ବୌଦ୍ଧଧର୍ମର ଗୁରୁମାନେ, ଇଜିପ୍ଟର ପୁରୋହିତମାନେ, ପିଥାଗୋରାସ୍ ଓ ପ୍ଲାଟୋଙ୍କ ସମୟର ଗଣିତଜ୍ଞମାନେ କୁଆଡେ ସବୁ ଏଇଭଳି ଗ୍ଲାସ୍ ବିଡ୍ ଗେମ୍‌ର ଖେଳୁଆଡ ଥିଲେ । ଆଧୁନିକ ସଭ୍ୟତାରେ ଲିଓନାର୍ଡୋ ଡା ଭିଞ୍ଚି (Leonardo Da Vinci)ଙ୍କ ଠାରୁ ଆରମ୍ଭ କରି ଏବେକାର 'ଦି ସାକ୍ରେଡ ସାଇନ୍‌ସ ଇନଷ୍ଟିଚ୍ୟୁଟ'(The Sacred Science Institute) ପର୍ଯ୍ୟନ୍ତ । ସମସ୍ତେ ଏଇ ଖେଳକୁ ଉଦ୍ଦୀପକ କରିରଖିଛନ୍ତି ।

ବେଳେବେଳେ ପ୍ରଶ୍ନ ଉଠିଥାଏ ଯେ ଏ ପୃଥିବୀର ଅନେକ ଜଟିଳତା ଭିତରେ ସୌନ୍ଦର୍ଯ୍ୟ ପ୍ରତି ଅନୁରାଗ, ବୈଜ୍ଞାନିକ ବିଶ୍ଲେଷଣ, ଗଣିତ, ସଂଗୀତ, ଦର୍ଶନ ଓ ତର୍କଶାସ୍ତ୍ର ଆଦି ସବୁ ଏକାକାର ହୋଇ ପାରିବେ କି ? ସତରେ ଏ ସବୁକୁ ନେଇ ବଞ୍ଚିହେବ କି ? ଜୋସେଫ୍ ନେଚ୍ ମ୍ୟାଜିଷ୍ଟର ହେଲାପରେ ଏଇ କଥା ପ୍ରଶ୍ନ କରିଛି । ସେ କାଷ୍ଟାଲିଆର ସୀମା ସେ ପାର୍ଶ୍ୱରେ ଯେଉଁ ପୃଥିବୀ ଅଛି ଓ ତା'ଭିତରେ ଯେଉଁମାନବ ସୁଲଭ ଦୁର୍ବଳତା ରହିଛି ତାକୁ ବୁଝିବାକୁ ଚେଷ୍ଟା କରିଛି । ଜୋସେଫ୍ ନେଚ୍‌ର ଜଣେ ଛାତ୍ର ତାକୁ ଏକ ହ୍ରଦର ଏ ତଟରୁ ସେ ତଟକୁ ପହଁରି ଯିବାକୁ ଆହ୍ୱାନ ଦେଇଛି । ଜୋସେଫ ନେଚ୍ ଏଇ ଆହ୍ୱାନକୁ ଗ୍ରହଣ କରି ପହଁରିବାକୁ ଯାଇଛି ଓ ହ୍ରଦର ମଧ୍ୟଭାଗରେ ବୁଡି ମରିଯାଇଛି । ଜଣେ ମ୍ୟାଜିଷ୍ଟର ଲୁଡିର ଏଇଭଳି ବିଲୟ ଘଟିଛି । ହରମାନ୍ ହେସ୍ କହିବାକୁ ଚାହିଁଛନ୍ତି ଯେ ୟୁଟୋପିଆ ଭିତରେ ମଣିଷ ସାଧାରଣତ୍ୱ ଖୋଜିବସେ ଓ ଏହାହିଁ ସମ୍ଭବତଃ ଜୀବନବାଦର ମର୍ମକଥା ।

'ଦି ଗ୍ଲାସ୍ ବିଡ୍ ଗେମ୍' ମୁଁ ଅନେକ ନିର୍ଜନ ରାତ୍ରିରେ ପଢ଼ିବାକୁ ଚାହିଛି । ସେ ସମୟରେ ପୃଥିବୀର ସବୁ ମଧୁର ସଂଗୀତ ଶୁଣିବାକୁ ଇଚ୍ଛା ପ୍ରକାଶ କରିଛି । ଯେତେବେଳେ ସବୁକିଛି ନୀରବ ହୋଇଯାଏ, ସେତେବେଳେ ଏକ ଚିର ନୂତନ 'ସିମ୍ଫୋନୀ' ଜଣେ ଶୁଣିପାରେ । ଯେତେବେଳେ ସବୁକିଛି ଅନ୍ଧାକାରଚ୍ଛନ୍ନ ହୋଇଯାଏ, ସେତେବେଳେ ଦିବ୍ୟାଲୋକର ସନ୍ଧାନ ଜଣେ ପାଇଥାଏ । ଯେତେବେଳେ ଜଣଙ୍କର ଧୀଶକ୍ତି ଲୋପ ପାଇଯାଏ, ସେତେବେଳେ ଜ୍ଞାନ ଓ ବିଜ୍ଞାନର ପ୍ରମତ୍ତତା ବଢ଼ିଯାଇଥାଏ । ମୁଁ ଏଇଭଳି ଏକ ଦ୍ୱୈତବାଦୀ ପୃଥିବୀକୁ ନୂତନ ଭାବେ ଆବିଷ୍କାର କରିଥାଏ । ସମ୍ଭବତଃ ୟୁଟୋପିଆକୁ ନୂତନ ଭାବେ ସୃଷ୍ଟିକରିବାକୁ ହେବ ଓ ତା'ଭିତରେ ପୂର୍ଣ୍ଣତା ଓ ମହାଜାଗତିକତାକୁ ହିଁ ଆବିଷ୍କାର କରିବାକୁ ହେବ । ୟୁଟୋପିଆକୁ ହାତ ମୁଠାରେ ରଖି ପ୍ରଶ୍ନ କରିବାକୁ ହେବ ଏହାର ଯଥାର୍ଥତା ଓ ମୌଳିକତା ଉପରେ । ଏଥିରୁ ମୁକୁଳିବାକୁ ଚେଷ୍ଟା କରାଯିବ । ଏଲ୍ ଡୋରାଡୋ (El Dorado) ହେଉ ବା ସାଙ୍ଗରିଲା ହେଉ ଆଟ୍‌ଲାଣ୍ଟିସ୍ ହେଉ ଅଥବା କାଷ୍ଟାଲିଆ ହେଉ, ସବୁ ଆମର ମନଗହୀରର ସୁନେଲୀ ସ୍ୱପ୍ନ । ଏ ଭିତରେ ରହି ସ୍ୱପ୍ନ ଦେଖିହେବ, ସ୍ୱପ୍ନକୁ ସତ କରିହେବ ଓ ଚାହିଁଲେ ସ୍ୱପ୍ନ ରାଜ୍ୟରୁ ମଧ୍ୟ ପଳାୟନ କରିହେବ । ସାଧାରଣ ମଣିଷଙ୍କ ପୃଥିବୀ, ୟୁଟୋପିଆ ଭିତରେ ବ୍ୟବଧାନ ବିଶେଷ ନୁହେଁ । ଏହା ଏକାନ୍ତରେ ଅତିକ୍ରମ କରିହେବ ଗୋଟିକରୁ ଅନ୍ୟଟିକୁ । ୟୁଟୋପିଆ ଭାଙ୍ଗିଗଲେ ନୂଆ ୟୁଟୋପିଆ ସୃଷ୍ଟି କରିହେବ । ସାଧାରଣ ମଣିଷଙ୍କ ପୃଥିବୀତ ପ୍ରତିମୁହୂର୍ତ୍ତରେ ବଦଳୁଛି । ଏଇ ବଦଳିବାରେ ଅନେକ ନୂତନତ୍ୱ ରହିଆସିଛି । ମଣିଷର ଜୀବନ ଓ ଯୌବନ ଶୀତ ସକାଳରେ ତୀବ୍ର ଅନୁଭବ କରିହୁଏ । ଏକ ସ୍ୱର୍ଗୀୟ ଭାବନା ସ୍ୱତଃମନକୁ ଆସେ ନାହିଁ । କୁଙ୍କୁରି କାଙ୍କୁରି ମାଡି ଆସିଥିବା ରାତ୍ରିସାରା ଶୀତ ସହଜରେ ଦୂର ହୁଏ ନାହିଁ । ଭୂତ ଭଳି ମାଡି ବସିଥିବା ବିଭିନ୍ନ ଖଣ୍ଡିତ ଚିନ୍ତା ନୂଆରୂପ ନିଏ ନାହିଁ । ନିରର୍ଥକ ମନେ ହେଉଥିବା

ଅନେକ କଥା ଆହୁରି ନିରର୍ଥକ ହୋଇଯାଏ । ଏଇ ସମୟରେ ଗୋଟାଏ ଝଲକରେ ଯେମିତି ୟୁଟୋପିଆ ଦେଖାଦିଏ ଆଉ ଉଦ୍‌ଭାସିତ ହୁଏ ଏକ ଚମତ୍କାର ଆଲୋକ ରଶ୍ମୀର ଏକ ଉଜ୍ଜ୍ୱଳ ପ୍ରଭାତ । ଏକ ଅଭିନବ ସୂର୍ଯ୍ୟୋଦୟର ଆରମ୍ଭ ହୁଏ ଯାହାକୁ କେବଳ କଳ୍ପନାର ପୃଥିବୀରେ ଦେଖିହୁଏ । ଏକାକୀ ବି ଦେଖି ହୁଏ ଓ ଅନୁଭବ କରିହୁଏ । ସାଙ୍ଗସାଥୀ ଓ ପ୍ରିୟଜନଙ୍କୁ ନେଇ ମଧ ଦେଖିହୁଏ । ୟୁଟୋପିଆ କେବଳ ଜଣକ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ସାମଗ୍ରିକ ଭାବେ ଅନେକ ସମଭାବାପନ୍ନ ମଣିଷଙ୍କ ଆପଣାର ନୁହେଁ ତ ଆଉ କ'ଣ ? 'ଗ୍ଲାସ୍ ବିଡ୍ ଗେମ୍'ର ଖେଳୁଆଡ୍ ମାନେ ଅଛନ୍ତି ଏଥିରେ । ପଥଭ୍ରାନ୍ତ ପରିବ୍ରାଜକମାନେ ଅଛନ୍ତି ମଧ । ହରମାନ୍ ହେସ୍ ଏ ବିହିଟିକୁ ପୂର୍ବ ଦିଗକୁ ମୁହାଁଇ ଥିବା ମଣିଷମାନଙ୍କୁ ଉତ୍ସର୍ଗ କରିଛନ୍ତି (Dedicated to the Journeyer to the East) ଆମେ ସବୁ ସେଇ ପୂର୍ବାଶାର ମଣିଷ ।

□ □ □

**୨୩**

# ମୋହମାୟଗ୍ରସ୍ତ ମଣିଷ

"ମାୟା" ଶବ୍ଦଟି ଏକ ଆକର୍ଷଣୀୟ ଶବ୍ଦ ନୁହେଁ ତ ଆଉ କ'ଣ ? ପିଲାଦିନରୁ ଏହାର ତାତ୍ପର୍ଯ୍ୟ ବୁଝିବାକୁ ମୁଁ ଚେଷ୍ଟା କରିଆସିଛି । ଭାଗବତ ହେଉ ବା ଶ୍ରୀମଦ୍ ଭଗବତ୍ ଗୀତାରେ ଏ ବିଷୟରେ ଅନେକ ବ୍ୟାଖ୍ୟା ପଢ଼ିବାକୁ ଓ ଶୁଣିବାକୁ ସୁଯୋଗ ମିଳିଛି । ମହାଜ୍ଞାନୀ ଶଙ୍କର ଏ ବିଷୟରେ ନିଜର ମତ ସ୍ପଷ୍ଟ କରିଛନ୍ତି । ଏହି ମତ ଉପରେ ଟିପ୍‌ପଣୀ ଦେଇଛନ୍ତି ରାମାନୁଜ । ବେଦ ଉପନିଷଦରେ ମାୟାକୁ ନେଇ ଶ୍ଳୋକ ରଚନା କରାଯାଇଛି । ଭଗବାନ ବୁଦ୍ଧ ତାଙ୍କର ବୌଦ୍ଧ ଧର୍ମରେ 'ମାୟା' କଥା କହିବାକୁ ଭୁଲି ନାହାନ୍ତି । ମୁଁ ଯଦି ଧର୍ମଶାସ୍ତ୍ର ଏବଂ ଦର୍ଶନର ଛାତ୍ର ହୋଇଥାଆନ୍ତି 'ମାୟା'ର ତତ୍ତ୍ୱ ବୁଝିବାକୁ କାୟ, ମନ ଓ ବାକ୍ୟରେ ମନୋନିବେଶ କରିଥାଆନ୍ତି । ଏକ ଅଜଣା ଓ ଅମଡା ବାଟରେ ଏହା ଯିବା ଭଳି ହୋଇଥାଆନ୍ତା । ନିଶ୍ଚୟ ଏ ପୃଥିବୀରେ ଓ ଏ ଜୀବଦ୍ଦଶା ମଧ୍ୟରେ ସବୁ ମଣିଷ ସମ୍ଭବତଃ ମାୟାଗ୍ରସ୍ତ ହୋଇ ଥାଆନ୍ତି ବୋଲି ମୁନିଋଷିମାନେ ସବୁବେଳେ ମଣିଷକୁ ଚେତାଇ ଦେଇଛନ୍ତି । କିନ୍ତୁ ମାୟାଜାଲ ଆହୁରି ବିସ୍ତୃତ ହୋଇଛି ଓ କୋଟି କୋଟି ଲୋକ ଏଥିରେ ଛନ୍ଦିହୋଇ ପଡିଛନ୍ତି ବୋଲି ଆମର ସାଧୁସନ୍ଥମାନେ ସତର୍କବାଣୀ ଶୁଣାଇଛନ୍ତି । ଯୌବନର ଆରମ୍ଭରେ ଆମେ ସମସ୍ତେ ପ୍ରେମରେ ପଡିଯାଇଥାଉ । ପ୍ରେମର ସଜ୍ଞା ସବୁକ୍ଷେତ୍ରରେ ସମାନ ନଥାଏ । ନୈସର୍ଗିକ ଓ ଆଧ୍ୟାତ୍ମିକ ପ୍ରେମ ସହ ଦୈହିକ ଓ ମାନସିକ ପ୍ରେମର ଏକ ଅଦ୍ଭୂତ ସଂପର୍କ ଆପେ ଆପେ ରଚିତ ହୋଇଯାଏ । ଏସବୁ ସଂଦିଗ୍ଧତା ଭିତରେ ଅନେକ ବର୍ଷତଳେ ସତୁରୀ ଦଶକରେ କଟକ ଷ୍ଟେସନ୍‌ରେ ହ୍ୱିଲର୍ ବହି ଦୋକାନରୁ ପ୍ରସିଦ୍ଧ ଲେଖକ ରାଜାରାଓଙ୍କ ଚମତ୍କାର ଉପନ୍ୟାସ 'ଦି ସର୍ପେଣ୍ଟ ଆଣ୍ଡ ଦି ରୋପ୍' (The Serpent and the Roap) ଓରିଏଣ୍ଟ ପେପର ବ୍ୟାକ୍ ଦ୍ୱାରା ପ୍ରକାଶିତ ହୋଇଥିବାର ଆବିଷ୍କାର କରିଥିଲି । ଏ ବହି ବିଷୟରେ ଇଂରାଜୀ ଖବରକାଗଜ ମାନଙ୍କରେ ବହୁତ ସମୀକ୍ଷା ବାହାରୁଥାଏ । ବହିଟି କିଣିବା ଛଡା ଅନ୍ୟ କିଛି ଉପାୟ ନଥାଏ । ଏକା ନିଶ୍ୱାସରେ ଏ ବହିଟି ପଢ଼ିବା ସମ୍ଭବ ବୋଲି ସମାଲୋଚକମାନେ ମତାମତ ଦେଇ ଥାଆନ୍ତି । କଲେଜର ଛାତ୍ରାବାସରୁ ଯେତେବେଳେ ସବୁ ସହାଧ୍ୟାୟୀ ଛୁଟିରେ ଘରକୁ ଚାଲିଯାଇଥାଆନ୍ତି ମୁଁ ଏକଲା ରହିଯାଏ । ଏଇଭଳି ସମୟରେ ନିର୍ଜନ କୋଠରି ଭିତରେ

ଅନେକ କିଛି ପଢ଼ିବାକୁ ଓ ଭାବିବାକୁ ସୁଯୋଗ ମିଳେ । ରାଜାରାଓଙ୍କ ଉପନ୍ୟାସ ଏକ ଅପୂର୍ବ ଶିହରଣ ଖେଳାଇ ଦେଇଥିଲା ବୋଲି ଏବେ ମନେ ଅଛି । କାରଣ ମାୟା ସମ୍ପର୍କରେ ଲେଖକ ମହାମୁନି ନାରଦଙ୍କ ବିଷୟରେ ଏକ କାହାଣୀ ବର୍ଣ୍ଣନା କରିଛନ୍ତି । ଏକଦା ମହର୍ଷି ନାରଦ ଭଗବାନ ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଦ୍ୱାରକା ଆସିଥିଲେ । କଥା ଛଳରେ ନାରଦ ମୁନି କୃଷ୍ଣଙ୍କୁ ମାୟା କ'ଣ ବୋଲି ପ୍ରଶ୍ନ କରିଲେ । ଭଗବାନ ଶ୍ରୀକୃଷ୍ଣ କହିଲେ ଯେ ମାୟା ଏପରି ଏକ ଜିନିଷ ଯାହାକୁ ବୁଝାଇ ହେବ ନାହିଁ କଥାରେ । କେବଳ ଅନୁଭବ କରିଲେ ଯାଇ ବୁଝିହେବ । ଏଥିପାଇଁ ତାଙ୍କ ସହ ନାରଦମୁନିଙ୍କୁ ଯିବାକୁ କହିଲେ । ଦୁହେଁ ଚାଲିବା ଆରମ୍ଭ କରିଲେ ଓ ଦ୍ୱାରକା ଡେଇଁ ଏକ ମରୁଭୂମିରେ ପହଞ୍ଚିଲେ । ନାରଦ ଶ୍ରୀକୃଷ୍ଣଙ୍କୁ ପଚାରିଲେ ସେମାନେ କୁଆଡେ ଯାଉଛନ୍ତି ? ମାୟାକୁ ବୁଝିବାକୁ ହେଲେ ମରୁଭୂମିରେ ଏହା ସମ୍ଭବ ହେବ କି ? ଶ୍ରୀକୃଷ୍ଣ ନାରଦଙ୍କୁ ଧୈର୍ଯ୍ୟର ସହ ଅପେକ୍ଷା କରିବାକୁ କହିଲେ । କିଛିବାଟ ଚାଲିଲା ପରେ ଶ୍ରୀକୃଷ୍ଣ ନାରଦଙ୍କୁ କହିଲେ ଯେ ତାଙ୍କୁ ଭୀଷଣ ଶୋଷ ହେଉଛି । ଆଉ ଚାଲିବା ସମ୍ଭବ ନୁହେଁ । ତାଙ୍କ ପାଇଁ ପାଣି ଆଣିବାକୁ ନାରଦଙ୍କୁ କହିଲେ । ନାରଦ ପାଣି ଖୋଜିବାକୁ କିଛି କୋଶ ଚାଲିଲା ପରେ ଗୋଟିଏ ଗାଁ ପାଖରେ ପହଞ୍ଚିଲେ । ସେଠାରେ ଗୋଟିଏ କୂଅ ଦେଖିବାକୁ ପାଇଲେ । କୂଅରୁ ଜଣେ ସୁନ୍ଦରୀ ଯୁବତୀ ପାଣି କାଢୁଥିଲେ । ସେ ଯୁବତୀଙ୍କୁ ତୃଷ୍ଣା ମେଣ୍ଟାଇବା ପାଇଁ ପାଣି ମାଗିଲେ ଓ ଯୁବତୀ ବିନା ଦ୍ୱିଧାରେ ପିଇବା ପାଣି ଯୋଗାଇ ଦେଲେ ନାରଦଙ୍କୁ । ଏଇ ସମୟ ଭିତରେ ନାରଦ ମୁନି ଯୁବତୀର ପ୍ରେମରେ ପଡିଗଲେ । ଯୁବତୀର ପଛେ ପଛେ ଯାଇ ଗାଁରେ ଯୁବତୀର ଘରେ ପହଞ୍ଚିଲେ ଓ ତାଙ୍କର ପିତାଙ୍କୁ ସାକ୍ଷାତ କରି ବିବାହ ପ୍ରସ୍ତାବ ଦେଲେ । ଯୁବତୀଙ୍କ ପିତା ଗୋଟାଏ ସର୍ତ୍ତରେ ବିବାହ ପ୍ରସ୍ତାବରେ ରାଜି ହେଲେ । ଏହା ଥିଲା ଯେ, ଯୁବତୀଙ୍କ ଘରେ ସେଇ ଗାଁରେ ନାରଦଙ୍କୁ ରହିବାକୁ ହେବ । ନାରଦ ଏ ସର୍ତ୍ତରେ ସହଜରେ ରାଜି ହୋଇଗଲେ । ଜୀବନ ରଥ ଗଡି ଚାଲିଲା ଓ ନାରଦ ଚାରୋଟି ସନ୍ତାନର ଜନକ ହେଲେ । ଏହାପରେ ଦିନେ ପ୍ରବଳ ବାତ୍ୟା ଓ ବର୍ଷା ମାଡି ଆସିଲା ଓ ଚାରିଆଡେ ବନ୍ୟା ବ୍ୟାପିଗଲା । ଗୋଟିଏ ଡଙ୍ଗାରେ ନାରଦ ତାଙ୍କ ପରିବାରର ସମସ୍ତଙ୍କୁ ଧରି ବନ୍ୟା ଅତିକ୍ରମ କରିବାକୁ ଚେଷ୍ଟା କରିବା ସମୟରେ ଡଙ୍ଗାଟି ବୁଡିଗଲା । ତା'ପରେ ସେ ସ୍ତ୍ରୀ ଓ ପିଲାମାନଙ୍କୁ ମୁଣ୍ଡରେ ଧରି ବନ୍ୟା ଅତିକ୍ରମ କରିବାକୁ ଗଲାବେଳେ ବନ୍ୟା ଜଳ ଉପରକୁ ଉଠି ତାଙ୍କର ନାକ ପାଖରେ ପହଞ୍ଚିଲା । ସେ ଅଣନିଶ୍ୱାସୀ ହୋଇ ଭଗବାନ ରକ୍ଷା କର ବୋଲି ଚିତ୍କାର କରିଲେ । ଶ୍ରୀକୃଷ୍ଣ ଏ ସମୟରେ ଉପସ୍ଥିତ ହୋଇ ନାରଦଙ୍କୁ ସଚେତନ ହେବା ପାଇଁ କହିଲେ । ସବୁକିଛି ମାୟା ଥିଲା । ଏଥିରେ ନାରଦଙ୍କର ମାୟା ଭଗ୍ନ ହେଲା । ସେ ଅନୁଭବ କରିଲେ ଯେ ଜୀବନଟା କେବଳ ଗୋଟାଏ ମାୟା ଏବଂ ଏଥିରୁ ମୁକୁଳିବା ସହଜ କଥା ନୁହେଁ । କେବଳ ଭଗବାନଙ୍କୁ ଆଶ୍ରା କରିଲେ ମାୟା କବଳରୁ ଜଣେ ନିଜକୁ ରକ୍ଷା କରିପାରିବ ।

ଏଇ 'ମାୟା ସମ୍ପର୍କରେ ଜାଣିବାକୁ ମୁଁ ଅଧିକ ଅଧିକ ଧର୍ମଶାସ୍ତ୍ରର ଗଭୀରତା ଭିତରେ ହଜାଇ ଦେଇଥିଲି । ଭାଗବତରେ ମୁନି ମାର୍କଣ୍ଡେୟ କିପରି ମାୟାକୁ ଦର୍ଶନ କରିବେ ବୋଲି ଭଗବାନଙ୍କୁ ପ୍ରାର୍ଥନା କରିବାର ବର୍ଣ୍ଣନା କରାଯାଇଛି । ବିଭିନ୍ନ ବାଟରେ ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଜଳ, ବାୟୁ, ଆକାଶକୁ ଦେଖୁଛନ୍ତି ଓ ଅନୁଭବ କରୁଛନ୍ତି । ସବୁଠି ଭଗବାନ ଅଛନ୍ତି । କିନ୍ତୁ ମାୟା କେଉଁଠି ? ଏକଦା ପ୍ରଳୟଙ୍କରୀ ଝଡ ବାତ୍ୟା ସହ ମୂଷଳ ଧାରାରେ ବର୍ଷା ଲାଗି ରହିଲା । ସବୁଆଡେ ଜଳପ୍ଲାବିତ ହୋଇଗଲା । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ପୃଥିବୀ, ଅନ୍ତରୀକ୍ଷ ଆଦି ସବୁ ଜଳମଗ୍ନ । ମୁନି ମାର୍କଣ୍ଡେୟଙ୍କୁ ଛାଡି ଆଉ ସମସ୍ତେ ମୃତ । ପ୍ରାଣରକ୍ଷା ପାଇଁ ସେ ମଧ୍ୟ ବ୍ୟାକୁଳ । କୁଆଡେ କୂଳ କିନାରା ଦେଖାଯାଉନାହିଁ । କିଛି ସମୟପରେ ସେ ଏକ ବାଲିକୁଦ ଦେଖି ତା' ଉପରକୁ ଉଠିଗଲେ । ସେଠାରେ ଗୋଟାଏ ସୁନ୍ଦର ବୃକ୍ଷ ଶୋଭା ପାଉଥାଏ । ପତ୍ର ଓ ଫଳ ସବୁ ରଙ୍ଗ ବେରଙ୍ଗର । ଗଛର ଡାଳରେ ଏକ ପତ୍ର ଉପରେ ଶିଶୁଟିଏ ଶୋଇଥାଏ । ତାଙ୍କର ଦେହରୁ ଜ୍ୟୋତି ନିର୍ଗତ ହୋଇ ସବୁଆଡେ ଆଲୋକିତ ହୋଇଥାଏ । ଏପରି ଏକ ଦିବ୍ୟ ଶିଶୁକୁ ଦେଖି ମାର୍କଣ୍ଡେୟ ମୁନି ଅଭିଭୂତ ହେଲେ । ତାଙ୍କର କ୍ଲାନ୍ତି ଓ ଭୟ ସବୁ ଦୂର ହୋଇଗଲା । ସେ ଧୀରେ ଧୀରେ ଶିଶୁ ପାଖକୁ ଆକର୍ଷିତ ହୋଇ ଗଲେ ଓ ଶିଶୁର ନିଃଶ୍ୱାସ ଦ୍ୱାରା ଟାଣିହୋଇ ପେଟ ଭିତରେ ପଶିଗଲେ । ପେଟ ଭିତରେ ତାଙ୍କୁ ସମଗ୍ର ସୃଷ୍ଟି ଦେଖାଦେଲା । ମହାପ୍ରଳୟ ପୂର୍ବରୁ ଥିବା ସୃଷ୍ଟି ଯେମିତି ଥିଲା ତାହାର ରୂପ ରେଖ ଉଦ୍‌ଭାସିତ ହେଲା । ଦେଖାଗଲା ଆକାଶ, ପାତାଳ, ଜ୍ୟୋତିମଣ୍ଡଳ, ପାହାଡ, ପର୍ବତ, ସମୁଦ୍ର, ନଦୀନାଳ, ବଣ ଓ ଜଙ୍ଗଲ । ଆଉ ମଧ୍ୟ ଦେଖାହେଲା ସହର, ଗାଁ, ଆଶ୍ରମ ଓ ଜନବସତି । ମାର୍କଣ୍ଡେୟ ତାଙ୍କର ଆଶ୍ରମକୁ ପୁଣି ଥରେ ଦେଖି ପାରିଲେ । ଆଉ ଶୁଣିପାରିଲେ ଆଶ୍ରମକୁ ଲାଗି ବୋହୁଥିବା ନଦୀର ସଂଗୀତ । ଏସବୁ ଦେଖିଲା ପରେ ମାର୍କଣ୍ଡେୟ ମୁନି ପୁଣି ଶିଶୁର ପ୍ରଶ୍ୱାସରେ ବାହାରକୁ ଆସିଲେ ଓ ଦିବ୍ୟଜ୍ୟୋତିରେ ଆଲୋକିତ ଶିଶୁଟିର ମୁଖମଣ୍ଡଳ ଏବଂ ସ୍ମିତ ହାସ୍ୟକୁ ଦେଖି ଅଭିଭୂତ ହୋଇପଡିଲେ । ଶିଶୁଟି ଯେ ସ୍ୱୟଂ ଭଗବାନ କିନ୍ତୁ ଏହା ମାର୍କଣ୍ଡେୟ ଜାଣିପାରିଲେ ନାହିଁ । ଶିଶୁଟିକୁ ଧ୍ୟାନରତ ନିଜ କୋଳରେ ଧରିବାକୁ ଚେଷ୍ଟାକରିବା ମାତ୍ରକେ, ଶିଶୁଟି ଅନ୍ତର୍ଦ୍ଧାନ ହୋଇଗଲେ । ଆଉ ମଧ୍ୟ ଅନ୍ତର୍ଦ୍ଧାନ ହେଲା ବୃକ୍ଷ, ପତ୍ର, ପ୍ରଳୟର ଜଳ । ସେ ନିଜକୁ ଆଶ୍ରମ ଭିତରେ ଧ୍ୟାନରତ ଅବସ୍ଥାରେ ଆବିଷ୍କାର କରିଥିଲେ । ମାର୍କଣ୍ଡେୟ ଅନୁଭବ କରିଲେ ଯୋଗମାୟା କ'ଣ ? ଏଥିରୁ ମୁକ୍ତ ହେବାର ବାଟ ହେଉଛି ଭଗବାନଙ୍କ ଚରଣ କମଳରେ ଆଶ୍ରୟ ଲୋଡିବା । ସବୁ ଯୁଗରେ ମାୟାକୁ ବୁଝିବା ପାଇଁ ମୁନିଋଷି ଓ ଜ୍ଞାନୀ ମହାଜ୍ଞାନୀମାନେ ଚେଷ୍ଟା କରିଆସୁଛନ୍ତି । ଏହା ଉପରେ ଯାହାକିଛି ଲେଖାଯାଇଛି ସେ ସବୁ ପଢ଼ିବା ବୁଝିବା ଓ ଅନୁଭବ କରିବା ବୋଧେ ଏ ଜୀବନରେ ସହଜ ହେବ ନାହିଁ । ସ୍ୱାମୀ ବିବେକାନନ୍ଦ ହୁଅନ୍ତୁ ବା ଶ୍ରୀଅରବିନ୍ଦ ହୁଅନ୍ତୁ, ମାୟା ଓ ମାୟାବାଦ ଉପରେ ସବିଶେଷ ଲେଖିଛନ୍ତି । ଏ ସବୁ ଅଧ୍ୟୟନ କରିବାକୁ ହେଲେ ଜଣକୁ ଜ୍ଞାନ ଯୋଗୀ ହେବାକୁ ହେବ । ମାୟାର ଡୋରିରୁ ମୁକ୍ତ ହେବାର ଏହା

ଅନ୍ୟ ଏକ ରାସ୍ତା । କିନ୍ତୁ ସବୁଠାରୁ ସହଜ ଓ ସରଳ ବ୍ୟାଖ୍ୟା କରିଛନ୍ତି ବିଶିଷ୍ଟ ବୁଦ୍ଧିଜୀବୀ ଓ ଜନନେତା ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ।

ମାୟାକୁ ବୁଝିବାକୁ ହେଲେ ଆତ୍ମା ଓ ପରମାତ୍ମାର ଅସଲ ସମ୍ପର୍କକୁ ବୁଝିବାକୁ ହେବ । ଆତ୍ମା ପ୍ରତ୍ୟେକଙ୍କ ଭିତରେ ଅଛି ସତ ତାହା ଏକମାତ୍ର ପରମାତ୍ମାଙ୍କ ଅଂଶ ବିଶେଷ । ପ୍ରତ୍ୟେକ ପ୍ରାଣୀର ଅନ୍ତର ମଧ୍ୟରେ ଥିବା ଆତ୍ମ ପୁରୁଷ ଏକ ଅଭିନ୍ନ, ତଥାପି ସେ ଅନ୍ୟପ୍ରାଣୀଙ୍କ ଭିତରେ ଥିବା ଆତ୍ମା ସହିତ ଏକତ୍ବ ଉପଲବ୍ଧି ନକରି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରି ଚାଲିଥାଏ । ଏଇ ରହସ୍ୟମୟ ଭାବ ହିଁ 'ମାୟା' ନାମରେ ନାମିତ । ଏଇ ମାୟା ଅତିକ୍ରମ କରିବା ବେଦାନ୍ତର ମୂଳ ଲକ୍ଷ୍ୟ । ଏଇ ସବୁ ଆଲୋଚନା କରିଛନ୍ତି ଶ୍ରୀ ରାଜଗୋପାଳଚାରୀ । ସେ କହିଛନ୍ତି ଯେ ଜ୍ଞାନ ଉଦୟର ପ୍ରକୃତ ଅର୍ଥ ହେଲା, 'ମାୟା' ଅତିକ୍ରମ କରି ସ୍ୱପ୍ନ ପରିବର୍ତ୍ତେ ବାସ୍ତବ ଜଗତରେ ପାଦ ପକାଇବା । 'ଯୋଗ' ବଳରେ ଏହା ସାଧନ କରାଯାଏ । ଆତ୍ମସଂଯମ, ବିଶ୍ୱାସ, ଶୃଙ୍ଖଳା, ନିୟନ୍ତ୍ରିତ ଜୀବନ ଏବଂ ସଜାଗ ଦୃଷ୍ଟି ହିଁ ଯୋଗ ସାଧନ ପାଇଁ ଏକାନ୍ତ ଆବଶ୍ୟକ ଏବଂ ଏହି ଯୋଗ ବଳରେ ସଂପୃକ୍ତ 'ଜ୍ଞାନ' ହାସଲ କରିହୁଏ ।

ମୁଁ ଯେ ଏକଦା ମାୟାଜାଲରେ ପଡିଯାଇଥିଲି ଓ ଆତ୍ମସଂଯମ ଓ ଶୃଙ୍ଖଳା ହରାଇ ବସିଥିଲି ତାହା ମୋତେ ସ୍ୱୀକାର କରିବାକୁ ହେବ । ମୁଁ ନିଜ କଥା ଭାବୁଥିଲି ଓ ନିଜର ଉଦ୍ଦାମତାକୁ ପ୍ରାଧାନ୍ୟ ଦେଉଥିଲି । ଆସକ୍ତି ଦ୍ୱାରା ମୋହାଚ୍ଛନ୍ନ ହୋଇଥିଲି । ମନର ଉଦବେଳନ ଭଲ ଲାଗୁଥିଲା । ଆତ୍ମା ସହ ପରମାତ୍ମାର ମିଳନ ପରିବର୍ତ୍ତେ ଗୋଟାଏ ପ୍ରକାରର ଭୌତିକ ମିଳନର ପରିକଳ୍ପନାରେ ମୁଁ ମସ୍‌ଗୁଲ ହୋଇଯାଇଥିଲି । ଗୋଟାଏ ଅଜଣା ପୁଲକରେ ମୁଁ ପୁଲକିତ ହୋଇଥିଲି । ଭଲ ପାଇବାର ଜ୍ୟାମିତିକ ସତ୍ୟତା ମୁଁ ଯେମିତି କେଉଁଠି ଖୋଜୁଥିଲି । ଐଶ୍ୱରିକ ଚେତନା ପରିବର୍ତ୍ତେ କେଉଁ ଏକ ଉପନ୍ୟାସର ନାୟକ ଭଳି ଉତ୍ତେଜନା ମୁଁ ଖୋଜୁଥିଲି । ସିଧାରାସ୍ତାରେ ଚାଲିବା ପରିବର୍ତ୍ତେ ଅଙ୍କାବଙ୍କା ରାସ୍ତାରେ ଯିବାକୁ ମୁଁ ପସନ୍ଦ କରିଥିଲି । ଜୀବନଟାକୁ ପ୍ରଶ୍ନର ସମୁଦ୍ର ଭିତରେ ଲୀନ କରିଦେବାକୁ ଚାହିଁଥିଲି । ସବୁକ୍ଷେତ୍ରରେ ଓ ପ୍ରତ୍ୟେକ ମୁହୂର୍ତ୍ତରେ ଦୁଇଟି ବାଟ ସବୁ ମଣିଷଙ୍କ ପାଇଁ ଉନ୍ମୁକ୍ତ ଥାଏ । ପ୍ରଥମଟି ସବୁକିଛି ନିଃସର୍ତ୍ତ ସମର୍ଥନ କରିବା ଏବଂ ଅନ୍ୟଟି ସବୁକୁ ପ୍ରଶ୍ନବାଚକ ଚିହ୍ନରେ ପରିଣତ କରିବା । ଗୋଟାଏ ଆଲୋକ ଓ ଆନନ୍ଦର ପଥ, ଅନ୍ୟଟି ଅନ୍ଧାର ଓ ଯନ୍ତ୍ରଣାର କଣ୍ଟକିତ ରାସ୍ତା । ଆଲୋକ ଓ ଅନ୍ଧାର, ଆନନ୍ଦ ଓ ଯନ୍ତ୍ରଣା ସବୁ ମାୟାର ହିଁ ପରିପ୍ରକାଶ ।

ବିଖ୍ୟାତ ଲେଖକ ଓ ଦାର୍ଶନିକ ରାଜାରାଓ କାହିଁକି 'ଦି ସର୍ପେଣ୍ଟ ଆଣ୍ଡ ଦି ରୋପ୍' ଲେଖିଲେ ଏ ବିଷୟରେ ଅନେକ କିଛି ସାହିତ୍ୟ ଜଗତରେ ତର୍ଜମା କରାଯାଇଛି । ସାପଟିଏ କ'ଣ ଦଉଡି ହୋଇ ପାରେ ଓ ଦଉଡିଟି ବି କ'ଣ ସାପ ଭଳି ଦେଖା ଯାଇପାରେ ? ଏହା ମାୟା-ଗୋଟାପଣେ ମାୟା । ପୃଥିବୀଟି ଏଇଆ । ବାସ୍ତବ ବା ଅବାସ୍ତବ – ମଝିମଝିଆ ନୁହେଁ । ପ୍ରତ୍ୟେକ ମଣିଷକୁ ବାଛିବାକୁ ହେବ ଗୋଟିଏକୁ ଓ ତାହାକୁ ବି ଡେଇଁବାକୁ ପଡିବ ଅବଶେଷରେ ।

□ □ □

## ୨୪

# ମାୟା ଓ ମେସାୟ୍ୟା

ମାୟାକୁ ବୁଝିବାକୁ ହେଲେ ବା ଅନୁଭବ କରିବାକୁ ହେଲେ 'ମେସାୟ୍ୟା'ମାନଙ୍କୁ ବୁଝିବାକୁ ହେବ । ସେମାନଙ୍କର ଆଗମନ ଓ ତିରୋଧାନର ପ୍ରଭାବ ଓ ପ୍ରତିଷ୍ଠାକୁ ଆନ୍ତରିକତାର ସହ ଆପଣାର କିରବାକୁ ହେବ । ମେସାୟ୍ୟାମାନେ କିଏ । ସବୁ ଯୁଗରେ ଓ ସବୁ ଧର୍ମରେ ଏମାନଙ୍କ ବିଷୟରେ ଉଲ୍ଲେଖ କରାଯାଇଛି । କାହାଣୀ ଓ କିମ୍ବଦନ୍ତୀ ସବୁ ଲେଖାଯାଇଛି । ସେମାନେ ଯୁଗାନ୍ତକାରୀ ଧର୍ମ ଓ ବିଶ୍ୱାସ ସୃଷ୍ଟି କରିଯାଇଛନ୍ତି । ମହାବୀର ଜୈନ ହୁଅନ୍ତୁ କି ଗୌତମ ବୁଦ୍ଧ ହୁଅନ୍ତୁ, ଯୀଶୁଖ୍ରୀଷ୍ଟ ହୁଅନ୍ତି କି ପ୍ରୋଫେଟ୍ ମହମ୍ମଦ ହୁଅନ୍ତୁ, ସ୍ୱାମୀ ବିବେକାନନ୍ଦ ହୁଅନ୍ତୁ କି ମହାତ୍ମାଗାନ୍ଧୀ ହୁଅନ୍ତୁ, ସେମାନଙ୍କର ଏ ବିଶ୍ୱର ଆଧ୍ୟାତ୍ମିକ ଅଭିବୃଦ୍ଧିରେ ଯେଉଁ ଅବଦାନ ରହିଛି, ତାହା ତାଙ୍କୁ ଆଜି କରିଛି ମେସାୟ୍ୟା ବା ମହାପୁରୁଷ । ଯେଉଁମାନେ ଭଗବାନଙ୍କୁ ବିଶ୍ୱାସ କରନ୍ତି, ମେସାୟ୍ୟାମାନେ ସେମାନଙ୍କ ପାଇଁ ଭଗବାନଙ୍କ ଅସଲ ସନ୍ତାନ ହିସାବରେ ପରିଣତ ହୁଅନ୍ତି । ଏହି ମହାମାନବମାନେ ଶେଷରେ ଭଗବାନ ରୂପେ ପୂଜା ପାଆନ୍ତି । ମହାବୀର ଜୈନ, ଗୌତମବୁଦ୍ଧ, ଯୀଶୁଖ୍ରୀଷ୍ଟ ଓ ପ୍ରୋଫେଟ୍ ମହମ୍ମଦ ଆଜି ସେଇଥିପାଇଁ ଏ ମଣିଷ ପାଖରେ ଭଗବାନ ନୁହଁନ୍ତି ତ' ଆଉ କ'ଣ ? ବିଶ୍ୱାସୀ ମଣିଷ ଭଗବାନଙ୍କ ଖୋଜିବାକୁ ଯାଇ ଏହି ମହାମାନବ ଓ ମେସିହାମାନଙ୍କୁ ହିଁ ଖୋଜିଥାଏ । ଭଗବାନଙ୍କୁ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଏଇ ଦେବପୁତ୍ରମାନଙ୍କୁ ଭଗବାନଙ୍କ ବଦଳରେ ପ୍ରାର୍ଥନା କରେ । ଏଇଥିପାଇଁ ସମ୍ଭବତଃ ଗୌତମବୁଦ୍ଧଙ୍କୁ ବୁଦ୍ଧାବତାର ଭାବେ ଆମ ସମସ୍ତେ ପରିକଳ୍ପନା କରିଛେ । ଯୀଶୁଖ୍ରୀଷ୍ଟଙ୍କ ପୂଜା ପ୍ରାର୍ଥନା କରିବା ପାଇଁ ଖ୍ରୀଷ୍ଟଧର୍ମାବଲମ୍ବୀମାନେ କେତେ କ'ଣ ତିଆରି କରିଛନ୍ତି । ମେସାୟ୍ୟାମାନଙ୍କୁ ଖୋଜିବାର ପ୍ରୟାସ ସରି ନାହିଁ କି ରାସ୍ତା ବନ୍ଦ ହୋଇଯାଇନାହିଁ । ସେହି ମେସାୟ୍ୟାମାନଙ୍କୁ ମୁଁ ଖୋଜିବାରେ ଲାଗିଚି ବର୍ଷ ବର୍ଷ ଧରି । ଏମାନଙ୍କ ଜୀବନଗାଥା ପଢ଼ିଛି ଓ ଅନୁପ୍ରାଣିତ ହୋଇଛି । ଏମାନଙ୍କ ଉପରେ ଯେଉଁ ଲେଖକମାନେ ଲେଖିଛନ୍ତି, ସେମାନଙ୍କର ମହତ ଉଦ୍ଦେଶ୍ୟ ମଧ୍ୟ ବୁଝିଛି । ମହାମାନବ ଓ ଧର୍ମାତ୍ମାମାନେ କୁଆଡେ ନିହାରିକା ଭଳି ଉଦ୍‌ଭାସିତ ହୁଅନ୍ତି ଓ ସବୁକିଛି ଅନ୍ଧାର ଭିତରେ କ୍ଷଣିକ ପାଇଁ ଆଲୋକିତ କରି ପୁଣି ମହାକାଶରେ ମିଳାଇ ଯାଆନ୍ତି । ବେଳେବେଳେ ଜୀବନଟାକୁ ଏଇଭଳି କାଟି ଦେବା ପାଇଁ ଆହ୍ୱାନ ଆସେ । ଚମତ୍କାର ଲାଗେ କଳ୍ପନା

ରାଜ୍ୟରେ ବିଚରଣ କରିବାକୁ । କିନ୍ତୁ ସତରେ କ'ଣ ମେସାୟ୍ୟାମାନେ ମଣିଷ ଦେହରେ ଉଭା ହୋଇଥାଆନ୍ତି ? ଏହିଭଳି ପ୍ରଶ୍ନ ମୁଁ ପଚାରୁଥିବା ବେଳେ ଜଣେ ବନ୍ଧୁ ପ୍ରସିଦ୍ଧ ପେରୁ ଦେଶରେ ଜନ୍ମିତ ଆମେରିକୀୟ ଲେଖକ ଓ ଦାର୍ଶନିକ କାର୍ଲୋସ୍ କାଷ୍ଟାନେଡ଼ାଙ୍କ ବହି ପଢ଼ିବାକୁ ପରାମର୍ଶ ଦେଇଥିଲେ । କାର୍ଲୋସ୍ କାଷ୍ଟାନେଡ଼ା ମେକ୍ସିକୋ ଦେଶର ୟାକ୍ସି ଇଣ୍ଡିଆନ୍‌ମାନଙ୍କ ଗହଣରେ ଅନେକ ବର୍ଷ କାଟିଥିଲେ । ତାଙ୍କର ଡନ୍ ଜୁଆନ୍ ବୋଲି ଜଣେ ୟାକ୍ସି ଇଣ୍ଡିଆନ୍ ମହାପୁରୁଷଙ୍କ ସହ ଦେଖାସାକ୍ଷାତ ହୋଇଥିଲା । ଆରମ୍ଭ ହୋଇଥିଲା ଏକ ଅସାଧାରଣ ଅନ୍ୱେଷଣ । ଜ୍ଞାନ ଓ ମହାଜ୍ଞାନ ପାଇଁ ନେବାକୁ ପଡିଥିଲା ଡ୍ରଗ୍‌ସ ଓ ମାଦକ ଦ୍ରବ୍ୟ ସବୁ । ବୌଦ୍ଧଧର୍ମର ଶ୍ରମଣଙ୍କ ଭଳି ସେ ଅନେକ କିଛି ଜ୍ଞାନ ଆହରଣ କରିଥିଲେ । ଭୌତିକ ପୃଥିବୀ ବାହାରେ ଅନ୍ୟ ଏକ ମେଟାଫିଜିକାଲ୍ ପୃଥିବୀ ଅଛି, ତାହା ଡନ୍ ଜୁଆନ୍‌ଙ୍କ ଜୀବନ ଦର୍ଶନ ଥିଲା ଓ ସେଠାକୁ ଯିବାକୁ ହେଲେ ଗୋଟାଏ ପ୍ରକାର ମାଦକ ଦ୍ରବ୍ୟ ସେବନ କରିବାକୁ ପଡୁଥିଲା । ଡନ୍ ଜୁଆନ୍ ଚାହିଁଲେ ନିଜକୁ ଅନ୍ତର୍ଦ୍ଧାନ କରି ଦେଉଥିଲେ । ଏହା କିନ୍ତୁ ମ୍ୟାଜିକ୍ ବା ତନ୍ତ୍ର ନଥିଲା ।

କାର୍ଲୋସ୍ କାଷ୍ଟାନେଡାଙ୍କ ଅନେକ ପାଠକ ଥିଲେ । ଲକ୍ଷ ଲକ୍ଷ ସଂଖ୍ୟାରେ ତାଙ୍କର ବହି ବିକ୍ରି ହୋଇଥିଲା ଓ ଅନେକଙ୍କୁ ମେସାୟ୍ୟାଙ୍କୁ ଖୋଜିବାକୁ ଅନୁପ୍ରାଣିତ କରିଥିଲା । ଆଲ୍‌ଡସ୍ ହକ୍‌ସଲୀ ମଧ୍ୟ କୁଆଡେ ମେସ୍କାଲିନ୍ ଭଳି ମାଦକ ଦ୍ରବ୍ୟ ସେବନ କରି ନିଜର ଜ୍ଞାନର 'ଗବାକ୍ଷ' ଉନ୍ମୋଚନ କରିଥିଲେ । କିନ୍ତୁ ମାଦକ ଦ୍ରବ୍ୟ ବିନା ହିଁ ଏହି ଜ୍ଞାନର 'ଗବାକ୍ଷ' ଅନୁସନ୍ଧାନରେ ମୁଁ ନିଜକୁ ନିମଗ୍ନ କରିଦେଇଛି । ଡନ୍ ଜୁଆନ୍ କହୁଥିଲେ, ସବୁ ପଥ ଏକାଭଳି । କାରଣ ଏହା ପଥିକକୁ ଲକ୍ଷ୍ୟସ୍ଥଳରେ ପହଞ୍ଚାଏ ନାହିଁ । କିନ୍ତୁ ପ୍ରତ୍ୟେକ ପଥିକର ଏକ ହୃଦୟ ଅଛି । ଏହାକୁ ହିଁ ଚିହ୍ନିବାକୁ ପଡ଼ିବ ଏବଂ ରାସ୍ତାର ଲକ୍ଷ୍ୟସ୍ଥଳ ପର୍ଯ୍ୟନ୍ତ ପଥିକ ହେବାକୁ ହେବ । ଏହିଭଳି ପଥିକ ହେଲେ ଜ୍ଞାନୋଦୟ ହେବ । କାର୍ଲୋସ୍ କାଷ୍ଟାନେଡାଙ୍କ ପୁସ୍ତକ ସବୁ ସହଜରେ ମିଳୁଥିଲା ଓ ଗୋଟାଏ ନିର୍ଦ୍ଦିଷ୍ଟ ବୟସରୁ ଯୁବକଯୁବତୀମାନେ ଡନ୍ ଜୁଆନ୍‌ଙ୍କ ମହତ୍ ବାଣୀକୁ ହିଁ ଅନୁସରଣ କରିଥିଲେ । ସବୁ ଯୁବକଯୁବତୀ କିନ୍ତୁ ମେସାୟ୍ୟାଙ୍କୁ ଅନୁସନ୍ଧାନରେ ଥିଲେ କି ନାହିଁ କହିହେବ ନାହିଁ ।

୧୯୭୭ରେ ଏଇ ସମୟରେ 'ଜୋନାଥନ୍ ଲିଭିଙ୍ଗଷ୍ଟୋନ୍ ସିଗଲ୍'ର ଲେଖକ ରିଚାର୍ଡ୍ ବାକ୍ ତାଙ୍କର ବିଶ୍ୱବ୍ୟାପୀ ପାଠକମାନଙ୍କୁ ଏକ ନୂତନ ପୁସ୍ତକ ଉପହାର ଦେଇଥିଲେ । ଏହି ବହିର ନାମ ହେଉଛି 'ଇଲ୍ୟୁଜନ୍' (Illusion :The Adventure of a Reluctant Messiah) । ଏ ବହିଟି ଜୋନାଥନ୍ ଲିଭିଙ୍ଗଷ୍ଟୋନ୍ ସିଗଲ୍ ବହି ଭଳି ମୋତେ ଖୁବ୍ ପ୍ରଭାବିତ କରିଥିଲା । ଛୋଟ ବହିଟିଏ । ଆରମ୍ଭ କରିଲେ ଏକାନିଃଶ୍ୱାସରେ ଶେଷ କରିହେବ । ପାଠକମାନଙ୍କୁ କିମିଆ କରିଦେବ ଏ ବହି । ରିଚାର୍ଡ୍ ବାକ୍ ଜଣେ ପାଇଲଟ୍ । ସେ ଡୋନାଲ୍‌ଡ ସିମୋଡ଼ା ବୋଲି ଆଉ ଜଣେ ପାଇଲଟ୍‌ଙ୍କୁ ଭେଟିଛନ୍ତି । ଛୋଟ ଉଡାଜାହାଜଟିରେ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଉଡିବା ଓ ସେ ଅଞ୍ଚଳ

ଆବିଷ୍କାର କରିବା ତାଙ୍କର ପେଶା । ରିଚାର୍ଡ଼ ବାକ୍ ଆବିଷ୍କାର କରିଛନ୍ତି ଯେ, ଡୋନାଲ୍ଡ଼ ଜଣେ ମେସାୟ୍ୟା- ଜଣେ ମହାପୁରୁଷ । ଡୋନାଲ୍ଡଙ୍କ ସବୁ ଦୁଃଖୀ ମଣିଷଙ୍କୁ ସାହାଯ୍ୟ କିରବା ଏକ କର୍ତ୍ତବ୍ୟବୋଧ । ସେ କହନ୍ତି ଯେ, ଏ ପୃଥିବୀରେ ମଣିଷର ମିଶନ୍ ଶେଷ ହୋଇଛି ବୋଲି ଜଣେ କେମିତି ଜାଣିବ ? ଜଣେ ଯଦି ବଞ୍ଚିଛି, ତେବେ ତାହାର ମିଶ୍ନ ସରି ନାହିଁ । ଅର୍ଥାତ୍ ଜଣେ ମିଶନ୍ ସରିଯାଇଛି ବୋଲି ଅନୁଭବ କଲେ ସେ ନିଜକୁ ନିଷ୍ଚିହ୍ନ କରିଦେବ । ରିଚାର୍ଡ଼ ଓ ଡୋନାଲ୍ଡ ଗୋଟାଏ ଫାର୍ମରୁ ଆଉ ଗୋଟିଏ ଫାର୍ମକୁ ଉଡିବୁଲନ୍ତି ଏବଂ ଆଖପାଖ ଲୋକଙ୍କଠାରୁ ତିନି ଡଲାର୍ ନେଇ ଆକାଶରେ ଗୋଟାଏ ଘେରା ବୁଲାଇ ଦିଅନ୍ତି । ମଣିଷମାନଙ୍କୁ ଉଡ଼ିବାର ଆନନ୍ଦ ଦିଅନ୍ତି । ଡୋନାଲ୍ଡ଼ ସିମୋଡ଼ା ଏକ ଦୁର୍ଘଟଣାରେ ଅଚାନକ ମୃତ୍ୟୁବରଣ କରିଛନ୍ତି । ମୃତ୍ୟୁ ପରେ ରିଚାର୍ଡ଼ ବାକ୍ 'ମେସାୟ୍ୟାଙ୍କ ହ୍ୟାଣ୍ଡବୁକ୍' ନାମରେ ବହିଟିଏ ପାଇଛନ୍ତି । ଏ ବହିଟିର ପ୍ରଥମ ପୃଷ୍ଠାରେ ଲେଖାଯାଇଛି ଯେ, ଏଥିରେ ଯାହାକିଛି ଉଲ୍ଲେଖ କରାଯାଇଛି, ତାହା ସମ୍ପୂର୍ଣ୍ଣ ଭୁଲ୍ ହୋଇପାରେ । କିନ୍ତୁ ସବୁ କଥା ଠିକ୍ ବି ହୋଇପାରେ । ବହିଟିରେ ପ୍ରତ୍ୟେକ ଜୀବନର ଘଟଣାବଳୀ ଅଙ୍କାଯାଇଛି, କାରଣ ପାଠକ ତାକୁ ନିଜେ ଆଙ୍କିଛି । ଯେଉଁସବୁ ଚିତ୍ର ଅଙ୍କାଯାଇଛି, ତାହାକୁ ନେଇ କ'ଣ କରାଯିବ, ତାହା କେବଳ ପାଠକ ଜାଣିଛି । ଏଇ ଅସାଧାରଣ ଚିନ୍ତନ ହିଁ ରିଚାର୍ଡ଼ ବାକ୍ଙ୍କ ସବୁ ବହିର ମୂଳତତ୍ତ୍ୱ ବୋଲି ସେ ନିଜେ ସ୍ୱୀକାର କରିଛନ୍ତି । ଡୋନାଲ୍ଡ଼ ସିମୋଡ଼ା ଜଣେ ସତ ଓ ବାସ୍ତବ ମହାପୁରୁଷ ଥିଲେ ବୋଲି ରିଚାର୍ଡ଼ ବାକ୍ ଦୃଢ଼ଭାବରେ କହିଛନ୍ତି ।

ମୁଁ କାହିଁକି କାର୍ଲୋସ୍ କାଷ୍ଟାନେଡାଙ୍କ ଡନ୍ ଜୁଆନ୍ ଏବଂ ରିଚାର୍ଡ ବାକ୍ଙ୍କ ଡୋନାଲ୍ଡ ସିମୋଡ଼ାଙ୍କ କଥା ବାରମ୍ବାର ମନେ ପକାଇବି ? ଜୀବନରେ ମିଛ ମାୟା ଓ ମୋହଗ୍ରସ୍ତ ଓ ମାନବିକତା ଅଛି । ସତ୍ୟ ବିରାଜମାନ କରୁଛି । ବାସ୍ତବବାଦର କଣିକା ମଧ୍ୟ ସବୁଆଡେ ରହିଛି । ଜୀବନରେ ଅମାଅନ୍ଧକାର ବ୍ୟାପିଛି । କିନ୍ତୁ ତାହାର ସ୍ତର ଅତିକ୍ରମ କିରଲେ ଯାଇ ଆଲୋକର ଅସଲ ଜ୍ୟୋତି ଦେଖିହେବ ଓ ଅନୁଭବ କରିହେବ । ଆମ ସମସ୍ତଙ୍କୁ ଉପରକୁ ଉଠିବାକୁ ପଡିବ । ଏହାଛଡ଼ା ଅନ୍ୟକିଛି ବିକଳ୍ପ ନାହିଁ । ଏଇଥିପାଇଁ ମାୟାର ଜଟିଳ ବିନ୍ୟାସକୁ ବୁଝିବାକୁ ହେବ । ବାସ୍ତବତା ବି ବେଳେବେଳେ ମାୟା ଜଣାପଡେ । ତାହାକୁ ବି ହୃଦୟଙ୍ଗମ କିରବାକୁ ହେବ । ମାୟା ଓ ବାସ୍ତବତା ଭିତରେ ହିଁ ଆମକୁ ବଞ୍ଚିବାକୁ ପଡିବ ।

ମଣିଷ ଏଥିପାଇଁ ଲୋଡିଛି ସ୍ୱଷ୍ଟତା ଓ ଖୋଜିଛି ମେସାୟ୍ୟାମାନଙ୍କୁ । ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ସମ୍ଭବତଃ ଜଣେ ମେସାୟ୍ୟାର ଭୂମିକା ଗ୍ରହଣ କରି ଅର୍ଜୁନଙ୍କୁ ଦେଇଛନ୍ତି ଏକ ଅଦ୍ୱିତୀୟ ସ୍ୱଷ୍ଟତା । ଏହାସବୁ ଯେଉଁ ଢ଼ଙ୍ଗରେ ଓ ତର୍କ ସମାହିତ ବାକ୍ୟରେ ଉପସ୍ଥାପନାରେ ପ୍ରକାଶ କରାଯାଇଛି, ତାହାକୁ ଯେକୌଣସି ମଣିଷ ଅସ୍ୱୀକାର କରିପାରିବ

ନାହିଁ । ଶ୍ରୀମଦ୍ ଭଗବତ୍ ଗୀତା ମାୟାକୁ ବୁଝିବା ଓ ବଞ୍ଚିବାର ନିର୍ଯ୍ୟାସ ପାଇବାର ପଥ ଉନ୍ମୋଚିତ କରିଛି ସତ, ମୁଁ କିନ୍ତୁ ଏପର୍ଯ୍ୟନ୍ତ ସବୁକଥା ଅନ୍ତଃସ୍ଥ କରିପାରିନାହିଁ ।

ଏଥିପାଇଁ ଘଞ୍ଚ ଅରଣ୍ୟର ନିର୍ଜନତା ହେଉ ବା ମରୁଭୂମିର ବିସ୍ତୃତ ବାଲୁକାରାଶି ହେଉ, ମୁଁ ଘୂରି ବୁଲିଛି ମେସାୟ୍ୟମାନଙ୍କୁ ଠାବ କରିବା ପାଇଁ । ଏକଥା ସତ ଯେ, ମନ୍ଦିର ଓ ମଠମାନଙ୍କରେ ମେସାୟ୍ୟାମାନେ ଥାଇପାରନ୍ତି । ହିମାଳୟର ବରଫାବୃତ ଗୁମ୍ଫା ଭିତରେ ତପସ୍ୟାରତ ଅନେକ ମେସାୟ୍ୟା ନିଜକୁ ଲୁଚାଇ ରଖିଛନ୍ତି ବୋଲି ଶୁଣିବାକୁ ମିଳେ । ଜଣେ ବନ୍ଧୁ କହୁଥିଲେ ଯେ, ଆଲ୍‌ପସ୍ ପାର୍ବତ୍ୟମାଳାରେ ଅନେକ ମୋନାଷ୍ଟେରି ବା ଆରାଧନାସ୍ଥଳ ରହିଛି ଏବଂ ସେଠାରେ କୁଆଡେ ବେଳେବେଳେ ମେସାୟ୍ୟାମାନେ ଆବିର୍ଭାବ ହୁଅନ୍ତି । ସବୁ ଦେଶରେ ଓ ସବୁଧର୍ମରେ ଏଇ ମହାପୁରୁଷମାନଙ୍କର ଏକ ତାଲିକା କରିପାରିଲେ ଓ ସେମାନଙ୍କର ଜୀବନଗାଥା ଲିପିବଦ୍ଧ କରିଲେ, ମୋ ଭଳି ମଣିଷମାନେ ସେମାନଙ୍କୁ ସହଜରେ ଠାବ କରିପାରିବେ । କିନ୍ତୁ ସେମାନେ ଯଦି ଅସଲରେ ଅଛନ୍ତି, ଆମ ଭିତରେ ହିଁ ଅଛନ୍ତି । କିଏ ଡନ୍ ଜୁଆନ୍‌ଙ୍କ ଭଳି ଆଦିବାସୀ ତ' ଆଉ କିଏ ଡଗ୍‌ଲାସ ସିମୋଡାଙ୍କ ଭଳି ପାଇଲଟ୍ । ସେମାନେ ମରିଯାଇନାହାନ୍ତି ବା ଅତୀତ ହୋଇନାହାନ୍ତି । ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ମେସାୟ୍ୟାମାନେ ଆମ ଭିତରେ ନିଶ୍ଚିତ ଅଛନ୍ତି ।

□ □ □

୨୫

# ବିଜ୍ଞାନ ଓ ଆଧ୍ୟାତ୍ମିକତା : ଅନେକ ପ୍ରଶ୍ନ ଓ ଗୋଟିଏ ଉତ୍ତର

ମୁଁ ଦୃଢ଼ଭାବରେ ସ୍ୱୀକାର କରିବି ଯେ ପଦାର୍ଥ ବିଜ୍ଞାନ ଓ ଗଣିତର ଛାତ୍ର ହୋଇ ମଧ୍ୟ ମୁଁ ଜଣେ ଉତ୍ସର୍ଗୀକୃତ ବିଜ୍ଞାନୀ ହେବାର ଧୃଷ୍ଟତା କରିନାହିଁ । ଅନ୍ୟପକ୍ଷରେ ଦର୍ଶନ ଓ ଆଧ୍ୟାତ୍ମିକତାକୁ ଆପ୍ରାଣ ଭଲ ପାଇଲେ ମଧ୍ୟ ମୁଁ ଦାର୍ଶନିକ ବା ଆଧ୍ୟାତ୍ମିକବାଦୀ ହେବାର ଛଳନା ମଧ୍ୟ କରିନାହିଁ । ପଦାର୍ଥ ବିଜ୍ଞାନ ଓ ତତ୍ତ୍ୱ ମୀମାଂସା ଅର୍ଥାତ୍ ଫିଜିକ୍‌ସ ଓ ମେଟା ଫିଜିକ୍‌ସ ଭିତରେ ସୂକ୍ଷ୍ମ ସମ୍ପର୍କ ମୋତେ ଅଭିଭୂତ କରିଛି ସବୁବେଳେ । ଅନ୍ୟପକ୍ଷରେ ବିଜ୍ଞାନର ପ୍ରହେଳିକା ଓ ରହସ୍ୟବାଦ ଅର୍ଥାତ୍ ପାରାଡକ୍‌ସ ଓ ମିଷ୍ଟିସିଜିମ୍ ମୋତେ ସବୁବେଳେ ମଧ୍ୟ ଆକର୍ଷଣ କରିଛି । ମୁଁ ଭାବୁଛି ଯେ ମୋର ବ୍ୟକ୍ତିତ୍ୱ ଓ ଦ୍ୱୈତବାଦୀ ମାନସିକତାର ଅସଲ କାରଣ ହେଉଛି ଯେ ମୁଁ ଦୁଇ ନାଆରେ ଗୋଡ ଥାପିଛି । ମୁଁ କେଉଁ କୂଳର ହୋଇ ନାହିଁ ଅଥଚ ମୁଁ ନଦୀ ଗର୍ଭରେ ଲୀନ ହୋଇଯାଇ ନାହିଁ । ରେଭେନ୍‌ସା କଲେଜରେ ପାଦ ଦେଉ ଦେଉ ମୁଁ ଦେଖିଲି ଯେ ମୋର ଅନେକ ସହଧ୍ୟାୟୀ ବନ୍ଧୁ ବିଜ୍ଞାନ ଓ ଗଣିତ ସବୁ ଆପଣାର ଉଦ୍ୟମରେ ଅଧ୍ୟୟନ କରି ମୋଠାରୁ ଆଗରେ ଅଛନ୍ତି । ରାୟଚୌଧୁରୀ ଓ ସିହ୍ନାଙ୍କ ଲିଖିତ ପଦାର୍ଥ ବିଜ୍ଞାନର ବହି ଓ ଟୁଲିଙ୍କ ଲିଖିତ ରସାୟନ ବିଜ୍ଞାନ ବହି ଏବଂ ଲାଙ୍ଗୁଏଜ୍ ଅଫ କେମିଷ୍ଟ୍ରୀ ଆଦି ଚଟି ବହିର କେତେକ ଅଧ୍ୟାୟ ସେମାନେ ଚର୍ବିତ ଚର୍ବଣ କରିସାରିଛନ୍ତି । ବିଶେଷ କରି କଟକ ସହରର ବିଭିନ୍ନ ସ୍କୁଲରୁ ଆସିଥିବା ମେଧାବୀ ଛାତ୍ରମାନେ ସ୍ଥାନୀୟ କଲେଜମାନଙ୍କର ଅଧ୍ୟାପନାରତ ପ୍ରଫେସରମାନଙ୍କର ସାହାଯ୍ୟ ନେଇ ଉଚ୍ଚତର ବିଜ୍ଞାନ ଓ ଗଣିତକୁ ପ୍ରବେଶ କରିଛନ୍ତି । ଆଉ କେତେଜଣ ଛାତ୍ର ବନ୍ଧୁ ସାଧାରଣଜ୍ଞାନ ଏବଂ ସିଭିଲ୍ ସର୍ଭିସ୍ ଗାଇଡ୍ ବୁକ୍‌ରେ ମଧ୍ୟ ମନୋନିବେଶ କରିଥାଆନ୍ତି । ଆମେ ଯେଉଁମାନେ ଗଡଜାତ ସ୍କୁଲରୁ ଆସିଥାଉ, ସବୁବେଳେ ପଛରେ ପଡିଥାଉ । ଜଣେ ବିଜ୍ଞାନର ଅଧ୍ୟାପକ ହେବ ବା ଉଚ୍ଚପଦସ୍ଥ ଅଫିସର ହେବ ଏସବୁ ଭାବିବାକୁ ଆମକୁ ସୁଯୋଗ ମିଳି ନଥିଲା । ମ୍ୟାଟ୍ରିକ୍ ପରୀକ୍ଷା ପରେ ଯେଉଁ ଦୀର୍ଘ ଛୁଟି ହୋଇଥିଲା ମୁଁ ବ୍ରାହ୍ମଣୀ ନଦୀ କୂଳରେ ବା ମୋ ଭଉଣୀର ଆମ୍ବ ତୋଟା ତଳେ ସମୟ କାଟିଥିଲି ଅଥବା ବିଶିଷ୍ଟ ଔପନ୍ୟାସିକ ଗୋପୀ ମହାନ୍ତି, କାହ୍ନୁ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ ଆଚାର୍ଯ୍ୟ,

ବିଭୂତି ପଟ୍ଟନାୟକଙ୍କ ଓ ଅନ୍ୟ କେତେକଙ୍କ ମୋଟା ମୋଟା ଉପନ୍ୟାସ ଗ୍ରୀଷ୍ମ ଋତୁରେ ଅସହ୍ୟ ଉତ୍ତାପ ଭିତରେ ପଢ଼ି ଦେଇଥିଲି । ତାରୁଣ୍ୟର ଉଦ୍ଦାମତା ଭିତରେ ମୁଁ ନିଜକୁ ଆବିଷ୍କାର କରିବାକୁ ଋହିଁଥିଲି । ନିଜ ସହ ମୁଁ ପ୍ରେମରେ ପଡି ଯାଇଥିଲି ଗୋଟାପଣେ ।

କିନ୍ତୁ ବିଜ୍ଞାନ ପଢ଼ିବାରେ ଗୋଟାଏ ବୌଦ୍ଧିକ ଆହ୍ୱାନ ଅଛି । ଗଣିତର ଜଟିଳ ପ୍ରଶ୍ନମାନଙ୍କୁ ସମାଧାନ କରିବା ଠିକ୍ ଉଚ୍ଚତର ପାହାଡ ଚଢ଼ିବା ଭଳି । ତର୍କ ଏବଂ ବିଜ୍ଞାନ ସମ୍ମତ ବିଶ୍ଳେଷଣ ହିଁ ଜୀବନରେ ସ୍ୱଷ୍ଟତା ଆଣି ଦିଏ ବୋଲି ମୁଁ ନିଜେ ଅନୁଭବ କରିଥିଲି । ସ୍କୁଲରେ ଆମର ଯେଉଁ ପ୍ରତିଭାବାନ ଶିକ୍ଷକମାନେ ଥିଲେ ଓ ଆମକୁ ବହିର ଜଗତକୁ ଟାଣି ନେଇ ପ୍ରେରଣା ଯୋଗାଉଥିଲେ, ସେମାନେ ବେଳେବେଳେ ମାନବ ଓ ମହାମାନବ, ବିଜ୍ଞାନ ଓ ଦର୍ଶନ, ଧର୍ମ ଓ ଆଧାତ୍ମିକତା ବିଷୟରେ ଆମକୁ ସୂଚନା ଦେଇଥାଆନ୍ତି । ଆମର ସାହିତ୍ୟ ଓ ଇଂରାଜୀ ବହିରେ ଏପରି ସବୁ ଲେଖା ସ୍ଥାନ ପାଇଥିଲା ଯାହା ଏଇସବୁ ବୌଦ୍ଧିକ କୌତୁହଳ ସବୁ ସୃଷ୍ଟିକରିଥିଲା । ମନବୋଧ ଚଉତିଶା ହେଉ ବା ଟଲଷ୍ଟୟଙ୍କ କାହାଣୀ ହେଉ, ସବୁ କିଛି ଉନ୍ମୋଚିତ କରୁଥିଲା ଜୀବନ ଦର୍ଶନର ଅସଂଖ୍ୟ ମାର୍ଗ । ଜୀବନଟା ପ୍ରହେଳିକାମୟ ନୁହେଁ ତ ଆଉ କ'ଣ ? ବିଜ୍ଞାନ ଏ ସବୁର ଉତ୍ତର ସମ୍ଭବତଃ ଦେଇ ପାରୁନଥିଲା । କୋଟି ବ୍ରହ୍ମାଣ୍ଡ ସେପାଖେ କ'ଣ ଅଛି, ଏ ମଣିଷ କେବେ ବି କଳ୍ପନା କରିପାରୁନଥିଲା । କିନ୍ତୁ ବ୍ରହ୍ମାଣ୍ଡ ଯେ ବୈଜ୍ଞାନିକ ସମ୍ମତ ନିୟମରେ ଚଳପ୍ରଚଳ ହେଉଛି ତାହା ଆକର୍ଷଣ ଓ ବିକର୍ଷଣ ସୂତ୍ର ଦ୍ୱାରା ବୁଝି ହେଉଥିଲା । କଲେଜରେ କିଛି ଦିନ ମଧ୍ୟରେ ଯେଉଁମାନେ ବୈଜ୍ଞାନିକ ହେବାକୁ ସଂକଳ୍ପବଦ୍ଧ ହୋଇଥିଲେ, ସେମାନଙ୍କ ସହ ପରିଚିତ ହୋଇଥିଲା ବିଭିନ୍ନ ଅବସରରେ ବା ବିଜ୍ଞାନଗାରରେ । ସେମାନେ ସବୁ 'ସାଇନ୍‌ସ ଟାଲେଣ୍ଟ ସର୍ଚ୍ଚ ଟେଷ୍ଟ' ପାଇଁ ପ୍ରସ୍ତୁତ ହେବାକୁ କହୁଥିଲେ । ଏଥିପାଇଁ ଟେକ୍ସଟ ବୁକ୍ ବାହାରେ କିଛି ବହି ପଢିବାକୁ ପରାମର୍ଶ ଦେଇଥିଲେ । ପ୍ରଥମଥର ପାଇଁ ବିଜ୍ଞାନ ଜଗତର ବିସ୍ତୃତ ଆକାର ପ୍ରକାରର ଏକ ଚିତ୍ର ଆଙ୍କିବା ପାଇଁ ମୋର ଅନୁସନ୍ଧିତ୍ସୁ ମନ ଖୁବ୍ ସକ୍ରିୟ ହୋଇଉଠିଥିଲା । କେହି କେହି ସିନିୟର କହିଲେ ଜର୍ଜ ଗ୍ୟାମୋ, ଆଇଜାକ୍ ଆସିମୋଭ୍, ରିଡ୍‌ନିକ୍, ପଲିଙ୍ଗ ଆଦିଙ୍କ ଲୋକପ୍ରିୟ ବିଜ୍ଞାନ ବହି ସବୁ ପଢ଼ିବାକୁ । ଫିଜିକ୍‌ସ ଫର୍ ଫନ୍ ଏବଂ ମ୍ୟାଥେମ୍ୟାଟିକ୍‌ସ ଫର୍ ଫନ୍ ଆଦି ଋଷିଆନ୍ ବହି ଗୁଡିକ ଆଧୁନିକ ବିଜ୍ଞାନକୁ ହୃଦୟଙ୍ଗମ କରିବାକୁ ସାହାଯ୍ୟ କରି ପାରିବ ବୋଲି କେତେଜଣ ପରାମର୍ଶ ଦେଇଥିଲେ । ଆମର ସ୍କୁଲ ଜୀବନରେ ଲୋକପ୍ରିୟ ବିଜ୍ଞାନ ବହି କ୍ୱଚିତ୍ ମିଳୁଥିଲା ପଢ଼ିବାକୁ । ପ୍ରଫେସର୍ ଗୋକୁଳାନନ୍ଦ ମହାପାତ୍ର ଏବଂ 'ପୃଥିବୀ ବାହାରେ ମଣିଷ' ଆମର ଚିନ୍ତାକଳ୍ପକୁ ହିଁ ସମୃଦ୍ଧ କରିଥିଲା । ଅବଶ୍ୟ ବୈଜ୍ଞାନିକମାନଙ୍କର ଜୀବନ କାହାଣୀ ଓ ଏନ୍‌ସାଇକ୍ଲୋପେଡିଆ ଅଫ ସାଇନ୍‌ସେସ୍ ବହି ସହିତ ଆମର ଶିକ୍ଷକମାନେ ପରିଚିତ କରାଇ ଦେଇଥିଲେ । ବିଜ୍ଞାନ କହିଲେ ଯେ କେବଳ ପଦାର୍ଥ ବା ରସାୟନ ବିଜ୍ଞାନ ନୁହେଁ । ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ, ଅନ୍ତରୀକ୍ଷ ବିଜ୍ଞାନ,

ଭେଷଜ ବିଜ୍ଞାନ ଓ ଅନେକ କିଛି ବିଷୟରେ ଜାଣିବାକୁ ଜ୍ଞାନ ପିପାସା ବଢ଼ିଥିଲା । ସବୁ ବିଜ୍ଞାନ ଭିତରେ ସମ୍ବନ୍ଧ ଅଛି ତାହା ବେଶ୍ ଜାଣି ହେଉଥିଲା । ଆଜି ମୋର ମନେ ଅଛି ଜର୍ଜ ଗ୍ୟାମୋଙ୍କ 'ୱାନ୍, ଟୁ, ଥ୍ରୀ....ଇନିଫିନିଟି', ଆସିମୋଭ୍‌ଙ୍କ 'ଗାଇଡ୍ ଟୁ ସାଇନ୍‌ସ' ଏବଂ ଗିଡ୍ ନିକ୍‌ଙ୍କ 'ଏବିସି ଅଫ କ୍ୱାଣ୍ଟମ୍ ମେକାନିକ୍‌ସ' ମୋର ବିଜ୍ଞାନ ପ୍ରତି ଆଗ୍ରହ ବଢ଼ାଇ ଦେଇଥିଲା । ମୁଁ ଅବଶେଷରେ 'ସାଇନ୍‌ସ ଟାଲେଣ୍ଟ ସର୍ଚ୍ଚ ଟେଷ୍ଟ' ଲିଖିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାକ୍ଷାତାକାର ପାଇଁ କଲିକତା ଯିବାକୁ ପତ୍ର ପାଇଥିଲି । କିନ୍ତୁ କେଜାଣି କାହିଁକି ବିଜ୍ଞାନ ଦ୍ୱାରା ବାନ୍ଧି ହୋଇ ଯିବାର ଏକ ଅଜଣା ଭୟ ମୋତେ ଗ୍ରାସ କରିଥିଲା । ମୋର ଆତ୍ମୀୟମାନଙ୍କ ସମସ୍ତ ଚେଷ୍ଟା ଓ ପ୍ରେରଣା ସତ୍ତ୍ୱେ ମୁଁ ସାକ୍ଷାତାକାର ପରୀକ୍ଷା ନ ଦେବାକୁ ସ୍ଥିର କରିଥିଲି । ସଂଦିଗ୍ଧତା ସମ୍ଭବତଃ ଏଥି ପାଇଁ ଦାୟୀ । ଏକ ଦ୍ୱୈତବାଦୀ ମାନସିକତା ମୋତେ ସବୁବେଳେ ବିପରୀତ ଦିଗକୁ ଟାଣିଥାଏ ଜାଣଅଜାଣତରେ । ମୁଁ ଅନୁଶୋଚନା କରିନାହିଁ ଏଥିପାଇଁ ।

କିନ୍ତୁ ଆଧ୍ୟାତ୍ମିକବାଦର ଏକ ଚମତ୍କାର ଆକର୍ଷଣରେ ମୁଁ ଯେମିତି ମୋହିତ ହୋଇଯାଇଥିଲି । ସବୁକିଛି ଘଟଣା ପଛରେ ବିଜ୍ଞାନ ବ୍ୟତିରକେ ତତ୍ତ୍ୱମୀମାଂସା ରହିଛି ତାହା ମୁଁ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ମନଲୋଭା ଦୃଶ୍ୟରେ ଅଭିଭୂତ ହୋଇଯାଇ ଅନୁଭବ କରୁଥିଲି । ଜ୍ୟୋସ୍ନାବିଧୌତ ରାତ୍ରି ହେଉ ବା ସୂର୍ଯ୍ୟାଲୋକରେ ପ୍ଲାବିତ ଅଳସ ଅପରାହ୍ନ ହେଉ, ସବୁ କାହିଁକି କାବ୍ୟିକ ହେବ ଓ ଏକ ଅଜଣା ପୁଲକରେ ମୋତେ ପୁଲକିତ କରିବ ତାହାର କାରଣ ମୁଁ ବିଜ୍ଞାନକୁ ବ୍ୟବହାର କରି ଜାଣିପାରେ ନାହିଁ । ମୁଁ ଦେଖିଛି ବନ୍ୟାର କରାଳ ରୂପକୁ ଓ ଶଙ୍କିତ ହୋଇଛି । ଶୁଣିଛି ଝଡର ଝଙ୍କାର ଓ ଆନ୍ଦୋଳିତ ହୋଇଛି । ଜନ୍ମ ଓ ମୃତ୍ୟୁ, ସୃଷ୍ଟି ଓ ବିଲୟ, ଉତ୍‌ଥାନ ଓ ପତନ । ସବୁକିଛି ଏକ ମହାଜାଗତିକ ଲୀଳାର ପରିଭାଷା ନୁହେଁ ତ ଆଉ କ'ଣ ? ସତ୍ୟ, ଶିବ ଓ ସୁନ୍ଦର ସବୁ ଐଶ୍ୱରିକ ଶକ୍ତିର ପରିପ୍ରକାଶ ନୁହେଁ ତ ଆଉ କ'ଣ ? ମୁଁ ପ୍ରଶ୍ନବାଚୀରେ ନିଜକୁ ହିଁ ଜର୍ଜରିତ କରିଥାଏ ସବୁବେଳେ । ସ୍ୱାମୀ ବିବେକାନନ୍ଦଙ୍କୁ ପଢ଼ି ମୁଁ ଉଦ୍‌ବୁଦ୍ଧ ହୋଇଛି କି ନାହିଁ ମୁଁ ବେଳେବେଳେ ଜାଣିପାରେ ନାହିଁ । ମହାତ୍ମାଗାନ୍ଧୀଙ୍କୁ ପଢ଼ି ସତ୍ୟାଗ୍ରହ ଓ ଅହିଂସା ପ୍ରତି ଅଙ୍ଗୀକାରବଦ୍ଧ ହୋଇଛି କି ନାହିଁ ମୁଁ ସମୀକ୍ଷା କରିନାହିଁ । ମନ୍ଦିର ଓ ଦେବସ୍ଥାନମାନଙ୍କୁ ଦର୍ଶନ କରି ଭଗବତ ବିଶ୍ୱାସ ବଢ଼ାଇଛି କି ନାହିଁ ତାହା ମୁଁ କହିପାରିବି ନାହିଁ । ବିଜ୍ଞାନ ଓ ଭଗବତ ବିଶ୍ୱାସ ଭିତରେ ସମ୍ପର୍କର ଗଭୀରତା କେତେ ଅଛି ମୁଁ ସେମିତି ବାଗ୍ମୀ ମନୀଷୀମାନଙ୍କର ପ୍ରବଚନ ଶୁଣି ନାହିଁ ।

ବିଜ୍ଞାନର ଅନେକ ତତ୍ତ୍ୱ ଭିତରେ ଅନେକ ଫାଙ୍କ । ନିୟୁଟନ ଯାହା ପ୍ରମାଣ କରିଲେ ତାହା ବିଖ୍ୟାତ ବୈଜ୍ଞାନିକ ମାର୍କସ୍ ପ୍ଲାଙ୍କ୍ ଓ ଆଇନ୍‌ଷ୍ଟାଇନ୍ ଗ୍ରହଣ ନକରି ନୂତନ ତତ୍ତ୍ୱ ଉପସ୍ଥାପନା କରିଲେ । ଆଇନ୍‌ଷ୍ଟାଇନ୍ ଯାହା କହିଛନ୍ତି ତାହା ମଧ୍ୟ କେବେ ବି ଗ୍ରହଣ ଯୋଗ୍ୟ ହେବ ନାହିଁ । ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ପରେ ହେଇଜେନ୍‌ବର୍ଗଙ୍କ

ଅନସର୍ଟେଣ୍ଟି ପ୍ରିନ୍‌ସିପ୍‌ଲ, ଭୋର୍‌ଙ୍କ ପରମାଣୁ, ସ୍ରୋଡିଞ୍ଜରଙ୍କ କ୍ୱାଣ୍ଟମ୍ ମେକାନିକ୍‌ସ ସବୁ ବିଜ୍ଞାନର ନୂତନ ନୂତନ ଆଭିମୁଖ୍ୟ । କ୍ୱାଣ୍ଟମ୍ ଥିଓରି ମଣିଷର ପାରମ୍ପରିକ ଚିନ୍ତାଧାରା ସବୁ ବଦଳାଇ ଦେଇଛି । ବିଜ୍ଞାନ ମଣିଷକୁ ଗୋଟାପଣେ ବଦଳାଇବାର ଅଭିଯାନ ଜାରି ରଖିଛି । ସବୁକିଛି ମହାଜାଗତିକ ନୃତ୍ୟ ବୋଲି ଦାର୍ଶନିକ ଓ ଆଧାତ୍ମିକବାଦୀ ବାରମ୍ବାର ଉଲ୍ଲେଖ କରିଛନ୍ତି । ଶିବ ନଟରାଜଙ୍କ ନୃତ୍ୟରତ ମୂର୍ତ୍ତି ଦେଖିଲେ ଜଣେ କ'ଣ ଅନୁଭବ କରିବ ? ଅଣୁପରମାଣୁ ଠାରୁ ଆରମ୍ଭ କରି ବିଶ୍ୱ ବ୍ରହ୍ମାଣ୍ଡରେ ଏଇଭଳି ଏକ ମହାଜାଗତିକ ନୃତ୍ୟ ବା କସ୍‌ମିକ୍ ଡାନ୍‌ସ ଲାଗି ରହିଛି । ଭାରତୀୟ ଦାର୍ଶନିକମାନେ ତାଣ୍ଡବ ନୃତ୍ୟର ବ୍ୟାଖ୍ୟାନ କରିଛନ୍ତି ଚମତ୍କାର ଭାବେ । ନଟରାଜଙ୍କ ବାମହସ୍ତରେ ଅଛି ଡମ୍ବରୁ ଯାହା ସୃଷ୍ଟିର ପରିପ୍ରକାଶ । ନଟରାଜଙ୍କ ଡାହାଣ ହାତରେ ଅଛି ଅଗ୍ନିବାଣ ଯାହା ଧ୍ୱଂସର ସଙ୍କେତ । ତେଣୁ ସୃଷ୍ଟି ଓ ପ୍ରଳୟ ଭିତରେ ବିଜ୍ଞାନ ଓ ଆଧାତ୍ମିକବାଦ ରହିଛି ବୋଲି ଆମର ମୁନିଋଷିମାନେ ଆମ ପାଇଁ ସବୁ ବେଦ ଉପନିଷଦ ରଚନା କରିଯାଇଛନ୍ତି ।

ମୁଁ ଜାଣେ ମୁଁ ବିଜ୍ଞାନର ଜ୍ଞାନ ଭଣ୍ଡାରରୁ କଣିକାଟିଏ ବି ସଂଗ୍ରହ କରିପାରି ନାହିଁ । ମୁଁ ଅବଶ୍ୟ କହିବି ଯେ ଆଧାତ୍ମିକବାଦର ଅନନ୍ତ ପରିପ୍ରକାଶର ଗୋଟିଏ ହେଲେ ଦିଗ ମୁଁ ଆବିଷ୍କାର କରିନାହିଁ । କିନ୍ତୁ ମୁଁ ଚେଷ୍ଟା କରିଛି ଓ କରୁଥିବି ବୌଦ୍ଧିକ ସ୍ୱଚ୍ଛତା ପାଇଁ । ଏଥିରେ ତିନୋଟି ବହି ମୋତେ ସାହାଯ୍ୟ କରି ଆସୁଛନ୍ତି । ପ୍ରଥମଟି ହେଲା 'ଦି ଡାନସିଂ ଉ ଲି ମାଷ୍ଟର୍‌ସ' (The Dancing Wu Li Masters), ଦ୍ୱିତୀୟଟି ହେଲା 'ଦି ଟାଓ ଅଫ ଫିଜିକ୍‌ସ' (The Tao of Physics ) ଓ ତୃତୀୟଟି ହେଲା 'ଜେନ୍ ଆଣ୍ଡ ଦି ଆର୍ଟ ଅଫ ମଟରସାଇକେଲ ମେଣ୍ଟେନାନ୍‌ସ' (Zen and the Art of Motorcycle Maintenance) । ଏହି ତିନୋଟି ବହି ବିଷୟରେ ଏ ସ୍ତମ୍ଭରେ ମୁଁ ସବିଶେଷ ଲେଖିବି ବୋଲି ମନସ୍ଥ କରିଛି ।

□ □ □

## ୨୬

# ବିଜ୍ଞାନ ଓ ଆଧ୍ୟାତ୍ମିକତା : ଡାନ୍‌ସିଂ ଉ ଲି ମାଷ୍ଟରସ୍

ଗ୍ୟାରୀ ଜୁକାଭ୍‌ଙ୍କ ଲିଖିତ "ଡାନ୍‌ସିଂ ଉ ଲି ମାଷ୍ଟରସ୍" ବହିଟି ପ୍ରକାଶିତ ହେଲା ୧୯୭୯ ମସିହାରେ । ସେତେବେଳେକୁ ମୁଁ ନିଜକୁ ଗଣିତ ଓ ପଦାର୍ଥ ବିଜ୍ଞାନ ଠାରୁ ଆପଣାକୁ ଦୂରେଇ ନେଇଥିଲି ଅନେକାଂଶରେ । ଅବଶ୍ୟ ବହିଟି ପଢ଼ିବାକୁ ଖୁବ୍ ଆଗ୍ରହ ଜନ୍ମିଥିଲା ଓ ଦିଲ୍ଲୀର ବିଖ୍ୟାତ ପୁସ୍ତକଦୋକାନ "ବୁକ୍‌ୱାର୍ମ"ରେ ବହିଟିକୁ ଦେଖିଲା ମାତ୍ରକେ କିଣିଥିଲି । ମନରେ ଅନେକ ଅବଶୋଷ ଆସିଥିଲା ଯେ ମୁଁ କାହିଁକି ପଦାର୍ଥ ବିଜ୍ଞାନ ପ୍ରତି ଏତେ ମାତ୍ରାରେ ବୈରାଗ୍ୟ ଓ ବିତୃଷ୍ଣା-ପ୍ରଦର୍ଶନ କରିଥିଲି । ଏକଦା ପଦାର୍ଥ ବିଜ୍ଞାନର ଛାତ୍ର ବୋଲି ଗୋଟାଏ ଆତ୍ମବଡିମା ମୋ ଭିତରେ ନିଶ୍ଚିତ ଥିଲା । ପଦାର୍ଥ ବିଜ୍ଞାନୀମାନେ ବିଜ୍ଞାନ ଜଗତକୁ ଯେମିତି ନିୟନ୍ତ୍ରିତ କରିଥିଲେ । ନିଉଟନ ହୁଅନ୍ତୁ ବା ଆଇନ୍‌ଷ୍ଟାଇନ୍ ହୁଅନ୍ତୁ, ମାକ୍‌ସ ପ୍ଲାଙ୍କ ହୁଅନ୍ତୁ ବା ନିଏଲ୍‌ସ ଭୋର୍ ହୁଅନ୍ତୁ, ଫର୍ମି ହୁଅନ୍ତୁ ବା ଫିନ୍‌ମ୍ୟାନ ହୁଅନ୍ତୁ ସବୁ ଯେମିତି ବିଜ୍ଞାନାକାଶରେ 'ଉଜ୍ଜ୍ୱଳତମ' ନକ୍ଷତ୍ର ଭାବେ ପରିଗଣିତ ହୋଇ ଆସିଛନ୍ତି । ଏମାନଙ୍କର ଜୀବନୀ ମୋତେ ଆକର୍ଷିତ ନିଶ୍ଚୟ କରିଥିଲା । ଛାତ୍ର ଜୀବନରେ ମୁଁ ଯେମିତି ସ୍ୱପ୍ନ ଦେଖିଥିଲି ରେଭେନ୍‌ସା କଲେଜରୁ ଅନର୍ସ ପରେ କାନପୁରସ୍ଥିତ ଆଇ.ଆଇ.ଟି. ତା'ପରେ କାଲିଫର୍ଣ୍ଣିଆ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଟେକ୍‌ନୋଲୋଜି ବା ମ୍ୟାସାଚୁସେଟ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜିରେ ଅଧ୍ୟୟନ କରିବାକୁ । ନୋବେଲ୍ ପୁରସ୍କାର ବିଜେତାମାନଙ୍କ ସହ ଗବେଷଣା କରିବାର ଏକ ପରିକଳ୍ପନା ନିଶ୍ଚିତ ଥିଲା । କିନ୍ତୁ ସବୁ ଯେମିତି ଗୋଳମାଳ ହୋଇଗଲା ଓ ଏକ କକ୍ଷଚ୍ୟୁତ ଗ୍ରହ ଭଳି ମୁଁ କେଉଁଠି ଲୁପ୍ତ ହେବାକୁ ରହିଁଥିଲି । ସେ ସବୁକଥା ଆଜି ମନେ ପକାଇଲେ ଏକ ରୋମାଞ୍ଚକର କାହାଣୀ ଭଳି ଲାଗେ । କିନ୍ତୁ ଯେତେଦିନ ମୁଁ ନିଜକୁ ପଦାର୍ଥ ବିଜ୍ଞାନର ଛାତ୍ର ବୋଲି ଭାବିଛି, ସେଦିନ ପର୍ଯ୍ୟନ୍ତ ମୁଁ ନିଜକୁ ବିଜ୍ଞାନର ପୂଜାରୀ ବୋଲି ଧରି ନେଇଛି । ଏହାର ସମୟ ସୀମା ଅବଶ୍ୟ ଖୁବ୍ ସଂକ୍ଷିପ୍ତ ।

ଚୀନ୍ ଦେଶରେ ପଦାର୍ଥ ବିଜ୍ଞାନକୁ ଉ ଲି (Wu Li) କୁହାଯାଏ ଓ ପଦାର୍ଥ ବିଜ୍ଞାନୀକୁ ଉ ଲି ମାଷ୍ଟର୍‌ସ (Wu Li Masters)କୁହାଯାଏ ବୋଲି ଲେଖକ ଗ୍ୟାରୀ ଜୁକାଭ ବହିଟିର ନାମକରଣ କରିଛନ୍ତି । ପଦାର୍ଥ ବିଜ୍ଞାନୀ ଏକ ନୃତ୍ୟରତ କଳାକାର

ବୋଲି କୁହାଯାଇପାରେ । ପଦାର୍ଥ ବିଜ୍ଞାନୀ ବା ଉ ଲି ମାଷ୍ଟର ତାହାର ଛାତ୍ରକୁ ମାଧ୍ୟାକର୍ଷଣ ଶକ୍ତି ଓ ଏଥିପାଇଁ ଥିବା ନିୟମକୁ ବୁଝାଏ ନାହିଁ । ଛାତ୍ରଟି ଫୁଲର ପାଖୁଡ଼ା ଝରିଲାବେଳେ ଅବଲୋକନ କରିବା ଦ୍ୱାରା ଏହା ବୁଝିପାରେ । ଅଥବା ଗୋଟିଏ ହାଲୁକା ଏବଂ ଆଉ ଗୋଟିଏ ଓଜନିଆ ପଥରକୁ ଏକା ଉଚ୍ଚତାରୁ ସେ ନିକ୍ଷେପ କରି ଦେଖେ ଯେ ଭୂତଳ ସ୍ପର୍ଶ କରିବାକୁ ଦୁଇଟି ଯାକ ଏକ ସମୟ ନେଇଛନ୍ତି । 'ଉ ଲି ମାଷ୍ଟର' ଛାତ୍ରଙ୍କୁ ଗଣିତ କଥା କହେ ନାହିଁ, ଯେ ପର୍ଯ୍ୟନ୍ତ ଛାତ୍ରଟି ନିଜେ ନିର୍ଦ୍ଧାରିତ କରି ନାହିଁ ଯେ ମାଧ୍ୟାକର୍ଷଣ ନିୟମକୁ ବୁଝିବା ପାଇଁ ସରଳ ରାସ୍ତା ଅଛି । ଏହି ଭଳି 'ଉ ଲି ମାଷ୍ଟର' ତାଙ୍କର ଛାତ୍ର ସହ ନୃତ୍ୟ କରନ୍ତି କିନ୍ତୁ ପାରମ୍ପରିକ ଢ଼ଙ୍ଗରେ ପଢ଼ାନ୍ତି ନାହିଁ । ଛାତ୍ରମାନେ ଅଧ୍ୟାପନା କରନ୍ତି ନାହିଁ ବରଂ ଅନ୍ତର୍ଜ୍ଞାନ ଆହରଣ କରନ୍ତି ।

ଉ ଲି ମାଷ୍ଟର ସବୁବେଳେ ବିଷୟବସ୍ତୁର ମର୍ମସ୍ଥଳରୁ ଆରମ୍ଭ କରେ । ଏହା ହିଁ ତାଙ୍କର ବିଶେଷତ୍ୱ । ଏକଥା ଜାଣିଲା ପରେ ଆମର ଅନେକ ପଦାର୍ଥ ବିଜ୍ଞାନ ନପଢ଼ାଉଥିବା ଅଧ୍ୟାପକମାନଙ୍କ କଥା ମନକୁ ଆସେ । କିଏ ବିଜ୍ଞାନର ତତ୍ତ୍ୱ ଆମକୁ ଘୋଷିବାକୁ କହିଲାଣିତ ଆଉ କିଏ ପରୀକ୍ଷାଗାରରେ ଲମ୍ବା ସ୍କେଲରେ ପିଟିବା ପାଇଁ ଧମକ ଦେଲାଣି । କିଏ ପ୍ରାକ୍‌ଟିକାଲରେ ଫେଲ୍ କରିବାକୁ ଚାହିଁଲାଣିତ ଆଉ କିଏ ପଦାର୍ଥ ବିଜ୍ଞାନର ସରଳୀକୃତ ପ୍ରଶ୍ନୋତ୍ତର ବା 'ମେଡ୍ ଇଜି' ବହି ପଢ଼ିବାକୁ ସୁପାରିଶ୍ କଲାଣି । ହାୟ! ଯଦି ଆମର ଅଧ୍ୟାପକମାନେ 'ଉ ଲି ମାଷ୍ଟର' ହୋଇ ଥାଆନ୍ତେ, ମୁଁ ନିଶ୍ଚୟ ଜଣେ ଭଲ ପଦାର୍ଥ ବିଜ୍ଞାନୀ ହୋଇ ନିଜକୁ ଗଢ଼ି ପାରିଥାଆନ୍ତି । ଭାବି ବସିଲେ ଅନେକ ନୈରାଶ୍ୟ ଆଜି ଆସୁଛି ମନରେ ।

ଗ୍ୟାରୀ ଜୁକାଭ୍ ତାଙ୍କ ପୁସ୍ତକରେ ପ୍ରଥମେ କହିଛନ୍ତି ଯେ ଏହା ଏକାଧାରରେ କ୍ୱାଣ୍ଟମ୍ ମେକାନିକ୍‌ସ, କ୍ୱାଣ୍ଟମ୍ ଲଜିକ୍, ବିଶେଷ ଆପେକ୍ଷିକ ସିଦ୍ଧାନ୍ତ ବା ସ୍ପେଶିଆଲ ଥିଓରୀ ଅଫ୍ ରିଲେଟିଭିଟି ଏବଂ ସାଧାରଣ ଆପେକ୍ଷିକ ସିଦ୍ଧାନ୍ତ ବା ଜେନେରାଲ୍ ଥିଓରୀ ଅଫ୍ ରିଲେଟିଭିଟି । ଆଇନଷ୍ଟାଇନ୍‌ଙ୍କୁ ଉଦ୍ଧାର କରିଛନ୍ତି ଜୁକାଭ୍ । ପଦାର୍ଥ ବିଜ୍ଞାନର ସମସ୍ତ ତାତ୍ତ୍ୱିକ ନୀତିନିୟମ ମଣିଷର ଖୋଲାମନ ଦ୍ୱାରା ସୃଷ୍ଟି । ଏହାକୁ ବାହାରର ପୃଥିବୀ ତିଆରି କରିନାହିଁ । ବାସ୍ତବକୁ ବୁଝିବାକୁ ହେଲେ ଠିକ୍ ନିବୁଜ ଘଣ୍ଟାକୁ ବୁଝିବା ଭଳି । ଘଣ୍ଟାକୁ ଦେଖିହୁଏ ଓ ଚାଲୁଥିବା କଣ୍ଟାକୁ ଦେଖିହୁଏ । ଟିକ୍ ଟିକ୍ ଶବ୍ଦକୁ ଶୁଣିହୁଏ । କିନ୍ତୁ ଘଣ୍ଟାକୁ ଖୋଲି ହୁଏ ନାହିଁ । ସେ ଆପଣା ଛାଏଁ ଘଣ୍ଟା ଭିତରେ କ'ଣ ଅଛି କଳ୍ପନା କରେ । ଅଥଚ ଏହା ଘଣ୍ଟା ଚାଲିବାର ସବୁ ନିୟମ ଓ ପର୍ଯ୍ୟବେକ୍ଷଣକୁ ବୁଝାଇ ପାରେ ନାହିଁ ।"

ବାସ୍ତବ ପୃଥିବୀକୁ ଆମକୁ ବୁଝିବାକୁ ହେବ । ଏଇ ବୁଝିବାର ଅର୍ଥ ହେଉଛି ଆମମାନଙ୍କର ପ୍ରାଚୀନ ହିନ୍ଦୁଧର୍ମ ଓ ଦର୍ଶନ ମୂଳକଥା । ବୌଦ୍ଧଧର୍ମରେ ମଧ୍ୟ ଏଇକଥା ବର୍ଣ୍ଣନା କରାଯାଇଛି । ଗ୍ୟାରୀ ଜୁକାଭ୍ ବିଶିଷ୍ଟ ପଦାର୍ଥବିଜ୍ଞାନୀ ବୋହମ୍‌ଙ୍କର ତତ୍ତ୍ୱ ସବୁକୁ ବିଶେଷଭାବେ ବ୍ୟବହାର କରିଛନ୍ତି । ତାଙ୍କର କହିବା ଉଦ୍ଦେଶ୍ୟ ହେଲା ଯେ ପାଶ୍ଚାତ୍ୟର

ବିଜ୍ଞାନ ଓ ଆମର ପୂର୍ବଜଗତର ଧର୍ମ ଓ ଦର୍ଶନ ଭିତରେ ଗୋଟାଏ ନିବିଡ଼ ସମ୍ପର୍କ ଅଛି । ବାସ୍ତବର ଅସଲ ଅର୍ଥ ହେଉଛି ଯାହା କିଛି ବିଷୟରେ ଆମେ ଭାବିପାରିବା । ଏଣୁ ପଦାର୍ଥ ବିଜ୍ଞାନୀ ବୋହମ୍ ଓ ଜଣେ ତିବ୍ବତୀୟ ଲାମା ଏକା କଥା କହୁଛନ୍ତି । ପୂର୍ବ ଜଗତର ଧର୍ମ ଓ ବିଜ୍ଞାନ ତଥାକଥିତ ସଙ୍କେତକୁ ଡେଇଁ ଯାଇଛି । ଏଇ ମୁକ୍ତିର ସଙ୍କେତ ସ୍ୱୀକାର କରିବାରୁ ରୂପ ନେଇଛନ୍ତି କୃଷ୍ଣ, ବୁଦ୍ଧ, ଯୀଶୁଖ୍ରୀଷ୍ଟ ବା ଜଗତର ଅନନ୍ତ ବିବିଧତା । ଏହାକୁ ସ୍ୱୀକାର କରିଲେ ମିଳେ ପ୍ରବୁଦ୍ଧତା ଓ ଚରମ ଜ୍ଞାନାଲୋକ । ପୂର୍ବଜଗତର ଧର୍ମ ଓ ଦର୍ଶନ ପଦାର୍ଥ ବିଜ୍ଞାନ ସମ୍ବନ୍ଧରେ କିଛି ହୁଏତ ନକହିପାରେ, କିନ୍ତୁ ମଣିଷର ସ୍ୱର୍ଗୀୟ ଅନୁଭବ ହାସଲ କରିବାରେ ଏହା ଏକ ମାଧ୍ୟମ । ହିନ୍ଦୁ ଧର୍ମଶାସ୍ତ୍ରରେ ମାଆ କାଳୀଙ୍କ କଥା ବର୍ଣ୍ଣନା କରାଯାଇଛି । ମାଆ କାଳୀ ହେଉଛନ୍ତି ସମସ୍ତ ଐଶ୍ୱରିକ ଶକ୍ତିର ରୂପାୟନ । ସବୁ ଅନୁଭୂତିର ସଙ୍କେତ । ସବୁ ଭୌତିକ ଅବସ୍ଥାର ପରିପ୍ରକାଶ । ସେ ହେଉଛନ୍ତି ସବୁ ନାଟକ ଏବଂ ଦୁଃଖଦ କାହାଣୀର ପ୍ରତୀକ । ସେ ହିଁ ହେଉଛନ୍ତି ହାସ୍ୟରସ ଓ ବିଳାସଭାବ । ସେ ଭାଇ ଓ ଭଉଣୀ, ବାପା ଓ ମାଆ, ବନ୍ଧୁ ଓ ପ୍ରେମିକ । ସେ ବି ଜଘନ୍ୟ ଓ ଭୟାନକ । ସେ ସୂର୍ଯ୍ୟ, ସମୁଦ୍ର, ଘାସ ଓ ଶିଶିର । ଆମର ସବୁ ସଫଳତା ଓ ବିଫଳତାର ପରିଚୟ । ମାଆ କାଳୀଙ୍କ ଅଙ୍ଗପ୍ରତ୍ୟେଙ୍ଗ ଆମର ଅସ୍ତିତ୍ୱରେ ବାସ୍ତବର ପ୍ରତିଫଳନ ।

ମାଆ କାଳୀ ହେଉଛନ୍ତି ସର୍ବଶକ୍ତିମାନ । ସେଥିପାଇଁ ହିନ୍ଦୁମାନେ ତାଙ୍କୁ ଜୟ କରିବା ବା ଭଲ ପାଇବା ପରିବର୍ତ୍ତେ କେବଳ ପ୍ରାର୍ଥନା କରିଆସିଛନ୍ତି । ଶ୍ରୀରାମଚନ୍ଦ୍ର ଓ ସୀତାଙ୍କ ପରିକଳ୍ପନା ଏଇ ଠାରୁ ମଧ୍ୟ ଆରମ୍ଭ । କାଳୀଙ୍କ ଅବତାର ହେଉଛନ୍ତି ସୀତା । ରାମାୟଣରେ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କ ଭିତରେ ସୀତା ଚାଲୁଥାଆନ୍ତି । ଯଦିଓ ପଛରେ ଥାଇ ଲକ୍ଷ୍ମଣ ସୀତାଙ୍କୁ ସବୁବେଳେ ଦେଖୁଥାଆନ୍ତି, ବେଳେବେଳେ ସେ କେବଳ ଶ୍ରୀରାମଚନ୍ଦ୍ରଙ୍କୁ ହିଁ ଦେଖନ୍ତି ଭଗବାନଙ୍କ ଅବତାର ହିସାବରେ । ବିଂଶ ଶତାବ୍ଦୀର ପଦାର୍ଥବିଜ୍ଞାନକୁ ଏଇଭଳି ଦେଖିବାର କଥା । ଏହା ଗୋଟାଏ ବନ୍ଧନରୁ ମୁକ୍ତ ହୋଇ ସ୍ୱାଧୀନ ହେବା ପାଇଁ ଏକ ଯାତ୍ରା । ପଦାର୍ଥ ବିଜ୍ଞାନୀ ଏବେ ନୂଆ ତତ୍ତ୍ୱ କେବଳ ଆବିଷ୍କାର କରୁନାହିଁ, ସେ ସିଦ୍ଧିର ଚରମ ପାହାଚକୁ ଉଠିବାକୁ ଚାହିଁଛି । ଗ୍ୟାରୀ ଜୁକାଭ୍ କହିଛନ୍ତି ଯେ ବର୍ତ୍ତମାନର ପଦାର୍ଥ ବିଜ୍ଞାନୀମାନେ କେବଳ ପ୍ରକୃତିର ବିବିଧତାକୁ ଆବିଷ୍କାର କରୁନାହାନ୍ତି, ସେମାନେ ମାଆ କାଳୀଙ୍କ ସହ ନୃତ୍ୟ କରୁଛନ୍ତି । ବୌଦ୍ଧଧର୍ମରେ ତନ୍ତ୍ର କଥା ଉଲ୍ଲେଖ କରାଯାଇଛି । ବୌଦ୍ଧ ଭିକ୍ଷୁମାନେ ଯେଉଁ ତନ୍ତ୍ର ଉପାସନା କରୁଥିଲେ ତାହା ତନ୍ତୀର ଲୁଗା ବୁଣିବା ଭଳି । ଏହା କଥାରେ ନୁହେଁ କାମରେ ହିଁ ପ୍ରଦର୍ଶନ କରାଯାଏ । ତେଣୁ ସର୍ବକର୍ମ ସହ ସଂଶ୍ଳିଷ୍ଟ । ଏହା ଏକ ଚେତନାବୋଧ । ଗ୍ୟାରୀ ଜୁକାଭ୍ କହିବାକୁ ଚାହିଁଚନ୍ତି ଯେ ପଶ୍ଚିମ ଜଗତର ତଥାକଥିତ ବିଜ୍ଞାନ ଶେଷ ହୋଇଛି । ଏବେ ରହୁଛି କେବଳ ପୂର୍ବଜଗତର ତଥାକଥିତ ଉଚ୍ଚତର ମଣିଷଙ୍କ ଦ୍ୱାରା ମହାଜାଗତିକ ଅନୁଭବ ।

ବିଜ୍ଞାନ ଓ ଆଧ୍ୟାତ୍ମିକତା ଭିତରେ ବ୍ୟବଧାନ ଖୁବ୍ ପତଳା ବୋଲି ମୁଁ ସବୁବେଳେ ଅନୁଭବ କରିଛି । ଅବଶ୍ୟ ମୋ ଭିତରେ ଅନେକ ଅପରିପକ୍ୱତା ଓ ସସୀମତା ଥିବାରୁ ମୁଁ

ବିଜ୍ଞାନ ଓ ଆଧାତ୍ମିକବାଦର ଅସଲ ନିର୍ଯ୍ୟାସ ପାଇପାରି ନାହିଁ । ଗ୍ୟାରୀ ଜୁକାଭ୍‌ଙ୍କର ବହିଟି ପଦାର୍ଥ ବିଜ୍ଞାନ ନୁହେଁ ବୋଲି ଅନେକ କଠୋରପନ୍ଥୀ ସମାଲୋଚନା କରିଛନ୍ତି । ଏହା ମଧ୍ୟ ଆଧାତ୍ମିକବାଦୀଙ୍କ ପାଇଁ କେବେହେଲେ ଗ୍ରହଣଯୋଗ୍ୟ ହେବନାହିଁ । କିନ୍ତୁ ଏକଥା ସତ ଯେ ଯେଉଁ ମଣିଷ ଉଚ୍ଚତର ପୃଥିବୀକୁ ଆରୋହଣ କରିବାକୁ ଚାହୁଁଛି, ତାକୁ ବିଜ୍ଞାନ ଓ ଆଧାତ୍ମିକବାଦ ଉଭୟଙ୍କୁ ଅନ୍ତରଙ୍ଗ କରିବାକୁ ହେବ । ଏହାଛଡ଼ା ଦ୍ୱିତୀୟ ରାସ୍ତା ନାହିଁ । ବିଜ୍ଞାନ ଭିତରେ ଆଧାତ୍ମିକତାକୁ ଠାବ କରିବାକୁ ହେବ ଓ ଆଧାତ୍ମିକତା ଭିତରେ ସମ୍ଭବତଃ ବିଜ୍ଞାନର ସମସ୍ତ ତତ୍ତ୍ୱକୁ ନିରୀକ୍ଷଣ କରିବାକୁ ହେବ । ମନ୍ଦିର, ଦେବାଦେବୀଙ୍କ ମୂର୍ତ୍ତି ଓ ପରିକଳ୍ପନା ଭିତରେ ବିଜ୍ଞାନ ନିଶ୍ଚିତ ଅଛି । ମଣିଷ ଜାଣ ଅଜାଣତରେ ଏହା ସହ ସମ୍ପର୍କ ରଖିବାକୁ ଚାହୁଁଛି । ଶହ ଶହ ବର୍ଷର ଜିଜ୍ଞାସା ଓ ସିଦ୍ଧିର ଅସଲ ବ୍ୟାଖ୍ୟାନ କ'ଣ ? ଏହା ନିଶ୍ଚିତ ଭାବେ ଉ ଲି ମାଷ୍ଟର ମାନଙ୍କର ବୌଦ୍ଧିକ ଯାତ୍ରା । କେଉଁ ଯୁଗରୁ ଏହା ଆରମ୍ଭ ହୋଇଛି ଓ ଏପର୍ଯ୍ୟନ୍ତ ଏହା ଶେଷ ହୋଇନାହିଁ । ଏହାର ଶେଷ ମଧ୍ୟ କେବେ ନାହିଁ ।

❑ ❑ ❑

## ୨୭

# ବିଜ୍ଞାନ ଓ ଆଧ୍ୟାତ୍ମିକତା : ଦି ତାଓ ଅଫ ଫିଜିକସ୍

ପଦାର୍ଥ ବିଜ୍ଞାନୀ ଫ୍ରିଜୋଫ୍ କାପ୍ରା(Fritjof Capra)ଙ୍କ ଦ୍ୱାରା ଲିଖିତ "ଦି ତାଓ ଅଫ ଫିଜିକ୍ସ" (The Tao of Physics) ବହି ୧୯୭୫ ମସିହାରେ ପ୍ରକାଶିତ ହେଲା ପରେ ଆମ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । କାରଣ ସେତେବେଳେ ବୁଦ୍ଧିଜୀବୀ ମହଲରେ ଏହା ବେଶ୍ ଆଲୋଚିତ ହୋଇଥିଲା । ଆମେ ଯେଉଁମାନେ ବିଜ୍ଞାନ ଓ ଆଧ୍ୟାତ୍ମିକବାଦକୁ ନେଇ ଦ୍ୱନ୍ଦ୍ୱତର୍କ ବା ଡାୟାଲେକ୍‌ଟକ୍‌ସରେ ନିଜକୁ ହଜାଇ ଦେଉଥିଲୁ, ଏ ବହିଟି ସ୍ୱଚ୍ଛତା ଆଣିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା । ମୋର ମନେ ଅଛି ମୁଁ ଏହାର କେତେ କପି କିଣି ବନ୍ଧୁମାନଙ୍କୁ ଉପହାର ଦେଇଥିଲି । ମୋର ଏକମାତ୍ର ଉଦ୍ଦେଶ୍ୟ ଯେ ସଂଶୟବାଦର ସଂକୀର୍ଣ୍ଣଗଣ୍ଡି ଭିତରୁ ଆମ ସମସ୍ତଙ୍କୁ ମୁକୁଳିବାକୁ ହେବ । ପଦାର୍ଥ ବିଜ୍ଞାନ ଓ ତାତ୍ତ୍ୱିକ ସିଦ୍ଧାନ୍ତ ଭିତରେ ସମ୍ପର୍କକୁ ଅଙ୍ଗେନିଭାଇବାକୁ ପଡିବ । ମୋର ଆପଣାର ମଣିଷମାନଙ୍କୁ ମୁଁ କହୁଥିଲି ଏ ବହିଟି ପଢ଼ିବା ପାଇଁ କାରଣ ଏହା ଆମର ତତ୍ତ୍ୱ ମୀମାଂସା ସମାହିତ ସମ୍ପର୍କର ଆଧାର ହୋଇଯାଇଥିଲା । ଏପରିକି ବିବାହ ପୂର୍ବର ସ୍ମୃତି ପାଇଁ ମୋର ସ୍ତ୍ରୀଙ୍କୁ ଦେଇଥିବା ଏ ବହିଟି ୧୯୮୩ ମସିହା ଠାରୁ ଆମ ପୁସ୍ତକାଳୟରେ ସ୍ଥାନ ପାଇଅଛି । ଏକ ଦୀର୍ଘସ୍ଥାୟୀ ଓ ଅନନ୍ୟ ସମ୍ପର୍କର ଏହା ପରିପ୍ରକାଶ ହୋଇଛି ଆମ ଦୁହିଁଙ୍କ ପାଇଁ । ବନ୍ଧୁତା ଓ ଭଲ ପାଇବାର ଅଗଣିତ ସମୀକରଣର କେନ୍ଦ୍ରରେ ଏହା ଅବସ୍ଥାପିତ ହୋଇଛି ସବୁଦିନ ପାଇଁ ।

ଆମକୁ ଭଲଲାଗୁ ଥିଲା ଆମ ଚାରିପାଖର ପୃଥିବୀକୁ ଓ ଏହାର ପାଣି, ପବନ, ପାହାଡ଼, ପର୍ବତ, ବାଲିଗୋଡି, ସବୁଜ ବନାନୀ ଓ ରକ୍ତିମ ଆକାଶ, ନୀଳାଭ ସମୁଦ୍ର ଓ ଶ୍ୱେତାଭ ସି'ଗଲ୍ । କିନ୍ତୁ ଏସବୁକୁ ନେଇ ଯେ ଏକ "କସ୍ମିକ୍" ନୃତ୍ୟ ସୃଷ୍ଟି ଆରମ୍ଭରୁ ଚାଲିଛି ତାହା ଅନ୍ତରଙ୍ଗତାର ସହ ଅନୁଭବ କରିବାକୁ କାପ୍ରା ଏ ବହିଟି ଯେମିତି ଲେଖିଛନ୍ତି । ବହିଟିର ମୁଖବନ୍ଧରେ ସେ ଲେଖିଛନ୍ତି ଯେ ଏକଦା ଗ୍ରୀଷ୍ମ ଅପରାହ୍ନରେ ସମୁଦ୍ର କୂଳରେ ବସି ଅବଲୋକନ କରୁଥିଲେ ଉର୍ମିମାଳାମାନଙ୍କୁ ଓ ଅନୁଭବ କରୁଥିଲେ ନିଜର ଶ୍ୱାସ ପ୍ରଶ୍ୱାସମାନଙ୍କୁ । ଏଇ ସମୟରେ ଲେଖକ ଅନୁଭବ କରିଥିଲେ ଯେ ସବୁ ଯେମିତି ଏକ ମହାଜାଗତିକ ନୃତ୍ୟ ବା କସ୍ମିକ୍ ଡାନ୍‌ସର ଅଂଶ ବିଶେଷ । ଜଣେ ପଦାର୍ଥବିଜ୍ଞାନୀ ହିସାବରେ ସେ ଜାଣିଛନ୍ତି ଯେ ଏହା ସବୁ ଅଣୁ ପରମାଣୁର ଖେଳ । କେଉଁଠି ହେଉଛି

ମିଳନତ ଆଉ କେଉଁଠି ହେଉଛି ସଂଘାତ । ସୃଷ୍ଟି ଓ ବିଲୟର ଏହା ହେଉଛି ନୀତିନିୟମ । ସବୁଠି ଅଛି ଛନ୍ଦାତ୍ମକ ସ୍ପନ୍ଦନ । ଏଇ ମୁହୂର୍ତ୍ତରେ ସେ ଭଗବାନ ଶିବଙ୍କ ନୃତ୍ୟର ଅର୍ଥ ବୁଝିପାରିଛନ୍ତି । ନଟରାଜ ହିଁ ଏକ ମହାଜାଗତିକ ଛନ୍ଦ ଓ ତାଳର ସଂକେତ । "ଦି ତାଓ ଅଫ ଫିଜିକ୍‌ସ" ବହିର ମଲାଟ ପୃଷ୍ଠାରେ ନଟରାଜଙ୍କ ମୂର୍ତ୍ତି ଶୋଭା ପାଉଛି ।

ଫ୍ରିଜୋଫ୍ କାପ୍ରା ପଦାର୍ଥବିଜ୍ଞାନୀ ହିସାବରେ ଆଧୁନିକ ବିଜ୍ଞାନ ଓ ପୂର୍ବଜଗତର ରହସ୍ୟବାଦର ସାମଞ୍ଜସ୍ୟ ସ୍ପଷ୍ଟ ଦେଖିପାରିଛନ୍ତି । ଜେନ୍ ଦର୍ଶନରେ ଯେଉଁ ସଂଦିଗ୍ଧତା ଉପସ୍ଥାପନା କରାଯାଇଛି, କ୍ୱାଣ୍ଟମ୍ ତତ୍ତ୍ୱରେ ଥିବା ସଂଦିଗ୍ଧତା ସହ ଅନେକ ମେଳ ଖାଉଛି । ବିଜ୍ଞାନର ତର୍କ ଓ ବିଶ୍ଳେଷଣ ସଂଶ୍ଳିଷ୍ଟ ଚିନ୍ତା ସହ ରହସ୍ୟବାଦରେ ଗଢ଼ାଯାଇଥିବା ଧ୍ୟାନ ଚିନ୍ତନ ଭିତରେ ଯେଉଁ ଖାଇ ରହିଛି ତାହା କେମିତି ଦୂର ହେବ, ତାହାକୁ ସେ ବିଚାରକୁ ନେଇଛନ୍ତି ।

ଆମେ ପୃଥିବୀକୁ ଓ ବିଶ୍ୱ ବ୍ରହ୍ମାଣ୍ଡକୁ କେଉଁଭଳି ଦେଖିବା ? ଅଣୁ ପରମାଣୁ ଏବଂ କ୍ଷୁଦ୍ରାତିତମ କଣିକା ମାନଙ୍କୁ ନେଇ ଗଢ଼ା ଏଇ ସୃଷ୍ଟି ଖଣ୍ଡବିଖଣ୍ଡିତ ନା ଗୋଟାଏ ଏକକ ? ଏହାର ସମୀକ୍ଷା କରିଛନ୍ତି ଫ୍ରିଜୋଫ୍ କାପ୍ରା ଅତି ସରଳ ଓ ସୂକ୍ଷ୍ମଭାବେ । ଯେଉଁମାନେ ପଦାର୍ଥବିଜ୍ଞାନ ବା ଦର୍ଶନର ଛାତ୍ର ନୁହନ୍ତି, ସେମାନେ ବହିଟି ପଢ଼ିବା, ବୁଝିବା ଓ ଆନନ୍ଦ ନେବା ପାଇଁ ଯେମିତି ଏହା ଲେଖାଯାଇଛି । କାପ୍ରା କୁହନ୍ତି ଯେ ପୂର୍ବ ଜଗତର ଦର୍ଶନର ମୂଳ କଥା ହେଉଛି ଯେ ବସ୍ତୁ ଓ ଘଟଣା ସବୁ ଗୋଟାପଣେ ଗୁନ୍ଥି ହୋଇଥିବାର ଚେତନା ବୋଧ । ସବୁ ଏକାକାର ଓ ଅଭିନ୍ନ । ପ୍ରତ୍ୟେକ ଅନ୍ୟ ଉପରେ ନିର୍ଭରଶୀଳ ଏବଂ ବୃହତ୍ତର ଏକ ମହାଜାଗତିକ ଶକ୍ତିର ଅଂଶବିଶେଷ । ପ୍ରତ୍ୟେକ ଏକ ଅନ୍ତିମ ବାସ୍ତବ ବା "ଅଲ୍‌ଟିମେଟ୍ ରିୟଲିଟି"ର ପରିପ୍ରକାଶ । ଏହି ଗତିଶୀଳ ମହାଜାଗତିକ ବିଶ୍ୱର କଳ୍ପନା ହିନ୍ଦୁଧର୍ମର ବ୍ରହ୍ମ ରୂପେ- ହିଁ ପ୍ରକାଶ ପାଇଛି । ଉପନିଷଦରେ ବ୍ରହ୍ମର ଚମତ୍କାର କଳ୍ପନା କରାଯାଇଛି । ଋକ୍‌ବେଦରେ ରୀତ୍ ମଧ୍ୟ ଏଇଭଳି ଚିନ୍ତା ଓ ଚେତନା ରୂପେ ସ୍ଥାନ ପାଇଛି । ବିଶ୍ୱ ବ୍ରହ୍ମାଣ୍ଡକୁ ବୁଝିବାକୁ ହେଲେ ଏଇ ଗତି, ସ୍ପନ୍ଦନ ଓ ନୃତ୍ୟକୁ ହିଁ ଅନୁଭବ କରିବାକୁ ହେବ । ମହାଜାଗତିକ ଜାଲ ବା କସ୍‌ମିକ୍ ୱେବ୍ ସତତ ଗତିଶୀଳ ଓ ପରିବର୍ତ୍ତନଶୀଳ ଅଛି । ଏହା ସବୁବେଳେ ବଢ଼ୁଛି । ସ୍ଥାନ ଓ କାଳକୁ ନେଇ ପ୍ରତ୍ୟେକ ଅଣୁପରମାଣୁଙ୍କ ସ୍ଥିତି । ଏପରିକି ପରମାଣୁ ଭିତରେ ଥିବା ଆହୁରି କ୍ଷୁଦ୍ରକଣିକାମାନଙ୍କର ରୂପ ମଧ୍ୟ ଏଇଭଳି ବୋଲି କ୍ୱାଣ୍ଟମ୍ ତତ୍ତ୍ୱରେ କୁହାଯାଇଛି । ତେଣୁ ବସ୍ତୁକୁ ବୁଝିବାକୁ ହେଲେ କେଉଁ ପରିସରରେ ଓ କେଉଁ ସ୍ଥିତିରେ ଏହା ଅଛି ତାହାକୁ ବୁଝିବାକୁ ହେବ । ଏହି ମିଳିତ ଚେତନା ଓ ବୁଝାମଣା ହିଁ ବିଶ୍ୱ ବ୍ରହ୍ମାଣ୍ଡକୁ ବୁଝିବାର ଏକମାତ୍ର ବାଟ । ଆଧୁନିକ ପଦାର୍ଥବିଜ୍ଞାନ ପାଶ୍ଚାତ୍ୟ ବିଜ୍ଞାନୀମାନଙ୍କ ଦ୍ୱାରା ବିକଶିତ ଓ ଏମାନେ ପୂର୍ବଜଗତର ଦର୍ଶନ ବୁଝିବାକୁ ଓ ଅନ୍ତଃସ୍ଥ କରିବାକୁ କିଛିମାତ୍ରାରେ ଅକ୍ଷମ । ଯଦିଓ ଭାରତୀୟ ଦର୍ଶନରେ କୁହାଯାଇଛି ଯେ ବ୍ରହ୍ମ ସମସ୍ତଙ୍କ ଭିତରେ ଅଛନ୍ତି ତଥାପି ପାଶ୍ଚାତ୍ୟବିଜ୍ଞାନର ତଥାକଥିତ

ବିଶ୍ୱ ବ୍ରହ୍ମାଣ୍ଡ ଓ ଏହାର ଯାତ୍ରା ବିଷୟରେ ଯଥେଷ୍ଟ ଆଲୋକପାତ କରିନାହିଁ । ଏବେ କିନ୍ତୁ ସବୁ ଯେ ଏକାକାର, ତାହା କ୍ରମଶଃ ସ୍ୱପ୍ନ ହୋଇଛି । କାପ୍ରା ତାଙ୍କ ବହିରେ ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଚୀନ୍‌ର ତାଓ ଓ ଜାପାନ୍‌ର ଜେନ୍ ଆଦିର ବହୁ ମୂଳତତ୍ତ୍ୱର ସାହାଯ୍ୟ ନେଇଛନ୍ତି । ଗୋଟାଏ ପକ୍ଷରେ ଆଧୁନିକ ପଦାର୍ଥ ବିଜ୍ଞାନ ଓ ତାହାର ଗାଣିତିକ ବିଶ୍ଳେଷଣ ଓ ଅନ୍ୟପକ୍ଷରେ ପୂର୍ବଜଗତର ଆଧ୍ୟାତ୍ମିକ ଦର୍ଶନ ଓ ଧ୍ୟାନ ଭିତରେ ଯେଉଁ ସାମଞ୍ଜସ୍ୟ ରହିଛି ତାହାକୁ କାପ୍ରା ଉପସ୍ଥାପନା କରିଛନ୍ତି ଅତି ସ୍ୱଚ୍ଛତାର ସହ । ଜ୍ଞାନ ଓ ଚେତନାର ସମନ୍ୱୟରେ ହିଁ ମଣିଷ ଆପଣାକୁ ପ୍ରକାଶ କରିପାରୁଛି । କାପ୍ରାଙ୍କ ବହିର ପ୍ରତ୍ୟେକ ଧାଡିରେ ଅସଂଖ୍ୟ ବକ୍ତବ୍ୟ ଓ ଅର୍ଥ ଭରି ରହିଛି । ଯିଏ ପଢ଼ିଛି ତା'କୁ ଏହା ଅନୁଭବ କରିବାକୁ ସମୟ ଲାଗିନାହିଁ ।

'ଦି ତାଓ ଅଫ ଫିଜିକ୍‌ସ'ର ଉପସଂହାରରେ କାପ୍ରା ଅନେକ ଗୁଡିଏ ଅନ୍ତରଙ୍ଗ କଥା ବର୍ଣ୍ଣନା କରିଛନ୍ତି । ତାଙ୍କର ମତରେ ପୂର୍ବଜଗତର ଦର୍ଶନ ଏବଂ ରହସ୍ୟବାଦୀ ଜ୍ଞାନକୁ ତତ୍ତ୍ୱ ଓ ଯୁକ୍ତିର ଶବ୍ଦରେ ପ୍ରକାଶ କରିହେବ ନାହିଁ । ଆଧୁନିକ ବିଜ୍ଞାନ ସହ ଏହାର ସମ୍ବନ୍ଧ ଓ ସମାନ୍ତରାଳ ଚିନ୍ତନକୁ ମଧ୍ୟ ଶବ୍ଦରେ ପ୍ରକାଶ କରିହେବ ନାହିଁ । ଏହାକୁ କେବଳ ଏକାନ୍ତ ଭାବେ ଅନୁଭବ କରିହେବ । ଲେଖକ କହିଛନ୍ତି ଯେ ଉଭୟଙ୍କ ଭିତରେ କିଛି ହେଲେ ଦ୍ୱନ୍ଦ୍ୱ ବା ମତାନୈକ୍ୟ ହିଁ ନାହିଁ । ସୃଷ୍ଟିର ଆରମ୍ଭରୁ ମଣିଷ ଜୀବନ ରହସ୍ୟ ଉନ୍ମୋଚିତ କରିବାକୁ ଚାହିଁଛି ଓ ବିଭିନ୍ନ ଚିନ୍ତା ଓ ଚେତନା, ଯୁକ୍ତି ଓ ଅଭିବ୍ୟକ୍ତିର ସାହାଯ୍ୟ ନେଇଛି । ଏଇ ଚିନ୍ତା ଓ ଚେତନାର ବିବିଧ ରାସ୍ତା ଭିତରେ ଅଛି ବିଜ୍ଞାନ ଓ ଆଧ୍ୟାତ୍ମିକତାର ଦୁଇଟି ଭିନ୍ନରାସ୍ତା । ଏହାକୁ ଛାଡି ଆହୁରି ଅନେକ ରାସ୍ତା ରହିଛି ବୋଲି କାପ୍ରା ଉଲ୍ଲେଖ କରିଛନ୍ତି । କବି ଓ ଶିଶୁ, ବିଦୂଷକ ଓ ସନ୍ୟାସୀ ମଧ୍ୟ ଆପଣା ଆପଣାର ରାସ୍ତା ନିର୍ଦ୍ଧାରଣ କରୁଛନ୍ତି ଜୀବନର ଉଲ୍ଲାସ ଓ ରହସ୍ୟକୁ ଅନୁଭବ କରିବା ପାଇଁ । ସୃଷ୍ଟି ହୋଇଛି ଅନେକ କିଛି ଯାହା ଶବ୍ଦରେ ସୀମାବଦ୍ଧ ହୋଇରହିନାହିଁ । ସବୁ କିଛି ବାସ୍ତବର ଭିନ୍ନ ଭିନ୍ନ ଆଲେଖ୍ୟ ସତ କିନ୍ତୁ ବିଶ୍ୱ ବ୍ରହ୍ମାଣ୍ଡର ସମ୍ପୂର୍ଣ୍ଣ ପରିକଳ୍ପନା ସମ୍ଭବ ହୋଇନାହିଁ । ଅନ୍ୟ ପକ୍ଷରେ ଚିର ସମ୍ମତ ପଦାର୍ଥ ବିଜ୍ଞାନ ବା କ୍ଲାସିକାଲ୍ ଫିଜିକ୍‌ସ କେବଳ ଯନ୍ତ୍ର ସଂଚାଳିତ(Mechanistic) ଚିନ୍ତାଧାରାରୁ ନିସୃତ ହୋଇଛି । ଏହା ଅନେକ କିଛି ଘଟଣାକୁ ବୁଝିବାରେ ସାହାଯ୍ୟ କରୁଛି କିନ୍ତୁ ଏପରି ଅନେକ ଘଟଣାକୁ ଏହା ବୁଝିବାରେ ଅସମର୍ଥ । ଏଥିପାଇଁ ଲୋଡା ଏକ ସମନ୍ୱିତ ଚିନ୍ତାଧାରା ବା ଅର୍ଗାନିକ୍ ଭିଉ (Organic view) ସାମ୍ପ୍ରତିକ ଜୀବନରେ ଏଇ ଦୁଇପ୍ରକାର ମତବାଦର ଆବଶ୍ୟକତା ରହିଛି । ଗୋଟାଏ ବିଜ୍ଞାନ ଓ ବୈଷୟିକ ଜ୍ଞାନ ବୁଝିବାରେ ସାହାଯ୍ୟ କରୁଛି । ଅନ୍ୟଟି ଆଧ୍ୟାତ୍ମିକ ଚେତନାକୁ ଅଙ୍କେଲିଭାଇବାକୁ ସାହାଯ୍ୟ କରୁଛି । ବିଶ୍ୱ ବ୍ରହ୍ମାଣ୍ଡରେ ଯାହା ଘଟୁଛି, ତାହା ମଧ୍ୟ ଅଣୁପରମାଣୁ ସ୍ତରରେ ହିଁ ଘଟୁଛି । ସମ୍ଭବତଃ ଯାନ୍ତ୍ରିକ ମତବାଦ ଠାରୁ ସମନ୍ୱିତ ମତବାଦ ଅଧିକ ଯଥାର୍ଥ ଓ ଉପାଦେୟ ଆଜିର ମଣିଷ ପାଇଁ । କାରଣ ଏହା ବେଶୀ ମୌଳିକ ଓ ଚିରନ୍ତନ । ବସ୍ତୁର

ଅସ୍ତିତ୍ୱ ଓ ଚେତନାର ଅସ୍ତିତ୍ୱ ଭିତରେ ଯେ ଏକ ଚମତ୍କାର ସମ୍ପର୍କ ରହିଛି ତାହା ଏବେ ବୁଝିବା ସହଜ ହୋଇଛି । ପଦାର୍ଥ ବିଜ୍ଞାନୀ ଓ ରହସ୍ୟବାଦୀମାନେ ଆଉ ଏକ ପୃଥିବୀକୁ ଯିବାକୁ ଚାହାନ୍ତି ସବୁ ସମୟରେ ଯାହା ଖୁବ୍ ଗଭୀର ଓ ଅନ୍ତରଙ୍ଗ । ଜଣେ ବାହାର ପୃଥିବୀରୁ ଦେଖୁଛି ତ ଅନ୍ୟଜଣେ ଅନ୍ତରର ଗଭୀର ପ୍ରଦେଶକୁ ଯାଇ ଅବଲୋକନ କରୁଛି । ତୃତୀୟ ପରିସର ପରେ ଯେ ଆଉ ଏକ ଚତୁର୍ଥ ପରିସର ନିଶ୍ଚିତ ବିରାଜମାନ କରୁଛି ଯାହା ଆଜି ହୃଦୟଙ୍ଗମ କରିବାକୁ ଆହ୍ୱାନ ଆସିଛି । ଏଣୁ ପଶ୍ଚିମ ଜଗତର ଆଧୁନିକ ବିଜ୍ଞାନ ଓ ପୂର୍ବଜଗତର ଆଧ୍ୟାତ୍ମିକତାକୁ ମିଶାଇ ସବୁକିଛି ବିଚାର କରିବାକୁ ହେବ । ଚୀନ ଦେଶୀୟ ଦର୍ଶନରେ କୁହାଯାଇଛି ଯେ ରହସ୍ୟବାଦୀମାନେ ତାଓଙ୍କ ମୂଳକଥା ବୁଝିପାରନ୍ତି ଓ ଶାଖା ପ୍ରଶାଖାକୁ ବୁଝନ୍ତି ନାହିଁ । ଅନ୍ୟ ପକ୍ଷରେ ବିଜ୍ଞାନୀମାନେ ଶାଖା ପ୍ରଶାଖାକୁ ବୁଝନ୍ତି କିନ୍ତୁ ମୂଳକୁ ବୁଝନ୍ତି ନାହିଁ । ସମ୍ଭବତଃ ବିଜ୍ଞାନ ରହସ୍ୟବାଦକୁ ଲୋଡୁନାହିଁ କି ରହସ୍ୟବାଦ ବିଜ୍ଞାନକୁ ଖୋଜୁ ନାହିଁ । କିନ୍ତୁ ମଣିଷ ଉଭୟଙ୍କୁ ଲୋଡୁଛି ଓ ଏମାନଙ୍କ ଉପରେ ନିର୍ଭରଶୀଳ ହୋଇପଡିଛି । ପୃଥିବୀର ଗଭୀରତମ ଚିନ୍ତାଧାରାକୁ ବୁଝିବା ପାଇଁ ରହସ୍ୟବାଦର ଆବଶ୍ୟକତା ରହିଛି । ସମସ୍ତେ ଜାଣନ୍ତି ଆଧୁନିକ ମଣିଷ ଆଧୁନିକ ବିଜ୍ଞାନ ବିନା ମୁହୂର୍ତ୍ତକ ପାଇଁ ବଞ୍ଚିବ ନାହିଁ । ଏଇଥିପାଇଁ ଆମ ସମସ୍ତଙ୍କ ଲୋଡା ରହସ୍ୟବାଦୀ ଚିନ୍ତା ଓ ବୈଜ୍ଞାନିକ ବିଶ୍ଳେଷଣର ଏକ ଚମତ୍କାର ଓ ଅଭିନବ ବିଶ୍ଳେଷଣ ।

ଆଜି ଯେଉଁ ଉଚ୍ଚତାକୁ ମୁଁ ଆରୋହଣ କରିବାକୁ ଚାହିଁଛି ବା ଗଭୀରତା ଭିତରକୁ ପ୍ରବେଶ କରିବାକୁ ଚାହିଁଛି, ଏସବୁ ପାଇଁ ମୁଁ ବିଜ୍ଞାନ ଓ ଆଧ୍ୟାତ୍ମିକତାର ସହାୟତା ନେଇଛି । ଏକଥା ସତଯେ ବିଜ୍ଞାନୀ ହୋଇ ମୁଁ ଐଶୀ ଶକ୍ତିର ଅସ୍ତିତ୍ୱକୁ ପ୍ରଶ୍ନ କରିଛି ଓ ଐଶୀ ବିଶ୍ୱାସୀ ହୋଇ ବିଜ୍ଞାନର ପ୍ରଭାବକୁ ପ୍ରଶ୍ନ କରିଛି । ଏକଥା ଆହୁରି ସତ ଯେ ମୋ ଭିତରେ ଏପର୍ଯ୍ୟନ୍ତ ଦୁଇଟିର ଦିବ୍ୟମିଳନ ଠିକ୍‌ଭାବେ ହୋଇନାହିଁ । କିନ୍ତୁ ଏହାର ଆଶାରେ ମୁଁ ଯେମିତି ବଞ୍ଚି ରହିଛି । ଆଉ କେତେ ବର୍ଷ ପର୍ଯ୍ୟନ୍ତ ମଧ୍ୟ ଏଇଭଳି ବଞ୍ଚି ରହିବି ଜୀବନର ସବୁ ଉଠାଣି ଗଡାଣି ଥାଇ ମଧ୍ୟ ।

□□□

# ୨୮

## ବିଜ୍ଞାନ ଓ ଆଧ୍ୟାତ୍ମିକତା: ଜେନ୍ ଆଣ୍ଡ ଦି ଆର୍ଟ ଅଫ୍ ମୋଟରସାଇକେଲ ମେଣ୍ଟେନାନ୍ସ୍

ଆମର ବିଶ୍ୱବିଦ୍ୟାଳୟ ଜୀବନ ଯେ ବୌଦ୍ଧିକତାରେ ପରିପୂର୍ଣ୍ଣ ଥିଲା ତାହା ଆମର ଆଜିସୁଦ୍ଧା ମନେ ଅଛି । ଆମେସବୁ ବିଭିନ୍ନ ପ୍ରକାର ବହି ବର୍ଷସାରା ପଢ଼ିଥାଉ । ବର୍ଷ ଶେଷରେ ଗୋଟିଏ ବହିକୁ ଶ୍ରେଷ୍ଠ ବହି ବୋଲି ନିର୍ବାଚିତ କରିଥାଉ । ବେଳେବେଳେ ବାଛିବା ପ୍ରକ୍ରିୟାଟି ଖୁବ୍ ଜଟିଳ ହୋଇପଡ଼ିଥାଏ । ସମସ୍ତେ ସବୁବହି ପଢ଼ିଥାଆନ୍ତି । ତଥାପି ଏପର୍ଯ୍ୟନ୍ତ ସେ ପ୍ରକ୍ରିୟାଟି ଆମ ଭିତରେ ବଞ୍ଚିରହିଛି । ୧୯୭୪ ମସିହାରେ ରବର୍ଟ ପିରସିଗ୍‌ଙ୍କ ଲିଖିତ ବହି 'ଜେନ୍ ଆଣ୍ଡ ଦି ଆର୍ଟ ଅଫ୍ ମୋଟରସାଇକେଲ ମେଣ୍ଟେନାନ୍ସ୍' (Zen And The Art of Motorcycle Maintenance) ବହିଟି ଗୋଟିଏ "ବେଷ୍ଟ ସେଲର୍" ବୋଲି ଅନେକ ଖ୍ୟାତି ଅର୍ଜନ କରିଥିଲା । ବହିଟି ୧୯୭୫ ମସିହାରେ ଆମର ହସ୍ତଗତ ହୋଇଥିଲା ଓ ସେବର୍ଷ ଆମେ ପଢ଼ିଥିବା ବହିତାଲିକାରେ ଏହା ସର୍ବାଗ୍ରେ ସ୍ଥାନ ପାଇଥିଲା । ଆଜି ଯଦି ଆମକୁ ପଚରାଯାଏ ଯେ ଜୀବନରେ କେଉଁ ବହିଗୁଡ଼ିକ ଆମକୁ ପ୍ରଭାବିତ କରିଛି ତାହାର ତାଲିକାରେ ଏହି ବହିଟି ଆଗଧାଡ଼ିରେ ରହିବ ନିଶ୍ଚିତଭାବେ । ଦର୍ଶନ ସମ୍ବନ୍ଧିତ ପୁସ୍ତକ ହିସାବରେ ଏ ବହିଟି ପୃଥିବୀସାରା ଲକ୍ଷଲକ୍ଷ ସଂଖ୍ୟାରେ ବିକ୍ରୟ ହୋଇଛି ଓ ୨୩ଟି ଭାଷାରେ ଅନୁବାଦିତ ହୋଇଛି । ବହି ପ୍ରକାଶନର ୨୫ବର୍ଷ ପୂର୍ତ୍ତି ଉପଲକ୍ଷେ ଲେଖକ ଲେଖିଥିବା ଉପକ୍ରମଣିକାରେ ଉଲ୍ଲେଖ କରିଛନ୍ତି ଯେ ବହିରେ ଅଳ୍ପ କିଛି ଦୋଷତ୍ରୁଟି ରହିଛି ଓ ସେ ନିର୍ଦ୍ଦ୍ୱନ୍ଦରେ ତାହା ସ୍ୱୀକାର କରିଛନ୍ତି । ବହିଟି ବିଭିନ୍ନ ଦୃଷ୍ଟିରୁ ପୃଥିବୀରେ ଗୋଟାଏ ପ୍ରକାରର ରେକର୍ଡ଼ ସୃଷ୍ଟିକରିଛି । ଲେଖକ ପ୍ରକାଶନ ପାଇଁ ଶହେରୁ ଉର୍ଦ୍ଧ୍ୱ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇ ନିରାଶ ହୋଇଛନ୍ତି । କିନ୍ତୁ ଯେତେବେଳେ ସମାଲୋଚକମାନେ ବହିଟିକୁ ପ୍ଲାଟୋ, ଆରିଷ୍ଟୋଟଲ୍, ଦସ୍ତୋଭସ୍କି, ମେଲେଭିଲ୍‌ଙ୍କ ଅମର କୃତି ସହ ତୁଳନା କରିଛନ୍ତି ସେତେବେଳେ ଏହାର ଲୋକପ୍ରିୟତା ଖୁବ୍ ବଢ଼ିଛି । କେତେକ କୁହନ୍ତି ଯେ ଦର୍ଶନଶାସ୍ତ୍ର ଉପରେ ଲେଖା ଯାଇଥିବା ପୃଥିବୀର ସବୁପୁସ୍ତକ ଭିତରେ ଏହା ସବୁଠାରୁ ଲୋକପ୍ରିୟ ବୋଲି ସର୍ବସମ୍ମତିକ୍ରମେ ମାନ୍ୟତା ପାଇଛି । ମୋ ଭିତରେ ସାକାରବାଦୀ ଚିନ୍ତାଧାରାକୁ ସମୃଦ୍ଧ କରିବାରେ ଏ ବହିଟି ଏକ ପ୍ରଧାନ ଭୂମିକା ଗ୍ରହଣ କରିଛି ।

ଲେଖକ ତାଙ୍କର ଛୋଟ ଏଗାର ବର୍ଷର ପୁଅ କ୍ରୀସ୍‌କୁ ମୋଟରସାଇକଲରେ ବସାଇ ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପଲିସ୍ ସହରରୁ ଡ଼ାକୋଟା ପର୍ଯ୍ୟନ୍ତ ଯାତ୍ରା କରିଛନ୍ତି । ପାହାଡ଼ ପର୍ବତ, ଅଙ୍କାବଙ୍କା ଓ ଉଠାଣିଗଡ଼ାଣିର ରାସ୍ତା । ରକି ପାର୍ବତ୍ୟମାଳାର ଶୀତଳ ବାତାବରଣ, କୁହୁଡ଼ିରେ ଆଚ୍ଛନ୍ନ ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳ ଏବଂ ମରୁଭୂମିର ସ୍ୱତନ୍ତ୍ର ପରିବେଶ, ସମୁଦ୍ରକୁ ଛୁଇଁଥିବା ବେଳାଭୂମି ବା ସୁଶୋଭିତ ଅଙ୍ଗୁର ବଗିଚା ଆଦିକୁ ଅତିକ୍ରମ କରିଲାବେଳେ ମନ ଭିତରେ ଉଠିଛି ଅନେକ ପ୍ରଶ୍ନ । ଧୂଳିଧୂସରିତ ଯାତ୍ରା । ଆଗରେ କ'ଣ ଅଛି ତାହା ଅନିଶ୍ଚିତ । କେଉଁଠି ଖାଇବ ଓ କେଉଁଠି ରହିବ କିଛି ଠିକ୍‌ଠିକଣା ନାହିଁ । ପୁଅ ବାପାକୁ ପଚାରିଛି ଅନେକ ମୌଳିକ ପ୍ରଶ୍ନ ଓ ବାପା ଉତ୍ତର ଦେବାକୁ ଚେଷ୍ଟା କରିଛି । ବହିସାରା ଏକ ଦାର୍ଶନିକ ତତ୍ତ୍ୱ ସମ୍ବନ୍ଧୀୟ ବାର୍ତ୍ତାଳାପ । ପାଠକ ଅଭିଭୂତ ହୋଇଯିବ ପଢ଼ିବାବେଳେ । ଲେଖକ ରବର୍ଟ ପିରସିଗ୍ ଜଣେ ଅସାଧାରଣ ଧୀ' ସମ୍ପନ୍ନ ବାଳକ ଥିଲେ । ତାଙ୍କର ଆଇ.କ୍ୟୁ ୧୭୦ରୁ ଉର୍ଦ୍ଧ୍ୱ ଥିଲା । ବାଇଓକେମେଷ୍ଟ୍ରୀ ପଢ଼ିଲାବେଳେ ସେ ବିଜ୍ଞାନ ଜୀବନର ସବୁପ୍ରଶ୍ନର ଉତ୍ତର ଦେଇପାରୁନାହିଁ ବୋଲି କଲେଜ ପାଠପଢ଼ା ଛାଡ଼ିଦେଇଥିଲେ ଓ ଦର୍ଶନ ପ୍ରତି ଆଗ୍ରହ ପ୍ରଦର୍ଶନ କରି ପହଞ୍ଚିଥିଲେ ଭାରତର ବନାରସ୍‌ରେ । ପୂର୍ବଜଗତର ଦର୍ଶନଶାସ୍ତ୍ରକୁ ପଢ଼ିଥିଲେ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟରେ । ଆକର୍ଷିତ ହୋଇଥିଲେ ସଂସ୍କୃତର ମହାନ ଉକ୍ତି "ତତ୍ ତ୍ୱମ୍ ଅସୀ" ପ୍ରତି ଅର୍ଥାତ୍ ଯାହା ମଣିଷ ଭାବୁଛି ଓ ଯାହା ଲକ୍ଷ୍ୟ କରୁଛି ଉଭୟେ ସମାନ ଓ ଅଭିନ୍ନ । ଏହା ଉପଲବ୍ଧି କରିବା ହେଉଛି ଅସଲ ଜ୍ଞାନ । ଜୀବନର ଗୁଣବତ୍ତାକୁ ଅନୁଭବ କରିବା ପାଇଁ ଜୀବନସାରା ସେ ବାହାରିଛନ୍ତି ଏକ ଅଦୃଷ୍ଟ ଯାତ୍ରାରେ । ମୋଟରସାଇକେଲ ଯାତ୍ରା ଏହାର ଏକ ଅଂଶବିଶେଷ । ପ୍ରତ୍ୟେକ ସଚେତନ ମଣିଷ ଏଇଭଳି ଏକ ଅନୁସନ୍ଧାନରେ ସବୁବେଳେ ବ୍ରତୀ ହୋଇଥାଏ ନିଶ୍ଚିତ । ଭଲ ଓ ମନ୍ଦ ଭିତରେ କ'ଣ ଗୁଣାତ୍ମକ ପାର୍ଥକ୍ୟ ରହିଛି ତାହା ଜାଣିବା ହିଁ ଅସଲ ଜୀବନ ଜିଜ୍ଞାସା ।

ଏ ବହିଟି ପଢ଼ିବାବେଳକୁ ମୁଁ ନିଜେ ମୋଟରସାଇକେଲ ଚଳାଇ ଜାଣିନଥିଲି । ପଶ୍ଚିମ ଓଡ଼ିଶାରେ ଏକ ଆନ୍ତର୍ଜାତିକ ଅନୁଦାନକାରୀ ସଂସ୍ଥାରେ କାର୍ଯ୍ୟରତ ଥିଲାବେଳେ ମୋଟରସାଇକଲ ଶିଖିବା ବାଧ୍ୟତାମୂଳକ ଥିଲା । ଗୋଟାଏ ଦିନରେ ଗିଅର ବଦଳେଇବା ମୁଁ ଶିଖିଗଲି । ସେଇଦିନ ରାଜଦୂତ ମୋଟରସାଇକଲ୍‌ରେ ଘଣ୍ଟାକୁ ଅଶୀ କି.ମି. ବେଗରେ ଚଳାଇଲି । ଆମକୁ ଯିଏ ମୋଟରସାଇକେଲ୍ ଚଳାଇବା ପ୍ରଶିକ୍ଷଣ ଦେଉଥିଲେ ବାରମ୍ବାର ସତର୍କ କରି ଦେଉଥିଲେ ଯେ ମୁଁ ଠିକ୍‌ଭାବେ ଚଳାଉନାହିଁ । ରାଜଦୂତ୍ ଗାଡ଼ିର ଗତି ଘଣ୍ଟାକୁ ଚାଳିଶରୁ ଷାଠିଏ କି.ମି. ଭିତରେ ରହିବା କଥା । ମୁଁ ତାଙ୍କ କଥା ମାନିନଥିଲି । ପାହାଡ଼ିଆ ରାସ୍ତା ହେଉ କି ରାଜପଥ ହେଉ, ମୋର ଗତି କମିନଥିଲା । ମୁଁ ସବୁବେଳେ ଏକାକୀ ଚଳାଇବାକୁ ବେଶ୍ ପସନ୍ଦ କରୁଥିଲି । ଦିନେ ମୋ ପଛରେ ବସିଥିବା ଜଣେ ବନ୍ଧୁ ଆରୋହୀକୁ ପଛକୁ ଦେଖିଲାବେଳକୁ ସେ ନାହାନ୍ତି । ମୁଁ ମୋ

ଜୀବନର ଏକ ଶକ୍ତ ଧକ୍‌କା ପାଇଥିଲି କିଛିକ୍ଷଣ ପାଇଁ । ବନ୍ଧୁ ଜଣକ କୁଆଡ଼େ ପଡ଼ି ଗଲେ କି ? ମୁଁ ତତ୍‌କ୍ଷଣାତ୍ ପଛକୁ ଫେରିଲି ଓ କିଛି କି.ମି. ପରେ ଦେଖିଲି ବନ୍ଧୁ ଜଣକ ଏକ ଚା' ଦୋକାନରେ ବସି ଚା'ପିଉଛନ୍ତି । ମୁଁ ତାଙ୍କୁ ଅଜସ୍ର ଗାଳି କରିଲି ନକହି ଓହ୍ଲାଇଥିବାରୁ । ସେ କହିଲେ ଯେ ସେ ସୂଚନା ଦେଇ ଓହ୍ଲାଇଛନ୍ତି । ମୋର ମନେ ରହିନାହିଁ । ପଶ୍ଚିମ ଓଡ଼ିଶାରେ ମୋତେ ଭଲ ଲାଗୁଥିଲା ମହୁଲ ଫୁଲର ବାସ୍ନା ଓ ପଳାଶ ଫୁଲର ରଙ୍ଗ । ମୁଁ ବାରମ୍ବାର ଅଟକୁଥିଲି ଯାତ୍ରା ମଝିରେ । ରାଜସ୍ଥାନର ବାଲୁକାମୟ ରାସ୍ତାରେ ମୁଁ ବେପରୁଆ ଚଳାଉଥିଲି । ଜଣେ ମହିଳା ବନ୍ଧୁ କେଜାଣି କାହିଁକି ମୋ ପଛସିଟ୍‌ରେ ବସିବାକୁ ବାରମ୍ବାର ଅନୁରୋଧ କରୁଥିଲେ । ମୋ କାନରେ ସେ କ'ଣ କହୁଥିଲେ ଅବଶ୍ୟ ମୋତେ ଶୁଣିବା ସମ୍ଭବ ହେଉନଥିଲା । ଗୋଟାଏ ଦିନ ମୋଟରସାଇକେଲ୍ ଚକା ପକ୍‌ଚର ହୋଇଗଲା । ଥୁଣ୍ଟା ବବୁଲ ଗଛତଳେ ବସିପଡ଼ିଥିଲୁ ଆମେ କିଛିସମୟ ପାଇଁ । ଚକା ଖୋଲି ଦୋକାନକୁ ନେବାକୁ ହେବ ମରାମତି ପାଇଁ । ମୋଟରସାଇକଲ୍ ଚଳାଉଥିବା ଚାଳକର ଏ ବିଷୟରେ ସର୍ବନିମ୍ନ ଜ୍ଞାନଥିବା ଆବଶ୍ୟକ । ମୁଁ ମହିଳା ବନ୍ଧୁଙ୍କୁ ସେଦିନ "ଜେନ୍ ଆଣ୍ଡ ଦି ଆର୍ଟ ଅଫ୍ ମୋଟରସାଇକେଲ ମେଣ୍ଟେନାନ୍‌ସ୍" ପଛରେ ଦର୍ଶନର ଯେଉଁ ଗୁଢ଼ତତ୍ତ୍ୱ ରହିଛି ବୁଝାଇଥିଲି ସରଳଭାବେ । ଜୀବନରେ ମୁଁ ଲକ୍ଷାଧିକ କି.ମି. ବିଭିନ୍ନ ବିପଦସଂକୁଳ ରାସ୍ତାରେ ମୋଟରସାଇକଲ୍ ଚଳାଇବାର ଅନୁଭୂତି ଅର୍ଜନ କରିଛି । ଦୁଇଥର ଦୁର୍ଘଟଣାରେ ପଡ଼ିଥିଲେ ମଧ ଭାଗ୍ୟ ଉଜ୍ଜ୍ୱଳ ଥିବାରୁ ପ୍ରାଣ ହରାଇନାହିଁ । ବଞ୍ଚିବାର ପ୍ରାଚୁର୍ଯ୍ୟକୁ ମୁଁ ବିଭିନ୍ନ ପଥରେ ହାତମୁଠାରେ ପାଇଛି । ମୋଟରସାଇକେଲ୍ ଆରୋହୀମାନେ କେବେ କେମିତି ଏଭଳି ଅନୁଭବ କରିଥିବେ ବୋଲି ମୋର ଦୃଢ଼ ବିଶ୍ୱାସ ଅଛି ।

କିନ୍ତୁ ରବର୍ଟ ପିରସିଗ୍ ତାଙ୍କ ବହିରେ ଏପରି କ'ଣ ଲେଖିଛନ୍ତି ଯେ ଯାହା ଦର୍ଶନର ଜଗତରେ ଏବଂ ବୁଦ୍ଧିଜୀବୀଙ୍କ ମାନସିକ ବ୍ୟାପକତାରେ ଏତେ ଚହଳ ପକାଇଛି ? ପ୍ରକାଶିତ ହେବା ଦିନଠାରୁ ଆଜିପର୍ଯ୍ୟନ୍ତ ଏହା କାହିଁକି ଏତେ ପରିମାଣରେ ଆଦୃତ ହେଉଛି ? ପ୍ରକୃତ କଥା କହିବାକୁ ଗଲେ, ସବୁ ମଣିଷମାନେ ନିଜ ଚେତନ ଓ ଅବଚେତନ ମନରେ ସବୁକିଛି ସତ୍ୟ, ଶିବ ଓ ସୁନ୍ଦର ଖୋଜିବାରେ ଲାଗିଛନ୍ତି । ସତ୍ୟ, ଶିବ ଓ ସୁନ୍ଦରର କଳ୍ପନା ସମ୍ଭବତଃ ଆଧ୍ୟାତ୍ମିକବାଦର ମୌଳିକତା ସହ ଓତପ୍ରୋତ ଭାବେ ସଂଶ୍ଳିଷ୍ଟ ।

ଜୀବନକୁ ବଞ୍ଚିବାକୁ ହେବ ସର୍ବୋତ୍ତମଭାବେ । ବିଜ୍ଞାନର ବିକାଶ ଦ୍ୱାରା ଅନେକ ମୂଲ୍ୟବୋଧର ଅବକ୍ଷୟ ହୋଇସାରିଛି । ମୋଟରସାଇକଲ୍‌ଟି କେଉଁଠି ନା କେଉଁଠି ମରାମତି ଚାହୁଁଛି । ସେଇ ସ୍ଥିତିକୁ ବୁଝିବାକୁ ହେଲେ ଦର୍ଶନକୁ ବୁଝିବାକୁ ହେଉଛି । ମୋଟରସାଇକଲ୍‌ର ବିଭିନ୍ନ ଅଂଶ ଯେମିତି ଅଛି ସେମିତି ବି ପ୍ରତ୍ୟେକ ଅଂଶର ବିଭିନ୍ନ ଭୂମିକା ରହିଛି । ଏଭଳିକଥା ଯଦି ମୋଟରସାଇକଲ୍ ଚାଳକ ଜାଣିନାହିଁ ତେବେ ସେ

ମୋଟରସାଇକଲ୍ ଚାଳନାର ଅସଲ ମହତ୍ୱ ବୁଝିପାରିବ ନାହିଁ । ଏଣୁ ଦୁଇଟି କଥା ଏକାସଙ୍ଗେ ଜାଣିବା ହେଉଛି ଏକ ଗୁଣାତ୍ମକ ପ୍ରକାଶ । ଏଇ ଗୁଣ ସମାହିତ କଥାଟି ଜଣେ ଅଙ୍ଗେ ନିଭାଇ ପାରିବ ଅଥଚ ବର୍ଣ୍ଣନା କରିପାରିବ ନାହିଁ ବାକ୍ୟରେ ବା ଚିତ୍ର କରିପାରିବ ନାହିଁ । ଗୁଣ ଭିତରେ ଦୁଇଟି ମତ ରହିବ । ଗୋଟିଏ ପାରମ୍ପରିକ କଥା ଯାହା ସହିତ ବୌଦ୍ଧିକ ବିଜ୍ଞାନ ତତ୍ତ୍ୱ ଏବଂ ବୈଷୟିକ ଜ୍ଞାନ ସଂଶ୍ଲିଷ୍ଟ । ଅନ୍ୟଟି ହେଉଛି ଏକ ରୋମାଂଟିକ ଗୁଣ ଯାହା ସହିତ ଆବେଗ ଓ ଅର୍ନ୍ତଜ୍ଞାନ ଜଡ଼ିତ । କିନ୍ତୁ, ଗୁଣ ହେଉଛି ଉଭୟର ମିଶ୍ରଣ ହେଲେବି ଏହା ଉଭୟର ଉର୍ଦ୍ଧ୍ୱରେ । ଅସଲ ଗୁଣର ପରିଚୟ ହେଉଛି ଅସଲ ଆଧ୍ୟାତ୍ମିକତା ସହ ପରିଚୟ ।

ଲେଖକ ଫାଇଡ୍ରସ୍ (Phaedrus) ବୋଲି ପ୍ଲାଟୋଙ୍କ ଏକ ଚରିତ୍ର ଜରିଆରେ ସବୁ ଦାର୍ଶନିକ ବିଶ୍ଳେଷଣ କରିଛନ୍ତି । କେଉଁଟି ଭଲ ଓ କେଉଁଟି ଭଲ ନୁହେଁ – ଏପ୍ରଶ୍ନର ଉତ୍ତର କିଏ ଦେବ ବୋଲି ଫାଇଡ୍ରସ୍‌ଙ୍କୁ ପ୍ରଶ୍ନ କରିଛନ୍ତି । ମୋଟରସାଇକଲ୍‌ର ଗିଅର୍ ପଏଣ୍ଟ, ଇଞ୍ଜିନ , ଚେନ୍ ଓ ଚେନ୍ ଗାର୍ଡ଼ ଆଦି ବିଷୟ ଆଲୋଚନା କରିବା ଛଳରେ ଜେନ୍ ବୁଦ୍ଧିଜିମ୍ ବିଷୟ ଲେଖକ ସରଳଭାବେ ଆଲୋଚନା କରିଛନ୍ତି ।

କ୍ରୀସ୍ ଗୋଟାଏ ଭୂତକାହାଣୀ ଶୁଣିବାକୁ ଚାହିଁଛି । ଏହି ଭୂତକୁ ବୁଝାଇବାକୁ ଲେଖକ ବିଭିନ୍ନ ଯୁକ୍ତିର ସାହାଯ୍ୟ ନେଇଛନ୍ତି । ସତରେ ଭୂତମାନେ ଥାଆନ୍ତି କି ? ସେମାନେ ବସ୍ତୁହୀନ ଓ ଶକ୍ତିହୀନ । ଏଣୁ ବିଜ୍ଞାନର ନିୟମ ଅନୁସାରେ ସେମାନେ ନାହାନ୍ତି । କେବଳ ମଣିଷଙ୍କ ମନରେ ହିଁ ଭୂତ ପଶିଥାଏ । ଏହି ମନ ଓ ଏହା ଭିତରେ ଥିବା ସବୁପ୍ରକାରର ଦ୍ୱନ୍ଦ୍ୱ ସବୁ ସମସ୍ୟାର ଅସଲ କାରଣ । ଅବଶ୍ୟ ମନ ବସ୍ତୁ ବା ଶକ୍ତିରେ ଗଢ଼ାନୁହେଁ । କିନ୍ତୁ ମନ ଭିତରେ ତର୍କ ରହିଛି । ବିଜ୍ଞାନ ଭୂତଭଳି ମଣିଷର ମନ ଭିତରେ ରହିଛି । ଲେଖକ ଏ ବିଷୟରେ ଆହୁରି ସ୍ପଷ୍ଟ ଆଲୋଚନା କରିବାକୁ ଯାଇ କହିଛନ୍ତି; ପ୍ରକୃତିର ନିୟମ ସବୁକୁ ମଣିଷ ତିଆରି କରିଛି ଯାହାସବୁ ଠିକ୍ ଭୂତଭଳି । ତର୍କର ନିୟମ ଅଥବା ଗଣିତର ନିୟମ ଠିକ୍ ଭୂତଭଳି ମଧ୍ୟ ମଣିଷକୃତ । ମଣିଷ ଯେଉଁ ଚିନ୍ତା ସୃଷ୍ଟି କରିନାହିଁ ତାହା ମଧ୍ୟ ଭୂତସହ ତୁଳନୀୟ । ମଣିଷର ଚିନ୍ତାର ପରିଧି ବାହାରେ କୌଣସି ପୃଥିବୀର ସ୍ଥିତି ନାହିଁ । ସବୁ ଭୂତଭଳି ରହିଛି । ଆମେ ଯାହା ଦେଖୁଛେ ସେଗୁଡ଼ିକ ମୋଜେସ୍, ଯୀଶୁଖ୍ରୀଷ୍ଟ, ବୁଦ୍ଧ, ପ୍ଲାଟୋ, ଡ଼େକାର୍ଟେ, ରଷୋ, ଜେଫରସନ୍, ଲିଙ୍କନଙ୍କ ଭୂତମାନେ ଆମକୁ ଦେଖାଇଛନ୍ତି । ଆଇଜାକ୍ ନ୍ୟୁଟନ୍ ଜଣେ ଭଲଭୂତ । ଆମର ସ୍ୱର ଅତୀତର ହଜାର ହଜାର ମଣିଷମାନଙ୍କର ଭୂତ । ଆଜି ଭୂତମାନେ ନିଜନିଜର ସ୍ଥାନ ଆମ ଭିତରେ ଖୋଜୁଛନ୍ତି ।

ବହିଟିରେ ଗତ କୋଡ଼ିଏ ହଜାର ବର୍ଷର ଦାର୍ଶନିକ ତତ୍ତ୍ୱର ଯେମିତି ସମୀକ୍ଷା କରାଯାଇଛି । ୧୭ଦିନର ମୋଟରସାଇକଲ୍ ଯାତ୍ରାର ଅନୁଭୂତି । କ୍ରୀସ୍ କିନ୍ତୁ କିଛି ବର୍ଷ ପରେ ଦୁର୍ଭାଗ୍ୟକ୍ରମେ ଆତତାୟୀ ହାତରେ ପ୍ରାଣ ହରାଇଛି । ଲେଖକ କିନ୍ତୁ ବିଚଳିତ

ହୋଇନାହାନ୍ତି । ସେ ତାଙ୍କର ଦାର୍ଶନିକ ତତ୍ତ୍ୱକୁ "ଲୀଲା" ବୋଲି ଏକ ଉପନ୍ୟାସ ଜରିଆରେ ଦୋହରାଇଛନ୍ତି । ମୋଟରସାଇକଲ୍ ଯାତ୍ରା କାର୍‌ରେ ଯାତ୍ରା କରିବାଠୁ ସମ୍ପୂର୍ଣ୍ଣ ଭିନ୍ନ । କାର୍ ଭିତରେ ଥାଇ ବାହାରର ଦୃଶ୍ୟ ଠିକ୍ ଟିଭିରେ ଦେଖିଲା ଭଳି । କିନ୍ତୁ ମୋଟରସାଇକଲ୍‌ରେ ଗଲାବେଳେ ପ୍ରକୃତିକୁ ସ୍ପର୍ଶ କରିହୁଏ ଓ ଅନୁଭବ କରିହୁଏ । ବାହାରର ଦୃଶ୍ୟ, ପାଣିପାଗ, ରାସ୍ତାର ଅବସ୍ଥା, ମଣିଷଙ୍କ ଉପସ୍ଥିତି ସବୁ ମୋଟରସାଇକଲ୍ ଆରୋହୀକୁ ମୋହଗ୍ରସ୍ତ କରାଏ । ସଚେତନତା ବାସ୍ତବବାଦୀ ହେଲେ ଜୀବନଦର୍ଶନ ସହ ବାର୍ତ୍ତାଳାପ ହୋଇଯାଏ । ମୋର ଆଜି ମଧ୍ୟ ଇଚ୍ଛାହୁଏ ମୋଟରସାଇକଲ୍ ଚଳାଇ ଦୀର୍ଘ ପଥରେ ଯାତ୍ରୀ ହେବାକୁ । ଏ ଆନନ୍ଦମୟ ଯାତ୍ରାର ଶେଷନାହିଁ ।

❑ ❑ ❑

## ୨୯

# ସଇତାନ ମାନଙ୍କ କଥା

ଏ ମଣିଷ ଭଗବାନଙ୍କ କଳ୍ପନା ଓ ପୂଜା ଯେତିକି କରିଛି ସେଇ ପରିମାଣର ବିପରୀତ ଧର୍ମୀ କଳ୍ପନା ସମ୍ଭବତଃ କରିଆସୁଛି । ପୃଥିବୀରେ ଆଧ୍ୟାତ୍ମିକ ବିଶ୍ୱାସୀ ଥିବା ମଣିଷମାନଙ୍କ ସଂଖ୍ୟା ଯେତିକି, ଅବିଶ୍ୱାସୀ ମଣିଷଙ୍କ ସଂଖ୍ୟା ସେଥିରୁ କିଛି କମ୍ ନୁହେଁ । ସ୍ୱର୍ଗର କଳ୍ପନା ଯେମିତି କରାଯାଇଛି, ନର୍କର ଚିତ୍ର ମଧ୍ୟ ସେଇମିତି ଅଙ୍କା ଯାଇଛି ସବୁ ଧର୍ମରେ । ଖ୍ରୀଷ୍ଟ ଧର୍ମ, ଇସ୍‌ଲାମ୍ ଧର୍ମ, ଇହୁଦୀ ଧର୍ମ, ହିନ୍ଦୁ ଧର୍ମ, ବୌଦ୍ଧ ଧର୍ମ ଓ ଅନେକ ପ୍ରାଚୀନ ଧର୍ମମାନଙ୍କରେ ଭଗବାନ ଓ ସଇତାନ୍, ସ୍ୱର୍ଗ ଓ ନର୍କର ବେଶ୍ ବର୍ଣ୍ଣନା ରହିଛି । ଏହା ଉପରେ କେଉଁ ଯୁଗରୁ ଯୁଗାନ୍ତକାରୀ ସାହିତ୍ୟ ମଧ୍ୟ ରଚନା କରାଯାଇଛି । ସବୁ ଯୁଗରେ ଅଧର୍ମ ଓ ଅନ୍ୟାୟ ବଢ଼ିଲେ ଅର୍ଥାତ୍ ସଇତାନ୍ ମାନଙ୍କର ରାଜତ୍ୱରେ ଧର୍ମନଷ୍ଟ ହେଲେ ଏହାର ପୁନଃ ପ୍ରତିଷ୍ଠା ପାଇଁ ଭଗବାନ ବିଭିନ୍ନ ଅବତାରରେ ଆବିର୍ଭାବ ହୋଇଥାଆନ୍ତି । ଏହା ଯେମିତି ସବୁ ମଣିଷମାନଙ୍କ ପାଇଁ ଆଧ୍ୟାତ୍ମିକ ବିଶ୍ୱାସର ମୂଳାଧାର ହୋଇଯାଇଛି । ଦେବାଦେବୀଙ୍କୁ ଯେମିତି ଆରାଧନା କରାଯାଇଛି, ଅସୁରମାନଙ୍କୁ ସେମିତି ଘୃଣା ଦୃଷ୍ଟିରେ ଦେଖା ଯାଇଛି । ରାମଙ୍କ ସମୟରେ ରାବଣ, କୃଷ୍ଣଙ୍କ ସମୟରେ କଂସ, ମାତା କାଳୀଙ୍କ ସମୟରେ ମହିଷାସୁରଙ୍କୁ ନେଇ ଆମର ପୁରାଣ ସବୁ ରଚନା କରାଯାଇଛି । ଭଗବାନ ଓ ସଇତାନ୍‌ଙ୍କ ବିଷୟରେ ଅଗଣିତ ପୁସ୍ତକ ଯୁଗେ ଯୁଗେ ରଚନା କରାଯାଇଛି । ଯେଉଁଗୁଡିକ ଅମର ରଚନା ହୋଇଛନ୍ତି ଏ ପୃଥିବୀରେ, ସେଗୁଡିକ ହେଲା ଦାନ୍ତେଙ୍କ 'ଦି ଡିଭାଇନ୍ କମେଡ଼ି' ମିଲ୍‌ଟନଙ୍କ 'ପାରାଡାଇଜ୍ ଲଷ୍ଟ', ଗେଟେଙ୍କ 'ଫଷ୍ଟ୍', ବଦେଲେୟାରଙ୍କ 'ଲିଟାନିଜ୍ ଅଫ୍ ସାଟାନ୍', ଦସ୍ତୋଭସ୍କିଙ୍କ 'ଦି ପଜେସ୍‌ଡ୍ ବା ଦି ଡେଭିଲ୍', କାଜାନ୍ ଜାକିସ୍‌ଙ୍କ 'ଦି ଲାଷ୍ଟ ଟେମ୍ପ୍‌ଟେସନ୍ ଅଫ୍ କ୍ରାଏଷ୍ଟ' ଆଦି ଅନେକ । ସଇତାନ୍‌ଙ୍କ ଉପରେ ଯେତେ କଥା, କାହାଣୀ ଓ କିମ୍ବଦନ୍ତୀ ଅଛି, ଜଣେ ଜାଣିବାକୁ ଚାହିଁଲେ ଜୀବନସାରା ନିଜକୁ ନିୟୋଜିତ କରିଲେ ବି ମଧ୍ୟ ସବୁ କଥା ଜାଣି ପାରିବ ନାହିଁ । ଆଦିବାସୀ ଜଗତରେ ମଧ୍ୟ ସଇତାନ ବା 'ଡୁମା' (କୋରାପୁଟର ଭାଷା) ମାନେ ସର୍ବତ୍ର ଥାଆନ୍ତି ବୋଲି ଅସରନ୍ତି କାହାଣୀ ଶୁଣିବାକୁ ମିଳିଥାଏ । ମଣିଷ କେତେବେଳେ ଭଗବାନ ହୋଇଥାଏ ଓ କେତେବେଳେ ସଇତାନ୍ ହୋଇଥାଏ, ଏହା ଜାଣିବା ସହଜ କଥା ନୁହେଁ । କାରଣ ଭଗବାନ ଓ ସଇତାନ୍‌ଙ୍କ ଭିତରେ ପାର୍ଥକ୍ୟ ବା ଦୂରତ୍ୱ ସମ୍ଭବତଃ ଯଥେଷ୍ଟ

ନୁହେଁ । ସମାଲୋଚକମାନେ କହିଥାଆନ୍ତି ଯେ ଦିନ ରାତ୍ରି ଭଳି, ଆଲୁଅ ଅନ୍ଧାର ଭଳି, ଭଗବାନ ଓ ସଇତାନ୍ ମୁଦ୍ରାର ଦୁଇପାର୍ଶ୍ୱ । ବିଖ୍ୟାତ ବିଜ୍ଞାନ ଲେଖକ ଆଇଜାକ୍ ଆସିମୋଭ 'ସଇତାନ୍'ର କଳ୍ପନା ତାଙ୍କର କାହାଣୀ ମାଧମରେ ପ୍ରକାଶ କରିଛନ୍ତି । ସଇତାନ୍ ସତରେ ମଣିଷର ମନ ଭିତରେ କ'ଣ ଆସ୍ଥାନ ଜମାଇଛି ? ମଣିଷ କାହିଁକି ଭଗବାନଙ୍କ ଅପେକ୍ଷା ସଇତାନ୍ ପ୍ରତି ଅଧିକ ଆକର୍ଷିତ ହୋଇଛି ? ଏପରିକି ଭଗବାନ ବୁଦ୍ଧ କୁଆଡ଼େ ମୀରା ବୋଲି ଏକ ନାରୀ ବେଶରେ ଥିବା ସଇତାନ୍‌ର କବଳରେ ପଡିଛନ୍ତି ବୋଲି ବୌଦ୍ଧଧର୍ମରେ ବିଶ୍ୱାସ କରାଯାଇଛି । ବିଖ୍ୟାତ ଲେଖକ ଆଲ୍‌ଡସ୍ ହକ୍ସଲୀଙ୍କ 'ଦି ଡେଭିଲ୍‌ସ ଅଫ ଲୋଡୁନ୍' ପୁସ୍ତକ ସାହିତ୍ୟ ଜଗତରେ ଚହଳ ପକାଇଛି । ଫ୍ରାନ୍‌ସରେ ସତର ଶହ ଶତାବ୍ଦୀରେ ଲୋଡୁନ୍ ସହରରେ ଖ୍ରୀଷ୍ଟଧର୍ମର ଜଣେ ସନ୍ୟାସୀ ଗୋଟାଏ କନ୍‌ଭେଣ୍ଟର ସମସ୍ତ ସନ୍ୟାସୀନି ଉପଭୋଗ କରିଛି । କାରଣ ସେ ସଇତାନ୍‌ର କବଳରେ ଆସିଯାଇଛି । ତାକୁ ଜୀବନ୍ତ ଜଳାଯାଇଛି ଅବଶେଷରେ ।

ମୋ ଭଳି ପ୍ରତ୍ୟେକ ମଣିଷ ଜୀବନର ପ୍ରତି ମୁହୂର୍ତ୍ତରେ ଭଗବାନ ଓ ସଇତାନ୍‌ଙ୍କ ସହ ଦେଖା ସାକ୍ଷାତ କରୁଛି । କେତେବେଳେ ଭଗବାନଙ୍କ ପଟକୁ ଢ଼ଳୁଛି ତ ଆଉ କେତେବେଳେ ସଇତାନ୍ ପଟକୁ । ଆଜିର ଦିନରେ ଜଣେ ମଣିଷ ଭଗବାନ ଓ ସଇତାନ୍ ଠାରୁ ସମ ଦୂରତ୍ୱ ରଖିବ ବା ଉର୍ଦ୍ଧ୍ୱକୁ ଉଠି ନିରପେକ୍ଷ ରହିବ, ଏହା ସମ୍ଭବ ହୋଇନାହିଁ । ଏହା ହିଁ ମଣିଷର ଜୀବନର ସର୍ବଶ୍ରେଷ୍ଠ ଆହ୍ୱାନ । ଏ ଦିଗରେ ସଫଳ ହେବା ଏକ ଦୁରୂହ ବ୍ୟାପାର । ମଣିଷ ଭିତରେ ସବୁବେଳେ ସଂଗ୍ରାମ ଚାଲିଛି ଏହାକୁ ନେଇ । କିନ୍ତୁ ସାଧାରଣ ମଣିଷ ଦୁର୍ବଳ ଓ ଅସହାୟ । ନିଜର ନିଜତ୍ୱ ଓ ମଣିଷତ୍ୱକୁ ବାରମ୍ବାର ଆବିଷ୍କାର କରି ସେଥିରୁ ଶକ୍ତି ସଂଗ୍ରହ କରିବା ସମ୍ଭବ ନୁହେଁ ବୋଲି ସେ ସବୁବେଳେ ଅନୁଭବ କରିଆସୁଛି । ଏଇଥିପାଇଁ ସେ ଦ୍ୱିଧାରେ ପଡିଯାଇଛି । ଭଗବାନଙ୍କ ଭଳି ସଇତାନ୍‌ର ପ୍ରଭାବ ଓ ପ୍ରତିଷ୍ଠାକୁ ସେ କେବଳ ବିଶ୍ୱାସ କରି ଆସିଛି । ମଣିଷ ସଭ୍ୟତାର ଆରମ୍ଭରୁ ଆଜି ପର୍ଯ୍ୟନ୍ତ ସଇତାନ୍‌ମାନେ ସଶରୀରେ ରହିଆସିଛନ୍ତି । ପ୍ରତି ଐତିହାସିକ ଯୁଗରେ ଏମାନେ ଥିଲେ ଓ ଏବେ ବି ଅଛନ୍ତି । ହିଟଲର୍ ଓ ମୁସୋଲିନୀଙ୍କ ସଇତାନ୍ ପଣିଆ ଯେମିତି ଆଜିକାଲିର କଥା । ଇତିହାସର ପୃଷ୍ଠା ଉନ୍ମୋଚନ କରିଲେ ଏଇ ସଇତାନ ମାନଙ୍କ ଜୀବନ ଇତିହାସ ଉନ୍ମୋଚିତ ହୋଇଯାଏ ପାଠକମାନଙ୍କ ପାଇଁ । ମଣିଷର ଇତିହାସ ଏକ ରକ୍ତାକ୍ତ ବର୍ଣ୍ଣନା ନୁହେଁ ତ ଆଉ କ'ଣ ? ଗଣହତ୍ୟା, ଲୁଣ୍ଠନ, ଧର୍ଷଣ ଓ ଅନ୍ୟକୁ ବଳପ୍ରୟୋଗ ଦ୍ୱାରା ବଶୀକରଣକୁ ନେଇ ଇତିହାସ ରଚନା କରାଯାଇଛି । ଗଣହତ୍ୟାର ନାୟକମାନଙ୍କୁ କ'ଣ କୁହାଯିବ ? ସେମାନେ ଧର୍ମ, ଜାତି ଏବଂ ମତବାଦକୁ ନେଇ ନିଜର ହାତ ରକ୍ତରଞ୍ଜିତ କରୁଛନ୍ତି । ଏମାନଙ୍କ ଭିତରେ ଅଛନ୍ତି ଆଲେକ୍‌ଜାଣ୍ଡାର, ସିଜାର, ଚେଙ୍ଗିସ୍ ଖାନ୍, ତୈମୁରଲାଙ୍ଗ, ହିଟ୍‌ଲର୍, ଷ୍ଟାଲିନ୍, ମୁସୋଲିନୀ ଆଦି ଅନେକ । ଗୋରା ଇୟୁରୋପୀୟ ଲୋକମାନେ ଆମେରିକାର ଏବଂ ଅଷ୍ଟ୍ରେଲିଆର ସ୍ଥାନୀୟ ମୂଳ ଅଧିବାସୀମାନଙ୍କୁ ହତ୍ୟା

କରିବା ପଛରେ ଯେଉଁ ମାନସିକତା ରହିଛି ତାହାକୁ ସଇତାନ ପଣିଆ ଛଡ଼ା ଆଉ କ'ଣ କୁହାଯାଇପାରେ ? ଆଫ୍ରିକାରୁ ସ୍ଥାନୀୟ କଳା ଲୋକଙ୍କୁ ଅପହରଣ କରି କ୍ରୀତଦାସ କରିବାକୁ ଆଧ୍ୟାତ୍ମିକ ମୂଲ୍ୟବୋଧରୁ କେଉଁଭଳି ସ୍ୱୀକାର କରାଯାଇ ପାରିବ ? ମଣିଷର ଅନ୍ୟ ଏକ ମଣିଷ ପ୍ରତି ଦ୍ୱେଷ ଓ ହିଁସା, ହତ୍ୟା କରିବାର ଅଭିପ୍ରାୟ ଓ ନିଜକୁ ଧ୍ୱଂସ କରିବାର ଚିନ୍ତନକୁ ବିଶ୍ଳେଷଣ କରି ବିଖ୍ୟାତ ସମାଜଶାସ୍ତ୍ରୀ ଏରିକ୍ ଫ୍ରମ୍ ଲେଖିଛନ୍ତି 'ଦି ଆନାଟମି ଅଫ୍ ହ୍ୟୁମାନ୍ ଡେଷ୍ଟ୍ରକ୍‌ଟିଭନେସ୍'(The Anatomy of Human Destructiveness) । ମଣିଷ ଭିତରେ ସଇତାନ୍ ଘୋଡାସବାର ହୋଇ ନଥିଲେ ନିଜକୁ ଓ ଅନ୍ୟକୁ ଧ୍ୱଂସ କରିବାକୁ ସେ ଏଇଭଳି ଅମାନୁଷିକ କାର୍ଯ୍ୟରେ ଲିପ୍ତ ହୁଅନ୍ତା ନାହିଁ । ରକ୍ତ ପିପାସୁ ମଣିଷଙ୍କ ସଂଖ୍ୟା କିଛି କମ୍ ନୁହେଁ ଏ ପୃଥିବୀରେ । ଆଜି ବିଭିନ୍ନ ଦେଶରେ ଧର୍ମାନ୍ଧତା ଏତେ ବଢ଼ିଯାଇଛି ଯେ ବିଭିନ୍ନ ପ୍ରକାରର 'କଲ୍‌ଟ' ସବୁ ସୃଷ୍ଟି ହେଉଛି । ସୃଷ୍ଟି ହେଉଛନ୍ତି ଆଧୁନିକ 'ମସାୟା' ମାନେ । ଏମାନଙ୍କର ଇଙ୍ଗିତରେ ଅନେକ ଗଣ ଆତ୍ମହତ୍ୟା କରୁଛନ୍ତି । ବେଳେବେଳେ ମଣିଷମାନେ ଅନ୍ୟ ଅସହାୟ ମଣିଷମାନଙ୍କୁ ପଶୁଭଳି ଶିକାର କରୁଛନ୍ତି । ଭିଏତ୍‌ନାମ ଯୁଦ୍ଧବେଳେ ଆମେରିକୀୟ ସୈନ୍ୟମାନେ 'ମାଇଲାଇ' ଗଣ ହତ୍ୟାକରି ପୃଥିବୀସାରା ନିନ୍ଦାର ପାତ୍ର ହୋଇଛନ୍ତି । କାମ୍ବୋଡିଆରେ ପଲ୍‌ପଟ୍ଟ ଶାସନ ବେଳେ ଲକ୍ଷ ଲକ୍ଷ ଲୋକଙ୍କୁ ହତ୍ୟା କରାଯାଇଛି । ହିଟ୍‌ଲର୍ ଇହୁଦୀମାନଙ୍କ ମାରିବା ଠାରୁ ଏହା କୌଣସି ଗୁଣରେ କମ୍ ନୁହେଁ । କିଛି ବର୍ଷ ତଳେ ଆଫ୍ରିକାର ରୁଆଣ୍ଡାରେ ଯେଉଁ ନୃଶଂସ ଗଣହତ୍ୟା କରାଯାଇଥିଲା ତାହାର ଦୃଶ୍ୟ ପ୍ରତ୍ୟେକ ମଣିଷର ଲୋମ ଟାଙ୍କୁରାଇ ଦିଏ । ଷ୍ଟାଲିନ୍ ସୋଭିଏତ୍ ଋଷିଆରେ ଭିନ୍ନ ମତବାଦୀଙ୍କୁ ଯେଉଁଭଳି ସାଇବେରିଆର୍ ବନ୍ଦୀଶାଳାରେ ଯାତନା ଦେଇଥିଲେ ଓ ମାରିବାର ପଥସୁଗମ କରିଥିଲେ ତାହାକୁ ବିଶିଷ୍ଟ ଲେଖକ ସୋଲ୍‌ଜେଡ୍‌ସିନ୍ 'ଗୁଲାଗ' ବହିରେ ଲେଖିଛନ୍ତି । ପ୍ରତ୍ୟେକ ଦେଶରେ 'ଗୁଲାଗ୍'ମାନେ ରହି ଆସିଛନ୍ତି । ଆଜିକାଲି ଖବରକାଗଜରେ ହତ୍ୟା, ଧର୍ଷଣ ଓ ଅନ୍ୟାନ୍ୟ ଜଘନ୍ୟ କର୍ମର ସମ୍ବାଦ ସବୁ ବେଶି ସ୍ଥାନ ଗ୍ରହଣ କରୁଛନ୍ତି । ବିକଶିତ ଦେଶରେ ହେଉ ବା ଅବିକଶିତ ରାଷ୍ଟ୍ରରେ ଏହା ବେଶ୍ ଦେଖିବାକୁ ମିଳୁଛି । ଆର୍ଥିକ ପ୍ରଗତି ନାଁରେ ପୃଥିବୀର ଅର୍ଦ୍ଧାଧିକ ଜନସଂଖ୍ୟା ଅନାହାର ଓ କ୍ଷୁଧାରେ ମୃତ୍ୟୁବରଣ କରୁଛନ୍ତି । ଏହାକୁ ବର୍ଣ୍ଣନା କରିଛନ୍ତି ବଳିଷ୍ଠ ଭାବେ ସୁଜନ୍ ଜର୍ଜ ତାଙ୍କ ବହି 'ହାଓ ଦି ଅଦର ହାଫ୍ ଡାଇଜ୍'(How the Other Half Dies) । ଏବେ ସନ୍ତ୍ରାସବାଦୀମାନେ ସବୁ ଦେଶରେ ଜନ୍ମ ନେଇଛନ୍ତି ଓ ସେମାନଙ୍କର ସଂଖ୍ୟା ପୃଥିବୀରେ ବଢ଼ିବାରେ ଲାଗିଛି । ଏହାକୁ ଦାର୍ଶନିକ ତତ୍ତ୍ୱରେ କୁହାଯାଏ ନିହିଲିଜିମ୍ (Nihilism) । ସବୁ ମଣିଷ ଅବଚେତନ ମନରେ ଜଣେ ଜଣେ ନିହିଲିଷ୍ଟ୍ ବା ବିଧ୍ୱଂସବାଦୀ ବା ନାସ୍ତିବାଦୀ ।

ମୁଁ ପୃଥିବୀର ସଇତାନ ମାନଙ୍କ ବିଷୟରେ ଲେଖା ଯାଇଥିବା ପୁସ୍ତକମାନଙ୍କୁ ପଢ଼ିବାର ଦୁଃସାହସ କରିନାହିଁ । କିନ୍ତୁ 'ସଇତାନ ପଣିଆ' ଯେ ମଣିଷ ଜୀବନର ଏକ

ଅଚ୍ଛେଦ୍ୟ ଅଂଶ ବିଶେଷ ତାହା ଅନୁଭବ କରିବାକୁ ଚାହିଁଛି । ମଣିଷ ଭିତରକୁ କାହିଁକି ନାସ୍ତିବାଦୀ ଭାବନା ଅନୁପ୍ରବେଶ କରି ଆସେ ଓ ସଇତାନ ମାନଙ୍କୁ ଜନ୍ମଦିଏ ଏକଥାକୁ ସବୁଠାରୁ ଚମତ୍କାର ଆଲୋଚନା କରିଛନ୍ତି ଦସ୍ତୋଭସ୍କି ତାଙ୍କର ଦୁଇଟି ବିଶ୍ୱବିଖ୍ୟାତ ବହିରେ । ପ୍ରଥମଟି ହେଲା 'ଦି ପଜେସ୍‌ଡ୍ ବା ଦି ଡେଭିଲ' (The Possessed or The Devils) ଏବଂ ଅନ୍ୟଟି ହେଲା 'ଦି ବ୍ରଦରସ୍ କାରମାଜୋଭ' (The Brothers Karamazov) । ଉନବିଂଶ ଶତାବ୍ଦୀରେ ଋଷିଆର ବିପ୍ଳବ ପୂର୍ବରୁ କପରି 'ନିହିଲିଜିମ୍' ଏକ ପ୍ରଭାବଶାଳୀ ମତବାଦ ଥିଲା ଓ ମଣିଷକୁ ଗ୍ରାସ କରିଥିଲା ତାହାକୁ ଆଧାର କରି ଏ ଉପନ୍ୟାସ ଲେଖା ଯାଇଛି । ଏ ବହି ପଢ଼ିଲେ ମଣିଷର ମନସ୍ତତ୍ତ୍ୱକୁ ଆହୁରି ଗଭୀରଭାବେ ବୁଝି ହେବ । ପ୍ରକୃତରେ 'ସଇତାନ' କିଏ ଓ ତାହାର ଆଭିମୁଖ୍ୟ କ'ଣ ଏ ବହିରେ ବର୍ଣ୍ଣନା କରାଯାଇଛି । ମୁଁ ବିନା ଦ୍ୱିଧାରେ ସ୍ୱୀକାର କରିଛି ଯେ ମଣିଷକୁ ବୁଝିବା ପାଇଁ ମୁଁ ଦସ୍ତୋଭସ୍କିଙ୍କ ବିଭିନ୍ନ ଚରିତ୍ର ଓ ବିଭିନ୍ନ ସଂଳାପମାନଙ୍କର ସାହାଯ୍ୟ ନେଇଛି । ଦସ୍ତୋଭସ୍କିଙ୍କ ପରବର୍ତ୍ତୀ ସମୟରେ ପୃଥିବୀର ଶ୍ରେଷ୍ଠ ଲେଖକମାନେ ମୋ ଭଳି 'ଦସ୍ତୋଭସ୍କି'ଙ୍କ ଦ୍ୱାରା ଗୋଟାପଣେ ପ୍ରଭାବିତ ହୋଇଛନ୍ତି । ସେସବୁକୁ ଏ ସ୍ତମ୍ଭରେ ଆଲୋଚନା କରିବା ଆବଶ୍ୟକ ନିଶ୍ଚିତ । କିନ୍ତୁ ଆପଣା ବାଟରେ ଓ ଆପଣାର ଜୀବନ ଜିଜ୍ଞାସା ମାଧ୍ୟମରେ ।

❑❑❑

## ୩୦

# ଇତିହାସ ରଚିଥିବା ସଇତାନମାନେ

ପିଲାମାନେ ପୁରାଣ ଓ ପୋଥି ସବୁ ପଢ଼ିବାକୁ ମୋତେ ଖୁବ୍ ଭଲ ଲାଗୁଥିଲା । ପାଖ ପଡିଶାଘରମାନଙ୍କରୁ ମୋ ଭଉଣୀମାନେ ରାମାୟଣ, ମହାଭାରତ, ନୃସିଂହପୁରାଣ, ମତ୍ସ୍ୟପୁରାଣ, ବିଲଙ୍କା ରାମାୟଣ, ଶିବପୁରାଣ, ଭାଗବତ ଆଣି ପଢୁଥିଲେ । ମୁଁ ସ୍କୁଲରୁ ଫେରିବା ମାତ୍ରକେ ସେ ବହିନେଇ ଲୁଚାଇ ଲୁଚାଇ ପଢ଼ିବା ଏକ ଅଭ୍ୟାସ ହୋଇଥିଲା । ସବୁଠାରୁ ଭଲ ଲାଗୁଥିଲା ବିଭିନ୍ନ ଅସୁରମାନଙ୍କ ସହ ଲଢ଼େଇ, ଶର କଟାକଟି । ଅସୁରମାନେ ବ୍ରହ୍ମା, ବିଷ୍ଣୁ ବା ଶିବଙ୍କ ଠାରୁ ତପସ୍ୟା କରି ବର ଲାଭ କରି ମହାପ୍ରତାପୀ ହେବେ ଓ ପୃଥିବୀର ଖୁବ୍ ଅନ୍ୟାୟ ଅତ୍ୟାଚର କରିବେ । ଇନ୍ଦ୍ର ଆସନ ଟଳମଳ ହେବ । ପୁଣି ବିଷ୍ଣୁଙ୍କ ପାଖରେ ଦେବାଦେବୀମାନେ ଅଭିଯୋଗ କରିବେ । ଅସୁର ମରିବା ପାଇଁ ଭଗବାନ ବିଷ୍ଣୁ କୌଣସିନା କୌଣସି ଅବତାର ରୂପେ ପୃଥିବୀରେ ଜନ୍ମଲାଭ କରିବେ । ଅସୁର ସହ ଲଢ଼େଇ ହେବ । ଅସୁରବଳ ଓ ମଣିଷରୂପ ନେଇଥିବା ବିଭିନ୍ନ ଦେବତା ମାନେ ରଚିବେ ମହାସମର । ଶେଷରେ ଅସୁରବଳ ନିପାତ ହେବେ ଓ ପୃଥିବୀରେ ଶାନ୍ତି ପ୍ରତିଷ୍ଠା ହେବ । ପ୍ରତ୍ୟେକ ପୁରାଣରେ ଏଇକଥା ବିଭିନ୍ନ ଢ଼ଙ୍ଗରେ ଓ ଶୈଳୀରେ ଲେଖାଯାଇଛି ଯାହାଜଣେ ପଢ଼ିଲେ ମଣିଷର ଚିନ୍ତାର ପରିସର କେତେ ବ୍ୟାପକ ସହଜରେ ଜାଣିହେବ । ମୋଟ ଉପରେ କହିବାକୁ ଗଲେ ଦେବ ଓ ଦାନବ ପୃଥିବୀରେ ସବୁବେଳେ ସଂଘର୍ଷରତ । ଦେବମାନେ ଦାନବମାନଙ୍କ ଉପରେ ଜୟଲାଭ କରିଛନ୍ତି ପ୍ରତ୍ୟେକ ଯୁଦ୍ଧରେ । ଲକ୍ଷ୍ୟ ଅଲକ୍ଷ୍ୟରେ ଏ ଲଢ଼େଇ ଯେମିତି ଯୁଗ ଯୁଗ ଧରି ଚାଲି ଆସିଛି ଓ ଭବିଷ୍ୟତରେ ଚାଲିଥିବ । ପୁରାଣ ପଢ଼ିବା ସରିଲାପରେ ଇତିହାସ ପଢ଼ିବା ଆରମ୍ଭ ହୁଏ । ଇତିହାସରେ ନାୟକ ଓ ଖଳନାୟକ ଭରି ରହିଛନ୍ତି । ପ୍ରତ୍ୟେକ ଯୁଗରେ ସେମାନେ ଆବିର୍ଭାବ ହୋଇଛନ୍ତି ଓ ଲୁପ୍ତ ବି ହୋଇଛନ୍ତି । ଇତିହାସ ଲେଖିଥିବା ଐତିହାସିକମାନେ କାହାକୁ ନାୟକ ଓ କାହାକୁ ଖଳନାୟକ କରିବେ, କାହାକୁ ସାଧୁସନ୍ଥ ଓ କାହାକୁ ସଇତାନ କରିବେ ତାହାର କୌଣସି ନିର୍ଦ୍ଦିଷ୍ଟ ଢାଞ୍ଚା ନାହିଁ । ସାଧୁସନ୍ଥମାନେ ପୃଥିବୀରେ ନୂତନ ଆଲୋକ ଆଣିଥିବାବେଳେ ସଇତାନମାନେ ଅନ୍ଧାର ଭିତରକୁ ପୃଥିବୀକୁ ଠେଲି ଦେଇଛନ୍ତି । କିନ୍ତୁ ପ୍ରତ୍ୟେକ ଗୋଷ୍ଠୀଙ୍କର ସ୍ୱତନ୍ତ୍ରସ୍ଥାନ ଅଛି । ମଣିଷ ସେମାନଙ୍କୁ ଭୁଲିପାରିବ ନାହିଁ । ଆଜି ମଧ୍ୟ ସାଧୁସନ୍ଥ ଓ ସଇତାନମାନଙ୍କର ତାଲିକା ପ୍ରସ୍ତୁତ ହେଉଛି । କେଉଁମାନେ ଶୀର୍ଷସ୍ଥାନରେ ରହିବେ, ସେଥିପାଇଁ ଦୁନିଆଁସାରା ମତାମତ ଲୋଡା ଯାଉଛି । କିଏ ସବୁଠାରୁ ଶ୍ରେଷ୍ଠ ସନ୍ଥ ଓ କିଏ

ସବୁଠାରୁ ବଡ଼ ସଇତାନ, ତାହା ବୋଧହୁଏ ଏପର୍ଯ୍ୟନ୍ତ ନିର୍ଣ୍ଣୟ କରାଯାଇନାହିଁ ।

ସାଧୁସନ୍ଥମାନେ ସାଧାରଣ ଓ ସରଳ ବିଶ୍ୱାସୀମାନଙ୍କୁ ଯେଉଁଭଳି ସହଜରେ ଆକର୍ଷଣ କରିଥାଆନ୍ତି, ସଇତାନମାନେ ମଧ୍ୟ ସେଇଭଳି ଆକର୍ଷଣ କରିଥାଆନ୍ତି । ଏହାର ଅନେକ ଉଦାହରଣ ଅଛି ଇତିହାସରେ । ମୁଁ ଭଣ୍ଡବାବାମାନଙ୍କର କ୍ରିୟାକଳାପ ପଢୁଛି, ଶୁଣୁଛି ଓ ସେମାନଙ୍କର ସଇତାନପଣିଆ କେମିତି ବଢ଼ିବାରେ ଲାଗିଛି ତାହା ଅନୁଭବ କରି ବିଚଳିତ ହୋଇଛି । ସାଧୁସନ୍ଥମାନେ ଆଜିକାଲି ପ୍ରଭାବ ବିସ୍ତାର କରିବାରେ ଯେମିତି ପଛେଇ ଯାଇଛନ୍ତି । ଏବେ ସବୁଠାରୁ ବଡ଼ ଆଧ୍ୟାତ୍ମିକ ସମସ୍ୟା ହେଉଛି ଯେ ଭଣ୍ଡବାବାମାନଙ୍କର ଅନୁଗାମୀଙ୍କ ସଂଖ୍ୟା ଖୁବ୍ ବଢ଼ିବାକୁ ଆରମ୍ଭ ହୋଇଛି । କିଏ ମଠଟିଏ ଗଢ଼ିଛି ତ ଆଉକିଏ ମନ୍ଦିରଟିଏ ଗଢ଼ିଛି । କିଏ ଯାଦୁ ଦେଖାଇଲାଣି ତ ଆଉ କିଏ ପାଣି ଉପରେ ଚାଲିବା ବା ଆକାଶରେ ଉଠିବାର ମାୟା ସୃଷ୍ଟିକରିଲାଣି । ବ୍ୟଭିଚାରର ସମ୍ବାଦସବୁ ପ୍ରକାଶ ପାଇ ଆସୁଛି ଅନେକ ବର୍ଷଧରି । ସାଧୁସନ୍ଥମାନଙ୍କର ଧ୍ୟାନ, ଜ୍ଞାନ ଓ ତପସ୍ୟା ପରିବର୍ତ୍ତେ ସଇତାନମାନଙ୍କର ଭୋଗ, ମୋହ ଓ ପାପାଚାର ଆଜି ଏ ପୃଥିବୀରେ ଯେମିତି ରାଜତ୍ୱକରୁଛି । ମୁଁ ଏଇ ଭଣ୍ଡବାବାମାନଙ୍କ ସହ ପ୍ରତ୍ୟକ୍ଷ ବାର୍ତ୍ତାଳାପ କରିବାକୁ କେତେଥର ପ୍ରୟାସ କରିଛି । ଏମାନଙ୍କ ଭିତରେ ଥିବା ଲୁକ୍କାୟିତ ସମ୍ମୋହନ ଶକ୍ତି କ'ଣ ତା'କୁ ଆବିଷ୍କାର କରିବା ପାଇଁ ଚାହିଁଛି । କିନ୍ତୁ ଏକ ବୌଦ୍ଧିକ ସ୍ୱାଭିମାନ ତାହା ଏପର୍ଯ୍ୟନ୍ତ ସମ୍ଭବ କରାଇପାରି ନାହିଁ । ସଇତାନମାନଙ୍କୁ ଚିହ୍ନିବା ପାଇଁ ନିର୍ଦ୍ଦିଷ୍ଟ ରଣ କୌଶଳ ଅଛି ବା ସାଧୁସନ୍ଥ ବା ସଇତାନମାନଙ୍କୁ ଚିହ୍ନଟ କରିବାକୁ 'ଲିଟ୍‌ମସ୍ ଟେଷ୍ଟ୍' ପ୍ରସ୍ତୁତ ହୋଇ ସାରିଛି କି ?

ଇତିହାସରେ ସଇତାନମାନଙ୍କର ଯେଉଁ ତାଲିକା କରାଯାଇଛି ତାହା ବଦଳିବାରେ ଲାଗିଛି । ସବୁଠାରୁ ବଡ଼ ସଇତାନ କିଏ ବୋଲି ଯଦି ପ୍ରଶ୍ନ କରାଯାଏ, ତେବେ ଏହାର ସମ୍ଭବତଃ ନିର୍ଦ୍ଦିଷ୍ଟ ଉତ୍ତର ନାହିଁ । କିନ୍ତୁ ଏହି ପଦ ପାଇବା ପାଇଁ ହିଟ୍‌ଲର ବା ଷ୍ଟାଲିନ୍‌ଙ୍କ ଭିତରେ ତୀବ୍ର ପ୍ରତିଯୋଗିତା ହୋଇଛି । ନାଜୀ ହିଟ୍‌ଲର ପ୍ରାୟ ଦେଢ଼କୋଟି ଇହୁଦୀ ଅନ୍ୟମାନଙ୍କୁ ନିର୍ମମ ହତ୍ୟା କରିଥିବାବେଳେ, ଷ୍ଟାଲିନ୍ ଋଷିଆରେ ଦୁଇକୋଟିଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଛନ୍ତି । ଅତ୍ୟାଚାରିତଙ୍କ ଭିତରୁ ଅନେକ ସାଇବେରିଆର କାରାଗାରରେ ମରିଛନ୍ତି । କାମ୍ବୋଡିଆର ପଲ୍ ପଟ୍ (Pol Pot) ବା ଉଗାଣ୍ଡାର ଇଦି ଅମୀନ୍ ମଧ୍ୟ ମଣିଷଙ୍କ ଉପରେ ଯେଉଁ ଅମାନବୀୟ ହିଂସା ଲଦିଛନ୍ତି ତାହା ମଣିଷର କଳ୍ପନାର ବାହାରେ । ଏମାନେ ସବୁ ଶାସନଗାଦିରେ ରହି ନିଜର ସଇତାନ ପଣିଆ ପ୍ରଦର୍ଶନ କରିଛନ୍ତି । କିନ୍ତୁ ଶାସନଗାଦିକୁ ପ୍ରଭାବିତ କରି ଅନ୍ୟାୟ, ଅତ୍ୟାଚାର ଓ ବିଭିଚାରକୁ ମାତ୍ରାଧିକ କରିଥିବା ସଇତାନମାନଙ୍କ ସଂଖ୍ୟା କମ୍ ନୁହେଁ । ଯୁଗେ ଯୁଗେ ଏଇ ବ୍ୟଭିଚାରୀମାନେ ଇତିହାସ ସୃଷ୍ଟି କରିଛନ୍ତି । ଏମାନଙ୍କ ତାଲିକାର ଆଗରେ ଅଛନ୍ତି ଋଷିଆର କୁଖ୍ୟାତ ରାସ୍‌ପୁଟିନ୍ (Rasputin) । ପୂରା ନାମ ଗ୍ରୀଗୋରୀ ୟେଫିମୋଭିକ ରାସ୍‌ପୁଟିନ । ଋଷିଆର ଶେଷ ଜାର୍ ହେଉଛନ୍ତି ନିକୋଲାସ୍ ଓ ଜାରୀନା ହେଉଛନ୍ତି ଆଲେକ୍‌ଜାଣ୍ଡ୍ରା । ସେମାନଙ୍କର ପୁଅ 'ରାଜକୁମାର ଆଲେକ୍‌ସୀ'ଙ୍କର ଏକ

ଦୁରାରୋଗ୍ୟ ରୋଗ ଯେଉଁଥିରେ ରକ୍ତ ଜମାଟ ବାନ୍ଧେ ନାହିଁ । ସେମାନେ ରାସ୍‌ପୁଟିନ୍ ଦ୍ୱାରା ଆକର୍ଷିତ୍ ହୋଇଛନ୍ତି । ରାସ୍‌ପୁଟିନ୍ ଜଣେ କୃଷକ ହେଲେ ବି ଅଦ୍‌ଭୁତ ଶକ୍ତିର ଅଧିକାରୀ ବୋଲି ସବୁଆଡେ ପ୍ରଚାର ହୋଇଥାଏ । ସେ କୁଆଡେ ସବୁରୋଗ ଛୁଇଁଦେଇ ଭଲ କରିଦିଏ । ଏହା ପୂର୍ବରୁ ଯୌନକ୍ରିୟା ଓ ଅନ୍ୟାନ୍ୟ ବ୍ୟଭିଚାରରେ ସେ ସମ୍ପୃକ୍ତ ହୋଇ ନାମପାଇଥାଏ ରାସ୍‌ପୁଟିନ୍ । ଜାର୍‌ଙ୍କ ରାଜପ୍ରାସାଦକୁ ରାଜକୁମାରଙ୍କୁ ଭଲ କରିବା ପାଇଁ ସେ ଆମନ୍ତ୍ରିତ ହୋଇଥିଲା । ରାସ୍‌ପୁଟିନ୍ ରାଜକୁମାରଙ୍କ ରୋଗକୁ ଭଲ କରିଦେଇଥିଲା । କିନ୍ତୁ ଯିବା ପୂର୍ବରୁ ଜାର୍ ଦମ୍ପତିଙ୍କୁ ସତର୍କବାଣୀ ଶୁଣାଇଥିଲେ ଯେ ରଷିଆର ସିଂହାସନ ତାଙ୍କ ସହ ସମ୍ପର୍କ ରକ୍ଷା ଦ୍ୱାରା ସୁରକ୍ଷିତ ହୋଇରହିଥିବ । ପ୍ରଥମ ପୃଥିବୀ ମହାଯୁଦ୍ଧ ମାଡ଼ି ଆସୁଥାଏ । ଜାର୍‌ଙ୍କ ସମର୍ଥନ ପାଇ ରାସ୍‌ପୁଟିନ୍ ତାଙ୍କର ଯୌନ କ୍ରିୟା ଓ ଅନ୍ୟାନ୍ୟ ବ୍ୟଭିଚାର କେତେଗୁଣ ବଢ଼ାଇଥିଲେ । ସେ ଏକ ବିଶ୍ୱାସ ସୃଷ୍ଟି କରିଥିଲା ଯେ ସେ ଜଣେ ଆଧାତ୍ମିକ ପୁରୁଷ ଓ ତାହା ସହ ସହବାସ କରିଲେ ଯେକୌଣସି ମହିଳା ନିରୋଗ ରହିବେ । ଏହି କାର୍ଯ୍ୟକଳାପ ଦ୍ୱାରା ରାସ୍‌ପୁଟିନ୍ ଖୁବ୍ ନିନ୍ଦିତ ହେଲା ସତ, ଜାର୍ ନିକୋଲାସ୍ କିନ୍ତୁ ତାହାର କୁକର୍ମକୁ ବିଶ୍ୱାସ କରୁନଥିଲେ । ଅବଶେଷରେ ରଷିଆର ପ୍ରଧାନମନ୍ତ୍ରୀ ଜାରଙ୍କୁ ରାସ୍‌ପୁଟିନ୍ ବିଷୟରେ ଏକ ଅଭିଯୋଗ ଫର୍ଦ୍ଦ ଦେଇଥିଲେ । ଏଥିରେ ଜାର୍ ତାଙ୍କୁ 'ଦୂର ଜାଗାକୁ ପଠାଇଥିଲେ । କିନ୍ତୁ ଜାରୀନା ଆଲେକ୍‌ଜାଣ୍ଡ୍ରା ତାଙ୍କୁ କେଇମାସ ଭିତରେ ପୁଣି ଫେରାଇ ଆଣିଥିଲେ । ପ୍ରଥମ ବିଶ୍ୱ ମହାଯୁଦ୍ଧରେ ଜାର୍ ନିକୋଲାସ୍ ସୈନ୍ୟବାହିନୀ ସହ ତାକୁ ହତ୍ୟା କିରବାକୁ ଅନେକ ଷଡଯନ୍ତ୍ର କରାଯାଇଥିଲା । ଶେଷରେ ଡିସେମ୍ବର ୧୯୧୬ ମସିହାରେ ତା'କୁ ବିଷଦେଇ ହତ୍ୟା କରିବାକୁ ଚେଷ୍ଟା କରାଗଲା । କିନ୍ତୁ ସେ ମରିନଥିଲା । ପରେ ପରେ ଷଡ଼ଯନ୍ତକାରୀମାନେ ତା'କୁ ଗୁଳିକରିଥିଲେ କେତେବାର । ତଥାପି ସେ ମରି ନଥିଲା । ଷଡଯନ୍ତକାରୀମାନେ ଶେଷରେ ତାହାର ହାତଗୋଡ ବାନ୍ଧି ନଦୀ ଗର୍ଭକୁ ଫିଙ୍ଗି ଦେଇଥିଲେ । ରାସ୍‌ପୁଟିନ ଅବଶେଷରେ ନିଭା ନଦୀରେ ବୁଡ଼ି ମରିଥିଲା ଏବଂ ଏକ ନାରକୀୟ ଅଧାୟର ଶେଷ ହୋଇଥିଲା । କିନ୍ତୁ ରାସ୍‌ପୁଟିନ୍‌ର ପ୍ରଭାବ ଏତେ ବେଶୀ ଥିଲା ଯେ ତାହାର ମୃତ୍ୟୁ ପରେ ମଧ ଜାରୀନା ଆଲେକ୍‌ଜାଣ୍ଡ୍ରା ତାହାର ନୀତିସବୁ ଅବାରିତ ରଖିଥିଲେ । କିନ୍ତୁ ରଷିଆରେ ବିପ୍ଳବ ଆରମ୍ଭ ହୋଇଥିଲା ୧୯୧୭ ମସିହାରେ ଓ ଜାର୍ ଦମ୍ପତିକୁ ଗାଦିଚ୍ୟୁତ କରାଯାଇ ହତ୍ୟା କରାଯାଇଥିଲା । ମୁଁ ନିକୋଲାସ୍ ଓ ଆଲେକ୍‌ଜାଣ୍ଡ୍ରାଙ୍କ ଉପରେ ଲିଖିତ ବହି ଓ ଚଳଚ୍ଚିତ୍ର ସହ ପରିଚିତ ହେବା ପରେ ରାସ୍‌ପୁଟିନ୍ ଚରିତ୍ରକୁ ଆଉ ଟିକିଏ ସ୍ପଷ୍ଟଭାବେ ବୁଝି ପାରିଥିଲି । ସଇତାନର ଏକ ଅବତାର ବୋଲି ସେ ଇତିହାସରେ ସ୍ଥାନ ପାଇଥିଲା ।

ସଇତାନମାନଙ୍କର ବିଭିନ୍ନ ଧର୍ମରେ ଯେଉଁସବୁ କଳ୍ପନା କରାଯାଇଛି ତାହାର ରୂପ ଦେଇଛନ୍ତି ଚିତ୍ରକରମାନେ । ମଣିଷ ମନର ଅନେକ ଆନ୍ଦୋଳିତ ଚିତ୍ରକଳ୍ପ ଏଇଭଳି ରୂପାୟିତ ହୋଇଛି ଯୁଗେ ଯୁଗେ । ସେ ହିନ୍ଦୁଧର୍ମ ହେଉ କି ଖ୍ରୀଷ୍ଟିଆନ୍ ଧର୍ମ ହେଉ, ବୌଦ୍ଧଧର୍ମ ହେଉ କି ଆଦିମ ଆଦିବାସୀମାନଙ୍କ ଧର୍ମ ହେଉ, ସବୁଠି ସ୍ଥାନ ପାଇଛି । ସଇତାନ ସଶରୀରେ ଉପସ୍ଥିତ ହୋଇଛି ମଣିଷ ସମାଜ ଭିତରେ । ଚିତ୍ରକରର କଳ୍ପନା

ପ୍ରସ୍ତୁତ ସଇତାନ ଓ ସଶରୀରେ ଉପସ୍ଥିତ ହୋଇଥିବା ସଇତାନ ମାନଙ୍କର ଏକ ତୁଳନା କରାଯାଇପାରେ । ସଇତାନକୁ ରୂପଦେବାକୁ ଯାଇ ଚିତ୍ରକର ତାହାର ମୁଣ୍ଡରେ ଶିଙ୍ଗ କରିଛି ତ ପଛରେ ଲାଞ୍ଜ ଯୋଡି ଦେଇଛି । କେତେବେଳ ଡେଣା ମଧ ଲଗାଇ ଦେଇଛି । କେତେବେଳେ ଦାନ୍ତ ଓ ଜିହ୍ୱା ମଧ ଦେଖାଇ ଦେଇଛି । କିନ୍ତୁ ଇତିହାସ ରଚିଥିବା ସଇତାନମାନଙ୍କୁ ଦେଖିଲେ ବିଶେଷ କିଛି ନୂତନତ୍ୱ ଦେଖିହେବ ନାହିଁ । ମାନସିକତାର ପରିପ୍ରକାଶ ହୋଇଛି ମୁଖମଣ୍ଡଳରେ କି ? ଜଣେ କେବେହେଲେ ଜାଣି ପାରିବ ନାହିଁ ଯେ ହିଟ୍‌ଲର, ଷ୍ଟାଲିନ୍, ପଲ୍‌ପ୍ଲଟ୍, ଇଦି ଅମୀନ୍ ଆଦିଙ୍କ ମୁଖ ମଣ୍ଡଳରେ ସଇତାନ ପଣିଆ ଆଭାସ । ମୁହଁ ମାନସିକତାର ଦର୍ପଣ ନୁହେଁ । ଚେହେରାରୁ ସଇତାନକୁ ଚିହ୍ନି ହୁଏ ନାହିଁ । ସେମାନଙ୍କ କାର୍ଯ୍ୟକଳାପ ହିଁ ନିର୍ଣ୍ଣୟ କରେ ସେମାନେ ସାଧୁସନ୍ଥ କି ସଇତାନ୍ ।

ଏବେ କେତେବର୍ଷ ହେଲା ଅନେକ ହତ୍ୟା ଘଟଣା ପ୍ରକାଶ ପାଇଛି ଗଣମାଧମରେ । ସେଗୁଡିକ ଜଣେ ଜଣେ 'ସିରିଆଲ୍ କିଲର୍' । ଜଣକ ପରେ ଜଣକୁ ସେମାନେ ହତ୍ୟା କରିଥାଆନ୍ତି । 'ଜ୍ୟାକ୍ ଦି ରିପର୍' କଥା ପ୍ରତ୍ୟେକ ମଣିଷ ମନରେ ଭୟ ସୃଷ୍ଟିକରେ । ଆଉ ମଧ ଭୟ ସୃଷ୍ଟିକରେ 'ଚେଙ୍ଗିସ୍ ଖାନ୍, ଆଟିଲା ଦି ହୁନ୍, ନୀରୋ, କାଲିଗୁଲା ଆଦି ଅନେକ ଐତିହାସିକ ଚରିତ୍ର ଯେଉଁମାନେ ପୃଥିବୀ ପୃଷ୍ଠରେ ନିଜର ଅପକୀର୍ତ୍ତି ରଖିଯାଇଛନ୍ତି । 'ଜ୍ୟାକ୍ ଦି ରିପର୍' ଭଳି ବିଭିନ୍ନ ଦେଶରେ ହତ୍ୟାକରୀମାନେ ବେଶ୍ ସଂଖ୍ୟାରେ ଜନ୍ମ ନେଇଛନ୍ତି । ଭାରତରେ ନିଠାରୀରେ ପିଲାଙ୍କ ହତ୍ୟାକରୀ ଦେଶସାରା ଚହଲ ପକାଇଥିଲା । ଏ ଦେଶରେ ଅନେକ ଭଣ୍ଡବାବା ଯେ ରାସ୍‌ପୁଟିନ୍‌ଙ୍କ ବଂଶଧର ଏକଥା ସ୍ୱୀକାର କରାଯାଇପାରେ । ଏମାନଙ୍କ ଦ୍ୱାରା କରାଯାଉଥିବା ଅନେକ ଜଘନ୍ୟ ଅପକର୍ମ ଲୋକ ଲୋଚନକୁ ଆସିଲା ପରେ ତଥାକଥିତ ବାବାମାନଙ୍କ ପ୍ରତି ସାଧାରଣ ଲୋକଙ୍କ ବିଶ୍ୱାସ ଅନେକ ଗୁଣରେ କମିଯାଇଛି । କିଛି ଦିନ ତଳେ ଏକ ସମ୍ବାଦ ପୃଥିବୀସାରା ଘୃଣା ଓ ନିନ୍ଦା ସୃଷ୍ଟି କରିଥିଲା । ଘଟଣାଟି ଘଟିଥିଲା ଇୟୁରୋପର ଅଷ୍ଟ୍ରିଆ ଦେଶରେ । ସେଠାରେ ଯୋସେଫ୍ ଫ୍ରିଲ୍ ( Joseph Fritzl) ନାମରେ ଜଣେ ବ୍ୟକ୍ତି ନିଜ ଝିଅକୁ ଘରେ ୨୪ବର୍ଷ ଧରି ଗୃହ ବନ୍ଦୀ କରି ରଖିଥିଲା । ସେ ନିଜ ଝିଅକୁ ପ୍ରାୟ ୩୦୦୦ ଥର ଧର୍ଷଣ କରିଥିଲା । ଝିଅଟି ସାତଥର ଗର୍ଭବତୀ ହୋଇଥିଲା ଓ ସନ୍ତାନ ଜନ୍ମ କରିଥିଲା । ସମସ୍ତଙ୍କୁ ଯୋସେଫ ଘରଭିତରେ ବନ୍ଦୀ କରି ରଖୁଥିଲା । ଏବେ ଯୋସେଫ ଫ୍ରିଲ୍‌କୁ ପୃଥିବୀର ସର୍ବଶ୍ରେଷ୍ଠ ସଇତାନ୍ ବୋଲି ଲୋକେ ବାଛିଛନ୍ତି ।

କ୍ରିୟାକଳାପରେ ସଇତାନ ହୋଇଥିବା ଓ ମାନସିକତାରେ ସଇତାନ୍ ହୋଇଥିବା ସଇତାନମାନଙ୍କ ଭିତରେ କିଛିଟା ପାର୍ଥକ୍ୟ ରହିଛି । ସମ୍ଭବତଃ ଦୃଢ଼ମାନସିକତା ହିଁ ବେଶୀ ସଇତାନ ସୃଷ୍ଟି କରିବାରେ ସାହାଯ୍ୟ କରିଥାଏ । ଏକଥା ଦସ୍ତୋଭସ୍କି ତାଙ୍କ ଉପନ୍ୟାସମାନଙ୍କରେ ପ୍ରମାଣ କରିଛନ୍ତି । ଇତିହାସରେ ହେଉ କି ଉପନ୍ୟାସରେ ହେଉ ସଇତାନମାନେ ବଞ୍ଚି ରହିଛନ୍ତି ।

❐❐❐

## ୩୧

# ଆମ ଭିତରେ ଥିବା ସଇତାନମାନେ

ସଇତାନମାନେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳସାରା ଭରି ରହିଛନ୍ତି ବୋଲି କେହି ଅସ୍ୱୀକାର କରିବେ କି ? ସେମାନେ କେବଳ ପାତାଳର ଗଭୀର ପ୍ରଦେଶରେ ରହନ୍ତି ନାହିଁ । ସେମାନେ ଆମ ଗହଣରେ ଥାଆନ୍ତି ଓ ଦେବତାଙ୍କ ଭିତରେ ବି ? ଆମର ଧର୍ମ ଶାସ୍ତ୍ର, କଥା ଓ କାହାଣୀ, ଚିତ୍ର ଓ ପାଷାଣ ଖୋଦିତ ମୂର୍ତ୍ତି, ନାଟକ ଓ ମୁଖା ମଣିଷଙ୍କ ଅଭିନୟ ଭିତରେ ବି ଅଛନ୍ତି । ସେମାନଙ୍କୁ ଦେଖି ହୁଏ ଅଥଚ ଦେଖି ବି ହୁଏ ନାହିଁ । କଳ୍ପନା କରି ହୁଏ ସତ କିନ୍ତୁ କଳ୍ପନାତୀତ ବି ସେମାନେ । ସଇତାନମାନଙ୍କର ଅସଲ ବର୍ଣ୍ଣନା ଯଦି କିଏ କରିଥାଏ ସେ ହେଉଛନ୍ତି ଋଷୀୟ ଲେଖକ ଦସ୍ତୋଭସ୍କି । ସେ ସୃଷ୍ଟି କରିଥିବା ପ୍ରତ୍ୟକ ଚରିତ୍ର ଭିତରେ ସଇତାନ ଓ ଭଗବାନଙ୍କର ପ୍ରତିଫଳନକୁ ହିଁ ଉଲ୍ଲେଖ କରିଛନ୍ତି । ମଣିଷର ମନ ଗହନରେ ସଇତାନ ଓ ଭଗବାନଙ୍କର ଭିତରେ ଥିବା ସମ୍ପର୍କକୁ ସୂକ୍ଷ୍ମ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ରଚିତ 'ଦି ଡେଭିଲ' ଉପନ୍ୟାସରେ ସେ ପ୍ରକୃତରେ ସଇତାନମାନଙ୍କର ଅସଲ ପରିଚୟ ଦେଇଛନ୍ତି । ଉପନ୍ୟାସର ନାୟକ ଷ୍ଟାଭ୍ରୋଜିନ୍ ଏକ ଚରିତ୍ର । ଘର ପାଖର ଗୋଟାଏ ଝିଅକୁ ଆକର୍ଷିତ କରିଛି ଓ ତାହାକୁ ପ୍ରଲୋଭନ ଦେଖାଇ ଧର୍ଷଣ କରିଛି । ଝିଅଟି ବିବାହ ପାଇଁ ପ୍ରସ୍ତାବ ଦେବା ଜାଣି ତାହାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଝିଅଟି ଲଜ୍ୟାରେ ଆତ୍ମହତ୍ୟା କରିଛି । ଷ୍ଟାଭ୍ରୋଜିନ୍ କବାଟ ଫାଙ୍କରେ ଝିଅଟିର ଆତ୍ମହତ୍ୟା ଦେଖୁଛି ଅଥଚ ସେ ତାହାକୁ ବଞ୍ଚାଇବାକୁ ଚେଷ୍ଟା କରୁନାହିଁ । ଷ୍ଟାଭ୍ରୋଜିନ୍ ପାଗଳାମୀ ବା ମାନସିକ ବିକୃତିର ସହ ଏହା କରିନଥିଲା । ଏହା ସଚେତନ ଓ ସୁସ୍ଥ ମନରେ କରିଥିଲା ବୋଲି ଦସ୍ତୋଭସ୍କି କହିଛନ୍ତି । ଏହା ହିଁ ସଇତାନମାନଙ୍କର ଅସଲ ସଂଜ୍ଞା ବୋଲି ଆଜି ପର୍ଯ୍ୟନ୍ତ ଆମ ସମସ୍ତଙ୍କର ବିଋରବୋଧରେ ସ୍ଥାନ ପାଇଛି ।

ପ୍ରକୃତରେ ଆମ ଗହଣରେ ଥିବା ସଇତାନମାନଙ୍କ ଉପସ୍ଥିତିର ସୂତ୍ରକୁ ଧରି ଚିହ୍ନଟ କରିବାରେ କିଛି କଷ୍ଟ ବା ସଂଶୟ ରହିବ ନାହିଁ ବୋଲି ମୁଁ ବିଶ୍ୱାସ କରିଛି । ଓଡ଼ିଆ ଉପନ୍ୟାସମାନଙ୍କରେ ଏମାନଙ୍କର କଥା ଉଲ୍ଲେଖ କରାଯାଇଛି ସରଳ ଓ ସ୍ପଷ୍ଟ ଭାବରେ । "ଛ'ମାଣ ଆଠଗୁଣ୍ଠ"ର ରାମଚନ୍ଦ୍ର ମଙ୍ଗରାଜ ହେଉ ବା "ପରଜା" ଉପନ୍ୟାସର ସାହୁକାର ରାମଚନ୍ଦ୍ର ବିଶୋଇ ହେଉ, ପ୍ରକୃତରେ ସେଇମାନଙ୍କୁ ହିଁ ସଇତାନ ବୋଲି ସ୍ୱୀକାର କରିବାକୁ

ହେବ । ସେମାନେ ଯେଉଁଭଳି ଜାଣି ବୁଝି ଶୋଷଣ ଅତ୍ୟାଚାର କରିଛନ୍ତି ତାହାହିଁ ହେଉଛି ସଇତାନମାନଙ୍କର ମନସ୍ତତ୍ତ୍ୱ । ରୋମ ନଗରୀ ନିଆଁରେ ଜଳୁଥିବା ବେଳେ ସମ୍ରାଟ ନୀରୋ ଯେଉଁଭଳି ବଂଶୀବାଦନ କରୁଥିଲେ ଆମର ଶାସକ ମାନେ ସେହିଭଳି କାର୍ଯ୍ୟ କରି ଅନ୍ୟ ଏକ ନାମ ଅର୍ଜନ କରିଛନ୍ତି । ଓଡ଼ିଶାର ଜଣେ ଶାସକ ଯନ୍ତ୍ର, ତନ୍ତ୍ର, ମନ୍ତ୍ରର ସାହାଯ୍ୟ ନେଇ ସଇତାନର ତାଲିକାରେ ଆଗରେ ଅଛନ୍ତି ବୋଲି ଜଣେ କର୍ମୀ ମୋତେ ସୂଚନା ଦେଇଥିଲେ । ଏଇ ଶାସକ ଜଣଙ୍କ ଓଟ ବଳି ଠାରୁ ଅନେକ ପଶୁ ବଳିର ସାହାଯ୍ୟ ନେଇ ନିଜକୁ ପ୍ରଭାବଶାଳୀ କରିବା ସହ ଶତ୍ରୁମାନଙ୍କୁ ନଷ୍ଟ କରିବାର ପ୍ରୟାସ କରିଛନ୍ତି ବୋଲି ଚପା ଗୁଜବ ଶୁଣାଯାଏ । ଓଟ ରକ୍ତରେ ସ୍ନାନ କରିଲେ କୁଆଡେ ସିଦ୍ଧିପ୍ରାପ୍ତ ହୁଏ ବୋଲି ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ଆହୁରି ମଧ୍ୟ କୁହାଯାଇଛି ଯେ ଜଣେ କୁଆଡେ ଅନ୍ୟମାନଙ୍କର ସମ୍ଭୋଗ ବା ରତିକ୍ରିୟାକୁ ଦେଖିଲେ ଚରମ ଆତ୍ମସନ୍ତୋଷ ଲାଭ କରିବା ସମ୍ଭବ ହୁଏ । ଏଥିପାଇଁ ଏଇ ଶାସକ ଜଣକ ରାତ୍ରିର ଗଭୀରତାରେ ଅଭିସାରରେ ବାହାରି ପଡ଼ନ୍ତି ଓ ବ୍ୟଭିଚାରର ବିଭିନ୍ନ ସ୍ୱାଦ ଚାଖିବାକୁ ଘୁରିବୁଲନ୍ତି । ଏହି ମଣିଷଙ୍କର ଇଙ୍ଗିତରେ ବ୍ୟଭିଚାର, ଶୋଷଣ, ଅନ୍ୟାୟ ଓ ଦୁର୍ନୀତିର ଶାଖାପ୍ରଶାଖା ପ୍ରସାରିତ ହୁଏ । ଏହାଙ୍କ ଅଙ୍ଗୁଳି ନିର୍ଦ୍ଦେଶରେ ହତ୍ୟା, ଧର୍ଷଣ ଓ ପାପଚାର ବଢିଚାଲେ । ରାଜଧାନୀରେ କେବଳ ଏହା ସୀମାବଦ୍ଧ ହୋଇ ରହେନାହିଁ । ଏହା ମଧ୍ୟ ଗାଁ ଗହଳିକୁ ବ୍ୟାପୀ ଯାଏ । ଗୋଟାଏ ଜାତିର ପରିଚୟ ଓ ଆତ୍ମସମ୍ମାନ କ୍ଷୁର୍ଣ୍ଣ ହୁଏ । ଗୋଟାଏ କଳା ଇତିହାସ ହିଁ ସୃଷ୍ଟି ହୋଇଥାଏ । ଆଉ ଜଣେ ଶାସକ ବିକାଶ ନାଁରେ ବିନାଶ ପ୍ରକ୍ରିୟାକୁ ପ୍ରୋତ୍ସାହନା ଦିଅନ୍ତି । ବିସ୍ଥାପିତ ଲୋକଙ୍କ ଜୀବନଜୀବିକା କିପରି ହେବ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ପରିବେଶ କିପରି ପ୍ରଦୂଷଣ ହେବ, ତାହା କଳ୍ପନା କରିପାରନ୍ତି ନାହିଁ । ଆଦିବାସୀଙ୍କ ଉପରେ ଗୁଳିବର୍ଷଣ ହୁଏ ଏହାଙ୍କ ରାଜତ୍ୱ ସମୟରେ । ତାଙ୍କର ଶୀତତାପ ନିୟନ୍ତ୍ରିତ କୋଠରିରେ ବସି କେଇ ପେଗ୍ ପିଇବାର ଆନନ୍ଦ ନେବା ପାଇଁ ସମୟ ଅଛି ଅଥଚ ସାଧାରଣ ଗରିବ ମଣିଷମାନେ କିପରି ଦୁଃଖ ଦୁର୍ଦ୍ଦଶାରେ ଜୀବନ ଅତିବାହିତ କରୁଛନ୍ତି, ତାହା ଦେଖିବାକୁ ଯେମିତି ପାଖରେ ଆଗ୍ରହ ନାହିଁ ବା ମୁହଁରେ ଭାଷା ନାହିଁ । ଏଇପରି ଅନେକ ଉଦାହରଣ ଅଛି ସବୁଆଡେ । ଏ ମଣିଷ ଅସହାୟ ହୋଇ ମରିବାକୁ ଶ୍ରେୟସ୍କର ମନେ କରୁଛି, ଅଥଚ ଜଣେ ଏ ଦୃଶ୍ୟ ଦେଖି ଆନନ୍ଦ ପାଉଛି । ଏହା ହିଁ ସଇତାନ ପଣିଆ ନୁହେଁ ତ ଆଉ କ'ଣ ? ଏଇଭଳି ମଣିଷମାନେ ଯେମିତି ପୃଥିବୀସାରା ଭରି ଯାଇଛନ୍ତି । ଖାଲି ଆମ ରାଜ୍ୟ ନୁହେଁ ସାରା ପୃଥିବୀରେ । ଏମାନଙ୍କ ସହ କେବେ କେମିତି ଦେଖା ସାକ୍ଷାତ ବି ହୋଇଯାଏ । ଏମାନଙ୍କୁ ଚିହ୍ନିବାରେ ବିଶେଷ କଷ୍ଟ ହୁଏ ନାହିଁ ।

ପୃଥିବୀରେ ବିଭିନ୍ନ ପ୍ରକାରର ଦଙ୍ଗା ଚାଲିଛି ଓ ଗଣହତ୍ୟାର ତାଲିକା ବଢ଼ିବାରେ ଲାଗିଛି । ହିଂସାକୁ ପ୍ରଶ୍ରୟ ଦେଉଥିବା ଲୋକଙ୍କ ସଂଖ୍ୟା କମ୍ ନୁହେଁ । ଏବେ କନ୍ଧମାଳ ଜିଲ୍ଲାରେ ଯେଉଁ ଦଙ୍ଗାର ନିଆଁ ଜଳି ଉଠିଥିଲା ଓ ତାହାକୁ ଆରମ୍ଭ ଯେଉଁମାନେ କରିଥିଲେ

ସେମାନଙ୍କର ମନସ୍ତତ୍ତ୍ୱ କ'ଣ ? ଠିକ୍ ଷ୍ଟାଭ୍ରୋଜିନ୍ ଭଳି । ଅନ୍ୟମାନେ ହତାହତ ହେଉଥିବା ବେଳେ ଦଳେ ଲୋକ ତାହାର ଦୃଶ୍ୟ ଦେଖିଥିବେ– ଏହାହିଁ ସଇତାନ ପଣିଆର ଅନ୍ୟନାମ । କିନ୍ତୁ ଷ୍ଟାଭ୍ରୋଜିନ୍ କିଏ ଓ ଏଇଭଳି ଏକ ଚରିତ୍ର ସୃଷ୍ଟି କରିବା ପଛରେ ଦସ୍ତୋଭସ୍କିଙ୍କ କ'ଣ ମୁଖ୍ୟ ଉଦ୍ଦେଶ୍ୟ ରହିଛି ?

ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ଦସ୍ତୋଭସ୍କିଙ୍କ ଅନ୍ୟତମ ଶ୍ରେଷ୍ଠ ପୁସ୍ତକ 'ଦି ଡେଭିଲ'(The Devil) ବା 'ଦି ପଜେସ୍‌ଡ୍' (The Possessed) ମୋତେ ପଢିବାକୁ ସୁଯୋଗ ମିଳିଥିଲା । ଏହା ପୂର୍ବରୁ 'କ୍ରାଇମ୍ ଏଣ୍ଡ ପନିସ୍‌ମେଣ୍ଟ' ଏବଂ 'ଦି ବ୍ରଦରସ୍ କାରାମାଜୋଭ' ମୁଁ ପଢ଼ିଥିଲି । ଏଇଥିପାଇଁ ଏହା ପଢ଼ି ବୁଝିବା ବେଶୀ କଷ୍ଟକର ହୋଇନଥିଲା । ଯଦିଓ ବହିର ମୁଖ୍ୟନାୟକ ଷ୍ଟାଭ୍ରୋଜିନ୍ – ତାହା ସହିତ ଅନ୍ୟ ଚାରୋଟି ଚରିତ୍ର ଏ ବହିଟିକୁ ଅସାଧାରଣ କରିଛନ୍ତି । ପ୍ରଫେସର୍ ଭର୍କୋଭେନସ୍କି (Verkhovensky) ସାଟୋଭ୍, ଟ୍ରଫିମୋରିଚ୍ ଏବଂ କିରିଲୋଭ୍ ହେଉଛନ୍ତି ବିଶ୍ୱ ସାହିତ୍ୟର ଅମର ଚରିତ୍ର । ଏମାନେ ଗଢ଼ିଛନ୍ତି ଏକ ଅମାନିଆ ଦଳ 'ଯାହା ରାଷ୍ଟ୍ର ବା ଧର୍ମରେ ବିଶ୍ୱାସ କରେ ନାହିଁ । ସେମାନେ ଆରମ୍ଭ କରନ୍ତି ଏକ ବିଦ୍ରୋହୀ ଗୋଷ୍ଠୀ । ଲକ୍ଷ୍ୟ ହେଉଛି କ୍ଷମତା ହାସଲ କରିବା । କିନ୍ତୁ ଏମାନେ ଯାହାକିଛି କିରବାକୁ ଯାଉଛନ୍ତି ତାହା କିପରି ଲୁଚି ରହିବ ? ଜଣେ ପ୍ରସ୍ତାବ ଦେଇଛନ୍ତି ଯେ ଯଦି ସମସ୍ତେ ମିଶି ଏକ ମିଳିତ ଅପରାଧ କରନ୍ତି, ତେବେ ସେମାନେ ସବୁକଥା ଗୋପନୀୟ ରଖିପାରିବେ । ଏଇଥିପାଇଁ ଜଣକୁ ହତ୍ୟା କରିବାକୁ ସେମାନେ ନିଷ୍ପତ୍ତି ନେଇଛନ୍ତି । କିରିଲୋଭ୍ ଆତ୍ମହତ୍ୟା କରିବାକୁ ଚାହିଁଛି । ଏଣୁ ତା'ର ବନ୍ଧୁମାନେ ତା'କୁ କହିଛନ୍ତି ସେ ଯେତେବେଳେ ଆତ୍ମହତ୍ୟା କରିବାକୁ ବଦ୍ଧପରିକର, ତେବେ ସେମାନେ ଘଟାଇଥିବା ହତ୍ୟା ସେ ନିଜେ କରିଛି ବୋଲି କାହିଁକି ସ୍ୱୀକାରୋକ୍ତି ଦେବନାହିଁ । ହତ୍ୟା ହୋଇଛି ଏଇ ଉଗ୍ରବାଦୀ ଦଳଙ୍କ ଦ୍ୱାରା ଓ କିରିଲୋଭ୍ ଆତ୍ମହତ୍ୟା କରିଛି ଓ ହତ୍ୟାକାରୀ ବୋଲି ନିଜକୁ ଘୋଷଣା କରିଛି । କିନ୍ତୁ ହତ୍ୟାର ଅସଲ ପର୍ଦ୍ଦାଫାସ୍ ହୋଇଛି । ଷ୍ଟାଭ୍ରୋଜିନ୍ ଅତ୍ୟନ୍ତ ମର୍ମାହତ ଓ ଦୋଷ ସନ୍ତପ୍ତ ହୋଇ ଆତ୍ମହତ୍ୟା କରିଛି । ଶବ ବ୍ୟବଚ୍ଛେଦ କରିଥିବା ଡାକ୍ତର କହିଛନ୍ତି ଯେ ଷ୍ଟାଭ୍ରୋଜିନ୍ ଜଣେ ପାଗଳ ବା ରୋଗଗ୍ରସ୍ତ କେବେହେଲେ ନଥିଲା । ଏ ଆତ୍ମହତ୍ୟା ସମ୍ପୂର୍ଣ୍ଣ ସଚେତନତାର ସହ କରିଛି ସେ । ଷ୍ଟାଭ୍ରୋଜିନ୍ କ'ଣ କେବଳ ଲେଖକର ପରିକଳ୍ପନା ? ଯେଉଁମାନେ ସାମ୍ପ୍ରତିକ ସମାଜରେ ଆତଙ୍କ ଓ ଅସହାୟତା ସୃଷ୍ଟି କରୁଛନ୍ତି ସେମାନେ ଜଣେ ଜଣେ ଷ୍ଟାଭ୍ରୋଜିନ୍ ବୋଲି ମୁଁ ଦୃଢ଼ ସ୍ୱରରେ କହିବି । ଆତଙ୍କବାଦୀମାନେ ଯେମିତି ଆମିଓବା ଭଳି ବଢ଼ିବାରେ ଲାଗିଛନ୍ତି । ଖଣ୍ଡ ବିଖଣ୍ଡିତ ହୋଇଗଲେ ମଧ୍ୟ ଆତଙ୍କବାଦୀମାନେ ନିଜ ନିଜର ସଂଖ୍ୟା ବଢ଼ାଇବାରେ ଲାଗିଛନ୍ତି । ଆମ ପ୍ରଦେଶରେ ଏହାହିଁ ନୀରବରେ ଘଟି ଚାଲିଛି । ଏମାନଙ୍କୁ ରାଜଧାନୀରେ କେବଳ ଦେଖିବାକୁ ମିଳୁ ନାହିଁ, ଏମାନଙ୍କୁ ବଣ ଜଙ୍ଗଲ ଘେରା ଅପହଞ୍ଚ ଇଲାକାରେ ଘୂରି ବୁଲିବାର ଦୃଶ୍ୟ ମଧ୍ୟ ଦେଖିବାକୁ ମିଳୁଛି । ସଇତାନ ମାନଙ୍କର ରାଜତ୍ୱ ବଢ଼ିବାରେ ଲାଗିଛି ଏଇଭଳି ।

ଅସଲ କଥା ହେଉଛି ଯେ ଜଣେ ସଇତାନମାନଙ୍କର ରାଜତ୍ୱକୁ ସ୍ୱୀକାର କରିବ କି ? ନା ବିଦ୍ରୋହ କରିବ ? ମୁଣ୍ଡପାତି ସହିନେବ ନା ମୁଣ୍ଡଟେକି ବିରୋଧାଭାସ ପ୍ରଦର୍ଶନ କରିବ ? ସବୁକିଛି ମୂଲ୍ୟବୋଧର କଥା ନୁହେଁ ତ ଆଉ କ'ଣ ? ଏଇଥିପାଇଁ ଏ ଜୀବନର ପ୍ରତିଟି ମୁହୂର୍ତ୍ତରେ ମୋ ଭଳି ମଣିଷ ସଇତାନମାନଙ୍କ ସହ ସାମିଲ୍ ହୋଇଯିବ କି ନିଜକୁ ଏକ ମହନୀୟ ପୃଥିବୀର ଏବଂ ଆଧ୍ୟାତ୍ମିକ ବିଶ୍ୱାସର ଅଂଶବିଶେଷ କରିବ ତାହା ଏକ ବୌଦ୍ଧିକ ଓ ଆବେଗର ପ୍ରଶ୍ନ ହୋଇଯାଇଛି । ସଇତାନମାନଙ୍କର ରାଜତ୍ୱକୁ ସ୍ୱୀକାର ନ କିରବା ଏକ ଆହ୍ୱାନ ପ୍ରତ୍ୟେକ ମଣିଷ ପାଇଁ । ସମ୍ଭବତଃ ମଣିଷ ଏଥିପାଇଁ ସ୍ୱର୍ଗ ବା ଦିବ୍ୟଧାମ, କଳ୍ପନାର ପୃଥିବୀ ବା ୟୁଟୋପିଆ ସୃଷ୍ଟି କରିବାରେ ଲାଗିଛି । ଏପରି ଏକ ପୃଥିବୀ ଲୋଡା ଯେଉଁଠି ସଇତାନମାନେ ନଥିବେ । ଏହା ଏକ କଳ୍ପନା ବିଳାସ ଅଥବା ବାସ୍ତବବାଦୀ ଅନୁଭବ ତାହା ପ୍ରମାଣ କରିବାକୁ ଅନେକ ପ୍ରୟାସ କରିଆସୁଛନ୍ତି । ଏହା ହିଁ ସମ୍ଭବତଃ ଜୀବନରେ ବଞ୍ଚିବାର ମହକ ବୋଲି କୁହାଯାଇଛି ଅନେକ ଢ଼ଙ୍ଗରେ ଓ ଅନେକ ରଙ୍ଗରେ । ସବୁ ସଇତାନମାନଙ୍କର ଉପସ୍ଥିତି ସତ୍ତ୍ୱେ ମଣିଷ ନିଜକୁ ଆତ୍ମସମର୍ପଣ କରିନାହିଁ ।

❑ ❑ ❑

୩୨

# ଭଗବାନ, ଧର୍ମ ଓ ବିଶ୍ୱାସର ପ୍ରଶ୍ନ

କିଛି ଦିନତଳେ କନ୍ଧମାଳର ଦଙ୍ଗାଗ୍ରସ୍ତ ଅଞ୍ଚଳ ଦେଖିବାର ସୁଯୋଗ ମୋତେ ମିଳିଥିଲା । ବାର୍ତ୍ତାଳାପ କରିଥିଲି ଦଙ୍ଗାଗ୍ରସ୍ତ ପରିବାରଙ୍କ ସହିତ । କେତେଜଣ ଦଙ୍ଗାକାରୀଙ୍କୁ ମଧ୍ୟ ଦେଖିବାକୁ ମିଳିଥିଲା । ଚରମ ଅମାନୁଷିକତା ଓ ଅରାଜକତାର ଦୃଶ୍ୟ ସବୁଆଡେ । ଏହା ମଧ୍ୟ ଖୁବ୍ ହୃଦୟ ବିଦାରକ, ଯେ କେହି ବ୍ୟକ୍ତି ବିଚଳିତ ଓ ଆଶଙ୍କିତ ହୋଇଯିବ । ମନକୁ ମନ ପ୍ରଶ୍ନ ଆସିଯିବ ଯେ ଏସବୁ ଧର୍ମ ନାମରେ କାହିଁକି ? ମଣିଷ ଯଦି ଶାନ୍ତି, ସଦ୍‌ଭାବନା, ସୁମଙ୍ଗଳ ଓ ବଞ୍ଚିବାର ସାର୍ଥକତା ପାଇଁ ଭଗବାନଙ୍କୁ ଲୋଡୁଛି ଓ ଭଗବାନ ବିଭିନ୍ନ ଅବତାରରେ ଅବତୀର୍ଣ୍ଣ ହୋଇଛନ୍ତି, ତେବେ ଏସବୁ ଘଟୁଛି କାହିଁକି ? ସତରେ କ'ଣ ଭଗବାନ ଅଛନ୍ତି ? ଧର୍ମର ଅର୍ଥ କ'ଣ ? ଧର୍ମ ଓ ଅଧର୍ମ ଭିତରେ ସୀମା ରେଖା କ'ଣ ? ଭଗବତ୍ ବିଶ୍ୱାସର ଅସଲ ଉଦ୍ଦେଶ୍ୟ କ'ଣ ? ଯେଉଁମାନେ ଭଗବାନଙ୍କ ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ ଓ ଯେଉଁମାନେ ବିଧର୍ମୀ, ସେମାନେ କ'ଣ ମଣିଷ ପଦବାଚ୍ୟ ନୁହନ୍ତି ? ଗୋଟାଏ ଧର୍ମ ଅନ୍ୟ ଏକ ଧର୍ମଠାରୁ ଭିନ୍ନ କାହିଁକି ? ଜଣେ ଧର୍ମାବଲମ୍ବୀ ଆଉ ଜଣେ ଧର୍ମାବଲମ୍ବୀ ଠାରୁ ଅଧିକ ଉଚ୍ଚତର ଏବଂ ମହନୀୟ ବୋଲି କାହିଁକି ବିବେଚନା କରୁଛି ? ଏ ଦେଶରେ କେବଳ ନୁହେଁ, ସାରା ପୃଥିବୀରେ ଯୁଗଯୁଗ ଧରି ଧର୍ମ ନାମରେ ସଂଗ୍ରାମ ଲାଗି ରହିଛି । ବିଶିଷ୍ଟ ଫରାସୀ ଲେଖକ କାମ୍ୟୁ କହିଛନ୍ତି ଯେ ତୃତୀୟ ବିଶ୍ୱ ଯୁଦ୍ଧ ଧର୍ମକୁ ନେଇ ଆରମ୍ଭ ହେବ । ଏ ଭବିଷ୍ୟତବାଣୀ ଯେମିତି ସତ୍ୟରେ ପରିଣତ ହେବାକୁ ଆରମ୍ଭ କରିଛି । ମୋ ଭିତରେ ବି ଭଗବାନ, ଧର୍ମ ଓ ବିଶ୍ୱାସର ନୂତନ ଦିଗମାନଙ୍କୁ ପୁଣି ଯେମିତି ଆବିଷ୍କାର କରିବାକୁ ମୁଁ ଲାଗି ପଡିଛି । ମୁଁ ଜାଣେ ଭଗବାନଙ୍କୁ ବିଶ୍ୱାସ କରିବାକୁ ହେବ ବା ତାଙ୍କର ସ୍ଥିତି ଅଛିକି ନାହିଁ ପ୍ରଶ୍ନ କରିବାକୁ ହେବ ଆଦି ସବୁ ରହସ୍ୟ ଯୁଗଯୁଗ ଧରି ମଣିଷ ସଭ୍ୟତାରେ ଆଲୋଡ଼ନ ସୃଷ୍ଟି କରିଛି । ଏଇ ଆଲୋଡନରୁ ସମ୍ଭବତଃ ସୃଷ୍ଟି ହୋଇଛି ଧର୍ମ ଓ ବିଶେଷ କରି ମାନବ ଧର୍ମ । ମଣିଷ ସୃଷ୍ଟି ହେବା ଦିନୁ ଧର୍ମ ମଧ୍ୟ ସୃଷ୍ଟି ହୋଇଛି ବୋଲି ଅନେକ କହନ୍ତି । ଐତିହାସିକମାନେ କହୁଛନ୍ତି ଯେ ପ୍ରାୟ ତିନି ଲକ୍ଷ ବର୍ଷତଳେ ପ୍ରାଚୀନ ପ୍ରସ୍ତର ଯୁଗରେ ମଧ୍ୟ ଧର୍ମ ପ୍ରତିଷ୍ଠା ହୋଇଥିଲା ବୋଲି ସଙ୍କେତ ମିଳିଛି । ମଣିଷ ମରିଗଲା ପରେ ତାହାର ଶବ ସତ୍କାରରୁ ହିଁ ଧର୍ମ ସୃଷ୍ଟି ହୋଇଛି ବୋଲି କେହି କେହି କହୁଛନ୍ତି । ଯଦିଓ

ଇତିହାସରୁ ସ୍ପଷ୍ଟ ଜଣାପଡୁନାହିଁ, ତେବେ ନୂତନ ପ୍ରସ୍ତର ଯୁଗରେ ହିଁ ଧର୍ମ ଏକ ନିର୍ଦ୍ଦିଷ୍ଟ ରୂପ ନେଇ ନିଜକୁ ପ୍ରତିଷ୍ଠା କରିଛି । ପ୍ରାୟ ଏଗାର ହଜାର ବର୍ଷ ତଳେ ମଣିଷ ଧର୍ମକୁ ଆଧାର କରି ସଭ୍ୟତା ଓ ସାମ୍ରାଜ୍ୟର ପରିକଳ୍ପନା କରିଛି । ସାମାଜିକ ଓ ରାଜନୈତିକ ସ୍ଥିରତା ପାଇଁ ଧର୍ମକୁ ଅସ୍ତ୍ରରୂପେ ବ୍ୟବହାର କରାଯାଇଛି । ମିଶରୀୟ ଓ ମେସୋପଟାମିଆ ସଭ୍ୟତାରେ ସମ୍ରାଟମାନେ ଏକାଧାରରେ ରାଜନୈତିକ ଓ ଆଧାତ୍ମିକ ମୁଖ୍ୟଭାବେ ପରିଗଣିତ ହୋଇଛନ୍ତି । ସେମାନଙ୍କ ନେତୃତ୍ୱରେ ହିଁ ଶାସନ ଏକ ନିର୍ଦ୍ଦିଷ୍ଟ ଧର୍ମ ଦ୍ୱାରା ପରିଚାଳିତ ହୋଇଛି । ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ସୂଚନା ଅନୁସାରେ ସିନ୍ଧୁ ଉପତ୍ୟକାର ସଭ୍ୟତା ପ୍ରାୟ ଖ୍ରୀଷ୍ଟପୂର୍ବ ଦୁଇହଜାର ବର୍ଷର ପୁରୁଣା ଓ ଧର୍ମର ସ୍ଥିତି ସେ ଦିନରୁ ଖୁବ୍ ମଜବୁତ । ଖ୍ରୀ.ପୂ. ୧୫୦୦ ବେଳକୁ ବେଦ ରଚନା କରାଯାଇଛି ଓ ହିନ୍ଦୁଧର୍ମ ପ୍ରତିଷ୍ଠା କରାଯାଇଛି । ଖ୍ରୀ.ପୂ.୫୯୯ ବେଳକୁ ଜୈନଧର୍ମ, ଖ୍ରୀ.ପୂ. ୫୬୩ ବେଳକୁ ବୌଦ୍ଧଧର୍ମ, ଖ୍ରୀ.ପୂ. ୫୫୧ ବେଳକୁ କନ୍‌ଫୁସିୟସ୍‌ଙ୍କ ଦ୍ୱାରା  ସୃଷ୍ଟ ଧର୍ମ ଆରମ୍ଭ ହୋଇଛି । ଏହା ପରେ ପରେ ଖ୍ରୀଷ୍ଟଧର୍ମ ଆରମ୍ଭ ହୋଇଛି ଯୀଶୁଖ୍ରୀଷ୍ଟଙ୍କ ଦ୍ୱାରା । ୫୨୦ ମସିହା ପରେ ପରେ ଇସ୍‌ଲାମ୍ ଧର୍ମ ଆରମ୍ଭ ହୋଇଛି ମହାପୁରୁଷ ମହମ୍ମଦଙ୍କ ଦ୍ୱାରା । ଇହୁଦୀ ଧର୍ମ, ଶିଖ ଧର୍ମ, ବା'ହାଇ ଧର୍ମ ଆଦି ନୂତନ ଧର୍ମ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା ହୋଇଛି । ପୃଥିବୀର ଯେକୌଣସି ଅଞ୍ଚଳରେ ଯେକୌଣସି ମଣିଷ ତା'ନିଜ ପାଇଁ ଧର୍ମ ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ଧର୍ମ କେମିତି ସୃଷ୍ଟି ହେଲା ତାହା ସମ୍ପର୍କରେ ବିଭିନ୍ନ ମତାମତ ପୃଥିବୀସାରା ଭରିରହିଛି । ସର୍ବଶେଷ ବିଶ୍ଳେଷଣ କରିଛନ୍ତି ଲୋକ ପ୍ରିୟ ବିଜ୍ଞାନ ଲେଖକ 'ରିଚାର୍ଡ ଡକିନ୍‌ସ୍' (Richard Dawkins) । ସେ ମିମ୍ (Meme) ବୋଲି ଗୋଟିଏ ଶବ୍ଦ ଗଠନ କରିଛନ୍ତି ଯାହା ସବୁ ଧର୍ମର ସୃଷ୍ଟି କିପରି ହୋଇଛି ଓ ଏହା ପଛରେ ସାଂସ୍କୃତିକ, ମନସ୍ତାତ୍ତ୍ୱିକ ଏବଂ ଶାରୀରିକ ସମ୍ପର୍କ କିପରି ସଂଶ୍ଲିଷ୍ଟ ହୋଇଛି ଅତି ସହଜରେ ବୁଝାଇ ପାରୁଛି । ମୁଁ ରିଚାର୍ଡ ଡକିନ୍‌ସ୍‌ଙ୍କ ଅନେକ ପ୍ରସିଦ୍ଧ ବହିମାନଙ୍କ ଭିତରୁ 'ଦି ସେଲ୍‌ଫିସ୍ ଜିନ୍' (The Selfish Gene) ଏବଂ 'ଦି ଗଡ୍ ଡିଲ୍ୟୁଜନ୍' (The God Delusion)ରୁ ବିଶେଷ କିଛି ଆହରଣ କରିଛି । ଧର୍ମ ଓ ଭଗବାନଙ୍କ ସ୍ଥିତି ସମ୍ପର୍କରେ ଡକିନ୍‌ସ୍ ଯାହା କହିଛନ୍ତି, ଏ ସ୍ତମ୍ଭରେ ପର୍ଯ୍ୟାୟକ୍ରମେ ଲେଖିବାକୁ ମୁଁ ମନସ୍ଥ କରିଛି ।

ମୁଁ ଅତି ସ୍ପଷ୍ଟ ଭାବରେ କହିପାରେ ଯେ ଭଗବାନ ଓ ଧର୍ମ ସମ୍ବନ୍ଧୀୟ ବିଷୟ ଓ ରହସ୍ୟ ଗୁଡିକୁ ବୁଝିବା ମୋ ଦ୍ୱାରା ସମ୍ଭବ ହୋଇନାହିଁ । ଅଧ୍ୟୟନ ମଧ୍ୟ ଯଥେଷ୍ଟ ନୁହେଁ । ମହାପୁରୁଷ ଓ ଜ୍ଞାନୀମାନେ ଯେଉଁ ପ୍ରବଚନ ଦେଉଛନ୍ତି, ତାହା ମଧ୍ୟ ସବୁ ଆତ୍ମସ୍ଥ କରିବାକୁ ସୁଯୋଗ ମିଳିନାହିଁ । କିନ୍ତୁ ଭଗବାନ ଅଛନ୍ତି ବୋଲି ପ୍ରତ୍ୟକ୍ଷ ଭାବେ ଅନୁଭବ କରି ହେଉଥିଲେ ମଧ୍ୟ ମଣିଷ ଭଗବାନଙ୍କ ସ୍ଥିତିକୁ ସଚେତନତାର ସହ ପ୍ରଶ୍ନ କରିଛି । ସେଇଭଳି ଧର୍ମର ଯଥାର୍ଥ୍ୟ ମଣିଷ ସ୍ୱୀକାର କରିଲେ ମଧ୍ୟ ଏ ବିଷୟରେ ସର୍ବସମ୍ମତି ପ୍ରକାଶ ପାଇନାହିଁ । ଏବେ ଜଣେ ବନ୍ଧୁ କହୁଥିଲେ ଯେ ଭଗବାନ ଓ ଧର୍ମ  ଯଦି ବୁଝିବାର ଅଛି ତେବେ ଶ୍ରୀ

ଯୋଗାନନ୍ଦଙ୍କ 'ଆନ୍ ଅଟୋବାଇଓଗ୍ରାଫି ଅଫ ଏ ଯୋଗୀ' (An Autobiography of a Yogi) ବହିଟି ପଢିବାକୁ ହେବ । ଜଣେ ବନ୍ଧୁ ଯିଏ ଶିରିଡି ସାଇବାବାଙ୍କ ଭକ୍ତ, ସେ ସାଇବାଣୀ ପଢିବାକୁ ପରାମର୍ଶ ଦେଇଥିଲେ । ସ୍ୱାମୀ ବିବେକାନନ୍ଦ ଓ ଶ୍ରୀଅରବିନ୍ଦ ଯାହାସବୁ ଭଗବାନ ଓ ଧର୍ମ ଉପରେ ଲେଖିଛନ୍ତି ତାହା ଶ୍ରେଷ୍ଠ ଆଧାତ୍ମିକ ଆଲୋଚନାର ଉଦାହରଣ । ମହାତ୍ମାଗାନ୍ଧୀ ଭଗବାନ ଓ ଧର୍ମ ବିଷୟରେ ଯେଉଁସବୁ କଥା କହିଛନ୍ତି ଓ ଯେଉଁଭଳି ବ୍ୟକ୍ତିଗତ ଜୀବନରେ ସେ ସବୁର ପ୍ରୟୋଗ କରିଛନ୍ତି ପାଠକଙ୍କୁ ଅବାକ୍ କରିଦେବ । ସେଇଭଳି ବ୍ରାଟାଣ୍ଡ ରସେଲ୍ (Bertrand Russel) ତାଙ୍କର ବହି 'ହ୍ୱାଇ ଆଇ ଆମ୍ ନଟ୍ ଏ ଖ୍ରୀଷ୍ଟିଆନ୍ ?' (Why I am not a Christian) ରେ ଧର୍ମ ବିଶ୍ୱାସ ଉପରେ ଅନେକ ଯୁକ୍ତିତର୍କ ଉପସ୍ଥାପନ କରିଛନ୍ତି । ଇବନ୍ ୱାରକ୍ (Ibn Warraq) 'ହ୍ୱାଇ ଆଇ ଆମ୍ ନଟ୍ ଏ ମୁସ୍‌ଲିମ୍' ଓ କାଞ୍ଚା ଇଲାହା (Kancha Ilaih)ଙ୍କ ଲିଖିତ ବହି 'ହ୍ୱାଇ ଆଇ ଆମ୍ ନଟ୍ ଏ ହିନ୍ଦୁ' ଧର୍ମ ବିଶ୍ୱାସ ଓ ତାହାର ବିଭିନ୍ନ କ୍ରିୟା ପ୍ରତିକ୍ରିୟା ଉପରେ ଆଲୋଚିତ ହୋଇଛି । ଯୁକ୍ତି ଅନେକ ଦୃଷ୍ଟିରୁ ଅକାଟ୍ୟ । ତେବେ ଜଣେ ଭଗବାନ ଓ ଧର୍ମ ବିଷୟରେ କେଉଁ ପକ୍ଷରେ ରହିବ ?

ଭଗବାନଙ୍କ ଅସ୍ତିତ୍ୱକୁ ଅନୁଭବ କରି ଅନେକ ମଣିଷ ଅନେକ କିଛି ରଚନା କରିଛନ୍ତି, ମହାନ କାବ୍ୟ ରଚନା କରାଯାଇଛି ଓ ଅଙ୍କାଯାଇଛି ଯୁଗାନ୍ତକାରୀ ଚିତ୍ର । ଗଢାଯାଇଛି ଅନେକ ମୂର୍ତ୍ତି ଓ ପୂଜାସ୍ଥାନ । ଭଗବାନଙ୍କୁ ରୂପ ଦିଆଯାଇଛି ବିଭିନ୍ନ ରଙ୍ଗରେ ଓ ଢଙ୍ଗରେ । ମଣିଷ ଭଗବାନଙ୍କୁ ଆପଣାର କରିବାକୁ ଯାଇ ରକ୍ତମାଂସର ଜୀବନ୍ତ ମୂର୍ତ୍ତି କରି ଦେଉଛି । ଭଗବାନଙ୍କୁ ଖୋଜିବାକୁ ଯାଇ ମଣିଷ କରିଛି ଅନେକ ତପସ୍ୟା ଓ ସାଧନା । ଅପେକ୍ଷା କରିଛି ଦିବ୍ୟ ମୁହୂର୍ତ୍ତର ଆଗମନ ପାଇଁ । ଦେଖିଛି ବିଶ୍ୱ ରୂପକୁ । ମଣିଷ ସତ୍ୟ, ଶିବ ଓ ସୁନ୍ଦରର ସମାହାରରେ, ଭଗବାନଙ୍କ କଳ୍ପନା ହିଁ କରିଛି । ଅବଶେଷରେ ପାଇଛି ମଧ୍ୟ । କିନ୍ତୁ ପାଇ ମଧ୍ୟ ପାଇ ନାହିଁ । ଭଗବାନଙ୍କୁ ଏବେ ମଧ୍ୟ ଖୋଜାଚାଲିଛି । ଏଇ ମର୍ମରେ ବିଖ୍ୟାତ ଲେଖକ ଖଲିଲ୍ ଜିବ୍ରାନ୍ 'ଦି ୱାଣ୍ଡରସ୍' (The Wanders) ବହି ଲେଖିଛନ୍ତି । ଭଗବାନଙ୍କୁ ଖୋଜୁଥିବା ମଣିଷଙ୍କ ପାଇଁ ସେ କାହାଣୀଟିଏ କହିଛନ୍ତି ।

'ଉପତ୍ୟକାରେ ଦୁଇଜଣ ବ୍ୟକ୍ତି ଯାଉଥିବା ବେଳେ ପର୍ବତ ଆଡକୁ ଅଙ୍ଗୁଳି ଦେଖାଇ ଜଣେ କହିଲା, ବନ୍ଧୁ, ସେ ଆଶ୍ରମକୁ ଦେଖୁଛ ? ସେଠାରେ ପୃଥିବୀର ସବୁକିଛି ପରିତ୍ୟାଗ କରି ଜଣେ ତପସ୍ୱୀ ରହୁଛନ୍ତି । ସେ ଭଗବାନଙ୍କୁ ଖୋଜୁଛନ୍ତି । ଆଉ କାହାକୁ ନୁହେଁ । ଦ୍ୱିତୀୟ ବ୍ୟକ୍ତିଟି କହିଲା ଯେ 'ସେ ଭଗବାନଙ୍କୁ କେବେହେଲେ ପାଇବେ ନାହିଁ ଯେ ପର୍ଯ୍ୟନ୍ତ ସେ ଆଶ୍ରମକୁ ଓ ନିଜର ଏକାକୀ ଜୀବନକୁ ଛାଡି ଆମ ପୃଥିବୀକୁ ଫେରି ନାହାନ୍ତି ଏବଂ ଆମ ସହିତ ସୁଖ ଦୁଃଖରେ ଭାଗ ନେଇ ନାହାନ୍ତି । ସେ ଭଗବାନଙ୍କୁ ପାଇବାରେ ସମର୍ଥ ହେବେ ନାହିଁ, ଯେ ପର୍ଯ୍ୟନ୍ତ ସେ ଆମର ବିବାହଭୋଜିରେ ଯୋଗ ଦେଇନାହାନ୍ତି ଅଥବା କଫିନ୍ ପାଖେ ରହି ମରିଥିବା ବ୍ୟକ୍ତି ପାଇଁ କାନ୍ଦି ନାହାନ୍ତି ।

ପ୍ରଥମ ବ୍ୟକ୍ତି ଯଦିଓ ନିଜର ନିର୍ଦ୍ଦିଷ୍ଟ ମତାମତ ଥିଲା ତଥାପି ବନ୍ଧୁଙ୍କ ସହ ଏକମତ ହୋଇଥିଲା । ଆଉ କହିଥିଲା 'ମୁଁ ତୁମ ସହ ଏକମତ । କିନ୍ତୁ ଏ କଥା ସତ ଯେ ତପସ୍ୱୀ ଜଣକ ଜଣେ ଭଲ ମଣିଷ । ଜଣେ ଅନୁପସ୍ଥିତ ରହି ଅନେକ ମଣିଷଙ୍କ ଭଲ କାମ ଠାରୁ ଆହୁରି ଭଲ କାମ କରିପାରେ ।' (ଖଲିଲ୍ ଜିବ୍ରାନ୍)

ଭଗବାନଙ୍କୁ ଖୋଜୁଥିବା ମଣିଷମାନେ ଏକଥା ସମ୍ଭବତଃ ବୁଝିଥିବେ । ଖଲିଲ୍ ଜିବ୍ରାନ୍ ଏକଥା ଲେଖି ଅମର ଓ ଲୋକପ୍ରିୟ ହୋଇଛନ୍ତି । ଏହା ତାଙ୍କର ମରିବା ପୂର୍ବରୁ ଶେଷ ପୁସ୍ତକ ଥିଲା ।

ଧର୍ମ ସମ୍ବନ୍ଧରେ ଯୁକ୍ତିତର୍କ ଶହ ଶହ ବର୍ଷ ଧରି ଚାଲି ଆସିଛି ଓ ମଣିଷ ସଭ୍ୟତା ବଞ୍ଚିଥିବା ପର୍ଯ୍ୟନ୍ତ ଚାଲିଥିବ । ଧର୍ମ ବିଷୟରେ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ଠାରୁ ଆରମ୍ଭ କରି 'ପେରେନିଆଲ୍ ଫିଲୋସୋଫି'ର ଲେଖକ 'ଆଲ୍‌ଡସ୍ ହକ୍ସଲି' (Aldous Huxley) ଅନେକ କିଛି ନିଜସ୍ୱ ମତାମତ ଦେଇଛନ୍ତି । କିନ୍ତୁ ଧର୍ମ ନାମରେ ସଂଘର୍ଷ ଓ ବିଦ୍ୱେଷ କିମିତି ଲାଗି ରହିଛି ଇତିହାସର ପୃଷ୍ଠା ଉନ୍ମୋଚନ କରିଲେ ଜଣେ ସହଜରେ ଜାଣି ପାରିବ । ମଣିଷ ଜ୍ଞାନବିଜ୍ଞାନ ଦ୍ୱାରା ପରିପକ୍ୱତାର ସିଡିରେ ଅନେକ ପାହାଚ ଚଢ଼ିଛି ସତ, କିନ୍ତୁ ଧର୍ମ ନାମରେ ଅନେକ ଅଧର୍ମ କାର୍ଯ୍ୟରେ ସଦାସର୍ବଦା ଲିପ୍ତ ରହିଛି । ଏଇଥିପାଇଁ ଭାରତରେ ହିନ୍ଦୁ-ମୁସଲମାନ, ଆୟରଲ୍ୟାଣ୍ଡର କ୍ୟାଥଲିକ୍-ପ୍ରୋଟେଷ୍ଟାଣ୍ଟ, ପୂର୍ବତନ ଯୁଗୋସ୍ଲୋଭିଆରେ ରକ୍ଷଣଶୀଳ ସର୍ବ, କ୍ୟାଥଲିକ୍‌କ୍ରୋଟ୍ ଏବଂ ମୁସ୍‌ଲିମ୍ ବୋସନିଆ ପରି ଅନେକ ମୁସ୍‌ଲିମ୍ ଦେଶରେ ସିଆ-ସୁନ୍ନି, ପାଲେଷ୍ଟାଇନ୍‌ରେ ଇହୁଦୀ ଓ ମୁସଲମାନଙ୍କ ଭିତରେ ଯେଉଁ ରକ୍ତାକ୍ତ ସଂଗ୍ରାମ ଲାଗିଛି, ତାହା ଆଜି କନ୍ଧମାଳକୁ ବି ପ୍ରସାରିତ ହୋଇଛି କହିଲେ ଅତିରଞ୍ଜିତ ହେବ ନାହିଁ । ଗୋଟାଏ ପୃଥିବୀ ଓ ତା'ଭିତରେ ମଣିଷ ଜାତି । କିନ୍ତୁ ଏ ସଂଘର୍ଷ କାହିଁକି ? ବିଟିଲ୍ ଜନ୍ ଲେନନ୍ ଏକଦା ଗାଇଥିଲେ -

'ଇମାଜିନ୍ ଦେୟାର୍ ଇଜ୍ ନୋ କଣ୍ଟ୍ରିଜ୍
ଇଟ୍ ଇଜ୍ ନଟ୍ ହାର୍ଡ଼ ଟୁ ଡୁ
ନଥିଙ୍ଗ ଟୁ କିଲ ଅର୍ ଡାଇ ଫର୍
ଆଣ୍ଡ ନୋ ରିଲିଜିଅନ୍ ଠୁ
ଇମାଜିନ୍ ଅଲ୍ ଦି ପିପୁଲ
ଲିଭିଙ୍ଗ୍ ଲାଇଫ୍ ଇନ୍ ପିସ୍'

"Imagine there's no Countries
It isn't hard to do
Nothing to kill or die for
And no religion too
Imagine all the people
Living life in peace"

*(John Lenen)*

❐ ❐ ❐

## ୩୩

# ଭଗବାନଙ୍କ ଅସ୍ତିତ୍ୱ ସପକ୍ଷରେ ଯୁକ୍ତି

ମଣିଷକୁ ଭଗବାନ ସୃଷ୍ଟି କରିଛନ୍ତି କି ମଣିଷ ଭଗବାନଙ୍କୁ ସୃଷ୍ଟି କରିଛି ଏହି ପ୍ରଶ୍ନର ସଠିକ୍ ଉତ୍ତର ଏ ପର୍ଯ୍ୟନ୍ତ ମିଳିନାହିଁ । ମଣିଷର ଇତିହାସ ଆପାତତଃ ଲେଖା ଯାଇଥିଲା ବେଳେ ଭଗବାନଙ୍କ ଇତିହାସ ସମ୍ପର୍କରେ ଭିନ୍ନ ଭିନ୍ନ ମତ ବିଭିନ୍ନ ସମୟରେ ପ୍ରକାଶ ପାଇଛି । ପୃଥିବୀର ପ୍ରାୟ ସବୁ ଧର୍ମରେ ଭଗବାନ କଳ୍ପନା ଚମତ୍କାର ଭାବେ ବର୍ଣ୍ଣନା କରାଯାଇଛି । ହିନ୍ଦୁ ଧର୍ମ, ବୌଦ୍ଧଧର୍ମରୁ ଆରମ୍ଭ କରି ଇହୁଦୀ, ଖ୍ରୀଷ୍ଟିଆନ୍ ଏବଂ ମୁସଲ୍‌ମାନ ଧର୍ମରେ ଭଗବାନଙ୍କ ଆବିର୍ଭାବର ସବିଶେଷ ବର୍ଣ୍ଣନା କରାଯାଇଛି । ଗତ ୪୦୦୦ବର୍ଷର ଇତିହାସ ଏବଂ ଧର୍ମଗ୍ରନ୍ଥମାନଙ୍କରେ ଏହାର ଆଭାସ ମିଳୁଛି । କିନ୍ତୁ ଭଗବାନ ଅଛନ୍ତି ବୋଲି ତାଙ୍କ ସପକ୍ଷରେ ଯୁକ୍ତି କ'ଣ ? ଏହା ନିର୍ଣ୍ଣୟ କରିବା ବୌଦ୍ଧିକ ଏବଂ ଆଧ୍ୟାତ୍ମିକ କ୍ଷେତ୍ରରେ ଏକ ବିରାଟ ଆହ୍ୱାନ ହୋଇଛି । ବିଭିନ୍ନ ଶତାବ୍ଦୀରେ ଦାର୍ଶନିକମାନେ ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ବିଭିନ୍ନ ମତବାଦ ଉପସ୍ଥାପନା କରିଛନ୍ତି । ସେଇଭଳି ଅନେକ ବୈଜ୍ଞାନିକ ମଧ୍ୟ ଈଶ୍ୱରବିଶ୍ୱାସୀ ବୋଲି ନିଜକୁ ଜାହିର କରିଛନ୍ତି । ଗୋଟାଏ ସମୟରେ ଦାର୍ଶନିକ, ଗଣିତଜ୍ଞ ଓ ବୈଜ୍ଞାନିକଙ୍କ ଭିତରେ ପ୍ରଭେଦ ନଥିଲା । ଅର୍ଥାତ୍ ଯିଏ ଦାର୍ଶନିକ, ସିଏ ବି ବୈଜ୍ଞାନିକ । ଈଶ୍ୱର ବିଶ୍ୱାସ ସମସ୍ତଙ୍କ ଭିତରେ ଦାନା ବାନ୍ଧିଥିଲା । ବିଜ୍ଞାନର ଦ୍ରୁତ ବିକାଶ ଓ ବସ୍ତୁବାଦୀ ଚିନ୍ତାଧାରାର ବ୍ୟାପକତା ବଢ଼ିଲା ପରେ ଦାର୍ଶନିକ ଓ ବୈଜ୍ଞାନିକ ମାନେ ପରସ୍ପର ଠାରୁ ଦୂରେଇ ଯାଇଛନ୍ତି । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ, ବିଜ୍ଞାନରେ ନୋବେଲ ପୁରସ୍କାର ଯେଉଁମାନେ ପାଇଛନ୍ତି ବା ଇଂଲଣ୍ଡର ରୟାଲ୍ ସୋସାଇଟି ଅଥବା ଆମେରିକାର ନ୍ୟାସ୍‌ନାଲ ଏକାଡେମୀରେ ବୈଜ୍ଞାନିକ ହିସାବରେ ମାନ୍ୟତା ପାଇଛନ୍ତି, ସେମାନଙ୍କ ଭିତରେ କତିପୟ କେବଳ ଈଶ୍ୱର ବିଶ୍ୱାସୀ । ଏଇଥିପାଇଁ ଆଧୁନିକ ବିଜ୍ଞାନ ଓ ଈଶ୍ୱର ବିଶ୍ୱାସ ଭିତରେ ଅନେକ ଦୂରତା ବଢ଼ିଛି ଗତ ଶତାବ୍ଦୀରୁ । ଆମର ମୁନି, ଋଷିମାନେ ପ୍ରାକ୍ ବୈଦିକ ଯୁଗରୁ କିପରି ଭଗବାନଙ୍କୁ ଠାବ କରିଛନ୍ତି ତାହା ବିଷୟରେ ଅନେକ କିମ୍ବଦନ୍ତୀ ଅଛି । କଠିନ ତପସ୍ୟା ଓ ସାଧନା ଦ୍ୱାରା ଭଗବାନଙ୍କ ଅସ୍ତିତ୍ୱ ଅନୁଭବ କରିଛନ୍ତି । ତ୍ରୟୋଦଶ ଶତାବ୍ଦୀରେ ସନ୍ଥ ଥୋମାସ୍ ଆକ୍ୱିନାସ୍ (Thomas Aquinas) ଭଗବାନଙ୍କ ଅସ୍ତିତ୍ୱ ଉପରେ ଯୁକ୍ତି ପ୍ରମାଣ ଦେଖାଇଛନ୍ତି । ସେ ପାଞ୍ଚୋଟି

ପ୍ରମାଣ ଦେଖାଇଛନ୍ତି । ପ୍ରଥମଟି ହେଲା, ଯେ କୌଣସି ବସ୍ତୁ ଗତିଶୀଳ ହେବା ପଛରେ ଏକ ଅଦୃଶ୍ୟ ଶକ୍ତି ରହିଛି ଓ ତାହା ହେଉଛି ଭଗବାନ । ଦ୍ୱିତୀୟଟି ହେଲା, ଯେ ଯାହା କିଛି ଏ ପୃଥିବୀରେ ଘଟୁଛି ତାହା ଈଶ୍ୱରଙ୍କ ଇଙ୍ଗିତରେ ହିଁ ହେଉଛି । ତୃତୀୟ ପ୍ରମାଣଟି ହେଲା, ଯେ ସୃଷ୍ଟିର ଆରମ୍ଭରେ କୌଣସି ବସ୍ତୁ ନଥିଲା କିନ୍ତୁ ବିର୍ତ୍ତମାନ ସବୁ କିଛି ବସ୍ତୁର ସମାହାର । ଈଶ୍ୱର ନଥିଲେ ଏହା ସମ୍ଭବତଃ ହୋଇ ନଥାନ୍ତା । ଚତୁର୍ଥ ପ୍ରମାଣ ହେଉଛି, ଯେ ମଣିଷ ଭଲ ମନ୍ଦର ସମନ୍ୱୟ ଓ ଭଲ ସବୁବେଳେ ସର୍ବୋତ୍ତମ ହେବା ପାଇଁ ଉଦ୍ୟମରତ । ଏଇ ସର୍ବୋତ୍ତମ ହେବାର ଶକ୍ତି ହିଁ ଭଗବାନ । ପଞ୍ଚମ ପ୍ରମାଣ ହେଲା, ଯେ ଏ ସୃଷ୍ଟିରେ ସବୁକିଛି ନିର୍ଦ୍ଦିଷ୍ଟ ଭାବେ ନିର୍ମିତ । ଜୀବିତ ଥିବା ସମସ୍ତ ପ୍ରାଣୀଙ୍କ ନିର୍ଦ୍ଦିଷ୍ଟ ରୂପହେବା ପଛରେ ଏକ ଅଦୃଶ୍ୟ ହାତ ରହିଛି ଓ ତାହାହିଁ ଭଗବାନ ।

ଯାହାକିଛି ସୁନ୍ଦର ଓ ଅନୁପମ, ତାହା ପଛରେ ଭଗବାନ ଅଛନ୍ତି କି ? ଏକଥା ମଧ ବାରମ୍ବାର ପ୍ରଶ୍ନ କରାଯାଇଛି । ସଙ୍ଗୀତଜ୍ଞ ସଙ୍ଗୀତ ସୃଷ୍ଟି କରିଛି । ଚିତ୍ରକର ଅମର ଚିତ୍ରକଳା ସୃଷ୍ଟି କରିଛି । କବି କବିତା ଜରିଆରେ ତାହାର ସୃଜନୀଶକ୍ତି ପ୍ରକାଶ କରିଛି । ସମସ୍ତଙ୍କ ପଛରେ ଏକ ଐଶୀ ଶକ୍ତି ଅଛି ବୋଲି ବାରମ୍ବାର ସ୍ୱୀକାର କରାଯାଇଛି । ମହାଋଷି ବ୍ୟାସଦେବ ହୁଅନ୍ତୁ ବା ମହାକବି କାଳିଦାସ ହୁଅନ୍ତୁ, ଭଗବାନଙ୍କ ପୂଜା ପାଇଁ ମନ୍ଦିର ଗଢୁଥିବା ଶିଳ୍ପୀ ହେଉ ବା ମହାନ ଚିତ୍ରକର ଲିଓନାର୍ଡୋ ଡା ଭିଞ୍ଚି ସବୁ ଅଦ୍ଭୂତ ଐଶୀ ଶକ୍ତିର ଅଧିକାରୀ ବୋଲି ବାରମ୍ବାର ସ୍ୱୀକାର କରାଯାଇଛି । ଏଇସବୁ କଳା, ଭାସ୍କର୍ଯ୍ୟ ଓ ସଂଗୀତର ପ୍ରତ୍ୟକ୍ଷ ଅନୁଭୂତିରେ ଭଗବାନଙ୍କ ଅସ୍ତିତ୍ୱ ଅନୁଭବ କରାଯିବା ସମ୍ଭବ ବୋଲି ଅନେକ ଯୁକ୍ତି ବାଢ଼ିଛନ୍ତି । ମୁଁ ଏଇ ଅମୃତ ଅନୁଭବ ଅଙ୍ଗେ ନିଭେଇଛି ବୋଲି କହିବାକୁ ଦ୍ୱିଧା ପ୍ରକାଶ କରିନାହିଁ ।

ଭଗବାନଙ୍କ ସହ ବ୍ୟକ୍ତିଗତ ଭାବେ ସାକ୍ଷାତ ହୋଇଛି ବୋଲି ଅନେକ ପ୍ରକାଶ କରିଛନ୍ତି । ସ୍ୱଚକ୍ଷୁରେ ଭଗବାନଙ୍କୁ ଦେଖିଛନ୍ତି ଓ ତାଙ୍କର ମହତ୍‌ବାଣୀ ନିଜର କାନରେ ଶୁଣିଛନ୍ତି ବୋଲି ଅନେକ ବର୍ଣ୍ଣନା କରିଛନ୍ତି ତାଙ୍କର ଆତ୍ମଜୀବନୀରେ । କେହି ଜଣେ ଅନେକଙ୍କ ମସ୍ତିଷ୍କ ଭିତରେ ରହି ସବୁବେଳେ ପଥ ପ୍ରଦର୍ଶକ ହୋଇଛି ଓ ତାହା ଅସଲରେ ଭଗବାନ । ଏହାକୁ ଜଣେ ମନସ୍ତତ୍ତ୍ୱବିଦ୍ ହାଲୁକା ଭାବେ ମାନସିକ ମତିଭ୍ରମ ବୋଲି କହିପାରନ୍ତି । କିନ୍ତୁ ଭଗବତ୍ ବିଶ୍ୱାସୀମାନେ ଏହି ତତ୍ତ୍ୱରେ ସହମତ ହୋଇନାହାନ୍ତି । ଦୁର୍ଘଟଣାରେ ଅକସ୍ମାତ୍ ଜଣକ ପ୍ରାଣରକ୍ଷା କରିବା ଏକ ଅସମ୍ଭବକୁ ସମ୍ଭବ କରାଇ ପାରିବା ମଣିଷର ବ୍ୟକ୍ତିଗତ ଈଶ୍ୱର ବିଶ୍ୱାସକୁ ଅଧିକ ଦୃଢ଼ ନିଶ୍ଚୟ କରିଛି । ଅତିମାନବୀୟ ସ୍ତରକୁ ଯିବାକୁ ପ୍ରତ୍ୟେକ ମଣିଷ ସବୁବେଳେ ଚେଷ୍ଟା କରୁଛି । ତାହା ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରୁଛି କି ନାହିଁ ?

ସବୁଧର୍ମରେ ଯେଉଁଭଳି ଧର୍ମଶାସ୍ତ୍ର ରଚନା କରାଯାଇଛି, ତାହା ଭଗବାନଙ୍କ ଅସ୍ତିତ୍ୱକୁ ଅଧିକ ପ୍ରମାଣ ଯୋଗାଇଛି । ପ୍ରତ୍ୟେକ ଧର୍ମରେ ପ୍ରାର୍ଥନା ଦ୍ୱାରା ଭଗବାନଙ୍କ

ସହ ଏକାକାର ହେବାର ସୁଯୋଗ ସୃଷ୍ଟି କରାଯାଇଛି । ପ୍ରାର୍ଥନାର ମାଧ୍ୟମ ହେଉଛି ଜପ, ତପ, ଧ୍ୟାନ ଓ ଆରାଧନା । ସବୁଧର୍ମରେ ଏହାର ପ୍ରକାଶ ଅଭିନବ । ଶଙ୍କରାଚାର୍ଯ୍ୟ ସଚ୍ଚିଦାନନ୍ଦ କଥା କହି ଭଗବାନଙ୍କ ଅସ୍ତିତ୍ୱ, ଚେତନା ଓ ଆନନ୍ଦର ଏକ ଅଭିନବ ମିଶ୍ରଣ ହିନ୍ଦୁମାନଙ୍କ ପାଇଁ ଉପସ୍ଥାପନ କରିଛନ୍ତି । ବୌଦ୍ଧଧର୍ମରେ ପ୍ରାର୍ଥନାର ସ୍ୱତନ୍ତ୍ର ସ୍ଥାନ ରହିଛି । ବୁଦ୍ଧ ଈଶ୍ୱର ବିଶ୍ୱାସକୁ ଅସ୍ୱୀକାର କରିନାହାନ୍ତି । ସେ କେବଳ କହିବାକୁ ଚାହିଁଛନ୍ତି ଯେ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ଭଗବତ୍ ବିଶ୍ୱାସ ହିଁ ନିର୍ବାଣ ପ୍ରାପ୍ତିରେ ସାହାଯ୍ୟ କରିବ । ଇହୁଦୀ, ଖ୍ରୀଷ୍ଟିଆନ୍ ଏବଂ ମୁସଲମାନ ଧର୍ମରେ ହିଁ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରାଯାଇଛି । ଅବଶ୍ୟ ହିନ୍ଦୁମାନଙ୍କ ଭଳି ଅନେକ ଦେବାଦେବୀ ପରିବର୍ତ୍ତେ ଜଣେ ଭଗବାନଙ୍କୁ ମାନ୍ୟତା ଦିଆଯାଇଛି । କିନ୍ତୁ ପ୍ରାର୍ଥନାକୁ ମାନ୍ୟତା ଦେବା ଦ୍ୱାରା ସମସ୍ତେ ଭଗବାନଙ୍କ ଅସ୍ତିତ୍ୱକୁ ସ୍ୱୀକାର କରିଛନ୍ତି । ପ୍ରାର୍ଥନା କରିବା ପାଇଁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ସିନାଗଗ୍, ବୌଦ୍ଧସ୍ତୂପ, ଜୈନ ମନ୍ଦିର, ପୂଜାର୍ଚ୍ଚନା ପାଇଁ ବିଭିନ୍ନ ଆଶ୍ରମ ଓ ମୋନାଷ୍ଟରି ଆଦି ଯୁଗେ ଯୁଗେ ନିର୍ମାଣ କରାଯାଇଛି । ପ୍ରାର୍ଥନା ଐଶୀ ଶକ୍ତିର ମହତ୍ୱ ଉପଲବ୍ଧି କରିବାରେ ସାହାଯ୍ୟ କରିଛି ।

ଆଗରୁ ସୂଚନା ଦେଇଛି ଯେ ଅନେକ ବୈଜ୍ଞାନିକ ଘୋର ଈଶ୍ୱର ବିଶ୍ୱାସୀ । ଏମାନଙ୍କ ଭିତରେ ଅଛନ୍ତି ନିଉଟନ, ଗାଲିଲିଓ, କେପ୍‌ଲର ଆଦି ଅନେକ ବିଶିଷ୍ଟ ଓ ବିଶ୍ୱବିଖ୍ୟାତ ବୈଜ୍ଞାନିକ । ଏପରିକି ଡାରଉଇନ୍ କୁଆଡେ ବିବର୍ତ୍ତନବାଦ ବଦଳରେ ଶେଷକାଳରେ "ନିୟୁ ଟେଷ୍ଟାମେଣ୍ଟ" ପ୍ରତି ଆଗ୍ରହ ପ୍ରଦର୍ଶନ କରିଥିଲେ । ମୋଟାମୋଟି ଭାବରେ କହିବାକୁ ଗଲେ ଆଧୁନିକ ବିଜ୍ଞାନ ଯୁଗରେ ବହୁତ ବୈଜ୍ଞାନିକ ଈଶ୍ୱର ବିଶ୍ୱାସକୁ ସ୍ୱୀକାର କରିନାହାନ୍ତି । ଏକ ସର୍ବେକ୍ଷଣରୁ ଜଣାପଡିଛି ଯେ, ପ୍ରାୟ ଶତକଡା ୭ଭାଗ ବିଜ୍ଞାନୀ ନିଜନିଜର ବ୍ୟକ୍ତିଗତ ଭଗବାନରେ ବିଶ୍ୱାସ କରିଥାନ୍ତି । ବିଶିଷ୍ଟ ଫରାସୀ ଗଣିତଜ୍ଞ ପାସ୍କାଲ ଭଗବାନଙ୍କୁ ଘୋର ବିଶ୍ୱାସ କରିବାକୁ ପରାମର୍ଶ ଦେଉଛନ୍ତି । ସେ କହିଛନ୍ତି ଯେ - ଭଗବାନଙ୍କୁ ବିଶ୍ୱାସ କରିବା ଉତ୍ତମ ପନ୍ଥା । କାରଣ ଏହା କରିଲେ ଚିରନ୍ତନ ପ୍ରଶାନ୍ତି ମିଳିବ । ନ କରିଲେ ବିଶେଷ କିଛି ଯାଏଆସ୍ ନାହିଁ ।

ଭଗବାନ ସମ୍ଭବତଃ ଅଛନ୍ତି କି ନାହାନ୍ତି ଏହାକୁ ନେଇ ଷ୍ଟିଫେନ୍ ଅନ୍‌ୱିନ୍ (Stephen Unwin) ନାମକ ଜଣେ ଲେଖକ 'ଦି ପ୍ରୋବାବିଲିଟି ଅଫ୍ ଗଡ୍' (The Probability of God) ବୋଲି ବହିଟିଏ ଲେଖିଛନ୍ତି । ଏଥିରେ ଛଅଟି ବକ୍ତବ୍ୟକୁ ନେଇ ଲୋକମାନଙ୍କର ମତାମତକୁ ବିଶ୍ଳେଷଣ କରାଯାଇଛି । ପ୍ରଥମଟି ହେଲା ଯେ, ସମସ୍ତେ ଭଲ କଥା ଚାହାନ୍ତି । ଦ୍ୱିତୀୟଟି, ଲୋକେ ଷ୍ଟାଲିନ୍ ଓ ହିଟ୍‌ଲରଙ୍କ ଭଳି ମନ୍ଦ କାର୍ଯ୍ୟରେ ଲିପ୍ତ ରହନ୍ତି । ତୃତୀୟଟି ହେଲା, ପ୍ରକୃତି ବେଳେବେଳେ ଭୂମିକମ୍ପ ଓ ସୁନାମୀ ଆଦି ସୃଷ୍ଟି କରି ଅନେକ ବ୍ୟାଘାତ ସୃଷ୍ଟି କରିଥାଏ । ଚତୁର୍ଥଟି, ଅନେକ ସମୟରେ ଆଶ୍ଚର୍ଯ୍ୟ ଘଟଣା ଘଟିଥାଏ ଯେପରିକି ଖୋଜୁଥିବା ଚାବି ପେନ୍ଥାଟି ଅଚାନକ ମିଳିଯାଏ । ପଞ୍ଚମଟି ହେଲା ଯେ, ବେଳେବେଳେ ମହାଶ୍ଚର୍ଯ୍ୟ ଘଟଣା ଘଟିଥାଏ ଯେପରିକି ଯୀଶୁଖ୍ରୀଷ୍ଟ

ପୁଣିଥରେ ଆବିର୍ଭାବ ହୁଅନ୍ତି । ସ୍ପଷ୍ଟଟି ହେଲା ଯେ, ପ୍ରତ୍ୟେକ ମଣିଷର ଏକ ଆଧ୍ୟାତ୍ମିକ ଉପସ୍ଥିତି ଥାଏ । ଏ ସବୁକୁ ବିଭିନ୍ନ ଦୃଷ୍ଟିରେ ହିସାବ କରି ଲେଖକ କହିଛନ୍ତି ଯେ ପୃଥିବୀର ପ୍ରାୟ ଶତକଡ଼ା ୬୭ଭାଗ ଲୋକ ସାଧାରଣ ଭାବେ ଭଗବାନଙ୍କୁ ବିଶ୍ୱାସ କରିଥାଆନ୍ତି । କିନ୍ତୁ ବିଶ୍ୱାସୀ ମଣିଷଙ୍କ ଭିତରେ ଭଗବାନଙ୍କ ଅସ୍ତିତ୍ୱକୁ ନେଇ ସନ୍ଦେହ ନାହିଁ ବୋଲି ସେ ଅନ୍ୟ ଏକ ହିସାବ ଦେଖାଇଛନ୍ତି ।

ମୁଁ ଜଣେ ପରିବ୍ରାଜକ ଭଳି ବିଭିନ୍ନ ଆଧ୍ୟାତ୍ମିକ ସ୍ଥଳ ଓ ଦେବାଦେବୀଙ୍କ ପୂଜାର୍ଚ୍ଚନା ପୀଠ ଘୂରିବୁଲିଛି । ହଜାର ହଜାର ଧର୍ମବିଶ୍ୱାସୀ ମଣିଷଙ୍କ ଭିତରେ ସାମିଲ ହୋଇ ଭକ୍ତ ହେବାର ପ୍ରୟାସ କରିଛି । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଅମୃତବେଳାରେ ଏକ ଦିବ୍ୟଚେତନାର ସନ୍ଧାନ ପାଇଛି । ସମୁଦ୍ର ତଟରେ ଢେଉମାନଙ୍କର ଉତ୍‌ଥାନ ପତନ ଦେଖି ମୋହଗ୍ରସ୍ତ ହୋଇଛି । ପର୍ବତ ଚୂଡ଼ାରେ ପହଞ୍ଚି ଆରୋହଣର ଆନନ୍ଦ ନେଇଛି । ବିଭିନ୍ନ ଆଶ୍ରମରେ ନୀରବତାର ତାତ୍ପର୍ଯ୍ୟ ବୁଝିବାକୁ ଚେଷ୍ଟା କରିଛି । ଫୁଲମାନଙ୍କର ରଙ୍ଗ ଓ ପକ୍ଷୀମାନଙ୍କର କାକଳିରେ ନିଜକୁ ହଜାଇ ଦେଇଛି । ମନ୍ଦିର ଭିତରେ ଓ ମନ୍ଦିର ଠାରୁ ବହୁଦୂରରେ ଥାଇ ମଧ୍ୟ ନିଜକୁ ଦିବ୍ୟ ଚେତନାର ମାପକାଠିରେ ମୂଲ୍ୟାଙ୍କନ କରିଛି । ପୂଜା ପାଠ, ଫୁଲନୈବେଦ୍ୟ ଠାରୁ ଦୂରରେ ଥାଇ ମଧ୍ୟ ଅଗଣିତ ମଣିଷଙ୍କ ବିଶ୍ୱାସକୁ ସ୍ୱୀକାର କରିବାକୁ ଚେଷ୍ଟା କରିଛି ।

ମଣିଷ ଇତିହାସରେ ଏତେ ଅଘଟଣ ଘଟିଛି ଓ ଏତେ ସଇତାନମାନେ ଜନ୍ମ ନେଇଛନ୍ତି ଯେ ଭଗବାନଙ୍କ ଅସ୍ତିତ୍ୱ ଉପରେ ଅନେକ ପ୍ରଶ୍ନ ଉଠିଛି । ଭଗବାନଙ୍କ ନାମରେ ଓ ଧର୍ମର ଦୁହାଇ ଦେଇ ଅନେକ ଯୁଦ୍ଧ, ରକ୍ତପାତ ଓ ଗଣହତ୍ୟା ହୋଇଛି ବୋଲି ସମସ୍ତେ ଜାଣିଛନ୍ତି । କେହି କେହି ଭଗବାନ ଏ ଯୁଗରେ ମରିଯାଇଛନ୍ତି ବୋଲି ମାନି ନେଇଛନ୍ତି । ସବୁ ଅଧର୍ମ ଓ ଅନ୍ୟାୟ ଏଥିପାଇଁ ଦାୟୀ । କିନ୍ତୁ ଭଗବାନ ନଥିଲେ ବି ଭଗବାନଙ୍କୁ ସୃଷ୍ଟି କରିବାକୁ ଆହ୍ୱାନ ଦିଆଯାଇଛି । ଏଇଥିପାଇଁ ଭଗବାନଙ୍କ ଅସ୍ତିତ୍ୱକୁ ନେଇ ଯେତେ ସନ୍ଦେହ ଉପୁଜିଲେ ମଧ୍ୟ ଭଗବତ୍ ବିଶ୍ୱାସ ସବୁଆଡେ ବଢ଼ିବାରେ ଲାଗିଛି । ଭଗବାନଙ୍କୁ କାହିଁକି ବିଶ୍ୱାସ କରାନଯିବ ଏଥିପାଇଁ ମଧ୍ୟ ଅନେକ ଯୁକ୍ତି କରାଯାଇଛି । ଏହାର ବିଶଦ୍ ଆଲୋଚନା ଆବଶ୍ୟକ । ଅସହାୟ ମଣିଷଟିଏ ଭଗବାନଙ୍କୁ ଖୋଜୁଛି କି ନାହିଁ ଓ ତାଙ୍କର ଅସ୍ତିତ୍ୱରେ ବିଶ୍ୱାସ କରିବ କି ନାହିଁ – ଏ ପ୍ରଶ୍ନ ଯୁଗ ଯୁଗ ଧରି ଉଠି ଆସିଛି ଓ ଭବିଷ୍ୟତରେ ଉଠିବ ମଧ୍ୟ ।

❑❑❑

**୩୪**

# ଭଗବାନଙ୍କ ଅସ୍ତିତ୍ୱ ବିପକ୍ଷରେ ଯୁକ୍ତି

କେଜାଣି କାହିଁକି ବେଳେବେଳେ ନିଜକୁ ହଜାଇ ଦେବା ପାଇଁ ଇଚ୍ଛା ହୁଏ । ବାହାରେ ଆମ୍ବ ବଉଳର ବାସ୍ନା ଓ ମଳୟ ପବନର ମନମତାଣିଆ ଉଚ୍ଛ୍ୱାସ । ସୂର୍ଯ୍ୟାସ୍ତର ଶେଷ ମୁହୂର୍ତ୍ତରେ ଆକାଶରେ ଏକ ବର୍ଣ୍ଣ ବିଭବର ବିନ୍ୟାସ । ନିଜକୁ ଭୁଲି ଯିବାକୁ ପଡେ ଏ ସମୟରେ । ଏ ଅନୁଭୂତି କେବଳ ଗୋଟାଏ ବସନ୍ତର ନୁହେଁ ବା ଗୋଟାଏ ଆବେଗର ନୁହେଁ । ଏଥିରେ ଯିମିତି ଏକ ଅଦ୍‌ଭୂତ ଐଶୀ ସତ୍ତା ରହିଛି ବୋଲି ଅନୁଭବ କରିହୁଏ । ଏଇଥିପାଇଁ ମୁଁ ଏଇ ମୁହୂର୍ତ୍ତ ମାନଙ୍କରେ ଏକ ଭିନ୍ନ ମଣିଷ ହୋଇଯାଏ । ଜ୍ଞାନ ବିଜ୍ଞାନ, ତର୍କ ବିତର୍କ, ପ୍ରଶ୍ନୋତ୍ତରର କିଛି ଅର୍ଥ ନୂତନ ଆଲୋକରେ ଆଲୋକିତ ହୋଇ ଯାଇଥାଏ । ଏଇଥିପାଇଁ ନିଜକୁ ଆପଣା ଶୈଳୀରେ ଏକ ପରିବ୍ରାଜକର ଭୂମିକା ଗ୍ରହଣ କରି କେଉଁ ଏକ ଅଜଣା ପୃଥିବୀରେ ବିଚରଣ କରୁଥାଏ । ଐଶୀ ସତ୍ତାକୁ କେହି କେହି କେବେ ପ୍ରଶ୍ନ କରି ଉତ୍ତର ପାଇଛି କି ? ସ୍ୱାମୀ ବିବେକାନନ୍ଦ ସବୁବେଳେ କହିଆସିଛନ୍ତି ଯେ ଆପଣାର ହୃଦୟ ଓ ପ୍ରତ୍ୟେକ ଜୀବ ଭିତରେ ଭଗବାନ ଅଛନ୍ତି । ନିଜକୁ ବିଶ୍ୱାସ ନକରିଲେ ଭଗବାନଙ୍କୁ ବିଶ୍ୱାସ କରିହେବ ନାହିଁ । ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ସେ କେବେହେଲେ ପ୍ରଶ୍ନ କରିନାହାନ୍ତି । ଦର୍ଶନର ଛାତ୍ର ହୋଇ ମଧ୍ୟ ସଂଶୟ ତାଙ୍କୁ କେବେହେଲେ ସ୍ପର୍ଶ କରିନାହିଁ । ସେ ଭଗବାନଙ୍କୁ ଖୋଜୁ ଖୋଜୁ ଶ୍ରୀରାମକୃଷ୍ଣ ପରମହଂସଙ୍କ ପାଖରେ ପହଞ୍ଚିଛନ୍ତି ଓ ରାମକୃଷ୍ଣଙ୍କ ପାଖରୁ ଭଗବାନ କେମିତି ସବୁଠି ଅଛନ୍ତି ଓ ତାଙ୍କ ସହ କେମିତି ବାର୍ତ୍ତାଳାପ କରିହୁଏ ଜାଣିଛନ୍ତି । ବିଶ୍ୱାସ ଦୃଢ଼ୀଭୂତ ହୋଇଛି ତାଙ୍କର । ମହାତ୍ମାଗାନ୍ଧୀଙ୍କର ଭଗବତ୍ ବିଶ୍ୱାସ ଥିଲା ଅଖଣ୍ଡ ଓ ଅସାଧାରଣ । ସେ କହିଛନ୍ତି – 'ମୁଁ ଭଗବାନଙ୍କୁ ଜଣେ ବ୍ୟକ୍ତି ରୂପେ ବିଚାର କରେ ନାହିଁ । ମୋ ପାଇଁ ସତ୍ୟ ହିଁ ଭଗବାନ – । ମୁଁ ମୁହାଁମୁହିଁ ଈଶ୍ୱରଙ୍କୁ ଦେଖି ନାହିଁ । ଯଦି ଦେଖିଥାନ୍ତି, ତେବେ ମୋ ଲାଗି ତୁମମାନଙ୍କ ଆଗରେ କଥା କହିବାର କୌଣସି ଆବଶ୍ୟକ ନଥାନ୍ତା । ସେ ଭାବନା ଭିତରେ ଏତେ ଅଧିକ ଶକ୍ତି ରହିଥାନ୍ତା ଯେ, ମୋ ପକ୍ଷରେ ଯାବତୀୟ କଥା କହିବା ଓ କାର୍ଯ୍ୟ କରିବା ଅନାବଶ୍ୟକ ହୁଅନ୍ତା । ମାତ୍ର, ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ମୋର ଏକ ଅକ୍ଷୟ ବିଶ୍ୱାସ ରହିଛି । ମୋ ପରି ପୃଥିବୀର କୋଟି କୋଟି ମନୁଷ୍ୟଙ୍କର ମଧ୍ୟ ଠିକ୍ ସେହିପରି ବିଶ୍ୱାସ ରହିଛି । ବିଦ୍ୱାନ ଠାରୁ ଆହୁରି

ଅଧିକ ବିଦ୍ୱାନ କେବେ ହେଲେ କୋଟି କୋଟି ନିରକ୍ଷର ମନୁଷ୍ୟଙ୍କର ସେଇ ବିଶ୍ୱାସକୁ ଟଳାଇ ଦେଇ ପାରିବେ ନାହିଁ । ମହାତ୍ମାଗାନ୍ଧୀ ଶ୍ରୀମଦ୍ ଭଗବତ୍ ଗୀତାର ସରଳ ମର୍ମାନୁବାଦ କରିଛନ୍ତି ଜେଲ୍‌ରେ ଥିବାବେଳେ । ଅର୍ଜୁନ ଭଗବାନଙ୍କ ବିଶ୍ୱରୂପ ଦର୍ଶନ କିରବାର ବର୍ଣ୍ଣନା ଅଭୂତପୂର୍ବ । ଅର୍ଜୁନ ଭଗବାନ କୃଷ୍ଣଙ୍କୁ କହିଛନ୍ତି- ଆପଣ ହିଁ ସବୁ, ଆପଣ କର୍ତ୍ତା, ଆପଣ ସଂହର୍ତ୍ତା ଏବଂ ଆପଣ ନାଶହୀନ ଅଟନ୍ତି । ଯଦି ସମ୍ଭବ ହେବ ଆପଣାର ଈଶ୍ୱରୀୟ ରୂପକୁ ମୋତେ ଦେଖାନ୍ତୁ । ଏଇ ଅଦ୍‌ଭୂତ ରୂପକୁ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦେଖାଇଛନ୍ତି ଯାହା ସଂଞ୍ଜୟ ଧୃତରାଷ୍ଟ୍ରଙ୍କ ଆଗରେ ବର୍ଣ୍ଣନା କରିଛନ୍ତି ।

'ଆମେ ତ ନିତି ଗୋଟାଏ ସୂର୍ଯ୍ୟ ଦେଖୁ । ମାତ୍ର ଅନୁମାନ କରନ୍ତୁ, ହଜାର ହଜାର
ସୂର୍ଯ୍ୟ ପ୍ରତିଦିନ ଉଦୟ ହେଲେ ସେମାନଙ୍କର ତେଜ ଯେମିତି ହୁଅନ୍ତା, ତାହା
ଅପେକ୍ଷା ଏ ତେଜ ଅଧିକ ଉଜ୍ଜ୍ୱଳ ଲାଗୁଥିଲା । ତାଙ୍କର ଭୂଷଣ, ଶସ୍ତ୍ର ମଧ
ସେଇପରି ଦିବ୍ୟ ଥିଲା । ତାଙ୍କୁ ଦର୍ଶନ କରି ଅର୍ଜୁନଙ୍କର ଲୋମ ଟାଙ୍କୁରି
ଉଠିଲା । ମୁଣ୍ଡ ବୁଲେଇ ଦେଲା ଏବଂ ସେ ସ୍ତୁତି ଆରମ୍ଭ କଲେ,
ହେ ଦେବ ! ଆପଣଙ୍କର ଏ ବିଶାଳ ଦେହରେ ତ ମୁଁ ସବୁକିଛି ଏବଂ
ସମସ୍ତଙ୍କୁ ଦେଖୁଛି । ବ୍ରହ୍ମା ଏଥିରେ ଅଛନ୍ତି, ମହାଦେବ ଅଛନ୍ତି, ଋଷିମାନେ
ଅଛନ୍ତି, ସର୍ପ ମଧ ଅଛନ୍ତି । ଆପଣଙ୍କ ହାତ ଗୋଡ଼ ଗଣି ହେଉ ନାହିଁ ।
ଆପଣଙ୍କ ନା ଆଦି ଅଛି, ନା ଅନ୍ତ ଅଛି, ନା ମଧ ଅଛି ।...
ଆପଣ ଜଗତର ଆଧାର ଅଟନ୍ତି, ଆପଣ ହିଁ ପ୍ରଥମ ପୁରୁଷ, ଆପଣ ହିଁ ଧର୍ମର
ରକ୍ଷକ ।

*(ଗୀତା: ମୋହନଦାସ କରମଚାନ୍ଦ ଗାନ୍ଧୀ)*

କିନ୍ତୁ ସବୁ ତତ୍ତ୍ୱ ଓ ଯୁକ୍ତି ସତ୍ତ୍ୱେ ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ଏ ମଣିଷ ଅନେକ ଯୁକ୍ତି ବାଢ଼ିଛି । ଏହା ଦର୍ଶନ ଓ ବିଜ୍ଞାନ ଦ୍ୱାରା ପ୍ରାପ୍ତ । ସମସ୍ତେ ଜାଣିଛନ୍ତି ଯେ ଏ ସୃଷ୍ଟି ସମ୍ପର୍କରେ ଅନେକ ପ୍ରଶ୍ନ କରାଯାଇଛି । ଏହାର ଆରମ୍ଭ ଓ ଜୀବ ଜଗତର ଆବିର୍ଭାବ କେମିତି ହେଲା ? ସୃଷ୍ଟି ଯେଉଁ ପରି ହେଲା ଓ ଜୀବ ଜଗତ ଯେଉଁଭଳି ଏ ପୃଥିବୀରେ ପ୍ରଥମେ ଦେଖାଦେଲେ, ତାହା ଭଗବାନଙ୍କ ଆଦେଶରେ ହୋଇଥିଲା ନା ବିଜ୍ଞାନ ସମ୍ମତ ପ୍ରକ୍ରିୟାରେ ସମ୍ଭବ ହେଲା ଏ ବିଷୟରେ ଏପର୍ଯ୍ୟନ୍ତ ତର୍କ ଚାଲିଛି । ଏକଥା ସତ, ଯେ କୋଟି କୋଟି ଗ୍ରହ ନକ୍ଷତ୍ର ଅଛନ୍ତି କିନ୍ତୁ, ପୃଥିବୀରେ ଜୀବଜଗତ କାହିଁକି ସୃଷ୍ଟି ହେଲା ? ବିଜ୍ଞାନୀମାନେ କହୁଛନ୍ତି 'ବିଗ୍‌ବ୍ୟାଙ୍ଗ' ଥିଓରୀର କଥା । ଡ଼ାରଓ୍ୱିନ୍ କହୁଛନ୍ତି ବିବର୍ତ୍ତନବାଦ କଥା । ଏ ପୃଥିବୀ ଓ ଜୀବ ଜଗତର ସୃଷ୍ଟି କେହି ଅଜଣା ସୃଷ୍ଟିକାରୀଙ୍କ ଦ୍ୱାରା ନୁହେଁ । ଏହା ପଛରେ ନିର୍ଦ୍ଦିଷ୍ଟ ବିଜ୍ଞାନ ରହିଛି ଓ ଏ ସମ୍ବନ୍ଧରେ ଏବେ ମଧ ଗବେଷଣା ଚାଲିଛି । ଜୀବଜଗତର ଆରମ୍ଭ ଜଳରୁ ଏବଂ ଏକ ରାସାୟନିକ ପ୍ରକ୍ରିୟାରୁ । ଗବେଷଣାରୁ ଜଣାପଡିଛି

ଯେ ଏକ ନିର୍ଦ୍ଦିଷ୍ଟ ପ୍ରକ୍ରିୟାରେ ପ୍ରଥମେ ଡି.ଏନ୍.ଏ. ଭଳି ପଦାର୍ଥ ସୃଷ୍ଟି ହୋଇଛି ଓ ସେଥିରୁ ଜୀବନ ଆରମ୍ଭ ହୋଇଛି । ବିଭିନ୍ନ ଉପାୟରେ ଗୋଟାଏ ପ୍ରକାରର ପ୍ରାକୃତିକ ପ୍ରକ୍ରିୟାରେ ଜୀବଜଗତ ସୃଷ୍ଟି ହୋଇଛି ଯାହାକୁ ଡାର୍‌ୱିନ କହିଛନ୍ତି ନେଚୁରାଲ୍ ସିଲେକ୍‌ସନ । ସେଇଭଳି ଏ ବ୍ରହ୍ମାଣ୍ଡରେ ଶହେ ବିଲିୟନ ଗ୍ୟାଲାକ୍‌ସି ଅଛି । ପ୍ରତ୍ୟେକ ଗ୍ୟାଲାକ୍‌ସିର ପ୍ରାୟ ତିନି ହଜାର କୋଟି ଗ୍ରହ ଅଛନ୍ତି । ସେଥିରୁ ପୃଥିବୀ ଗୋଟିଏ । ଅର୍ଥାତ୍ କୋଟି କୋଟି ଗ୍ରହ ଭିତରୁ ପୃଥିବୀରେ ଜୀବ ଜଗତର ଉତ୍‌ପତ୍ତି କାହିଁକି ହେଲା ତାହା ସୃଷ୍ଟିକର୍ତ୍ତାଙ୍କ ମ୍ୟାଜିକ୍ ନୁହେଁ । ତାହା ହେଉଛି ଏକ ବିଜ୍ଞାନ ସମ୍ମତ କାରଣ । ଏ ପୃଥିବୀରେ ପ୍ରାୟ କୋଟିଏ ପ୍ରଜାତିର ପ୍ରାଣୀ ଅଛନ୍ତି ଓ ପ୍ରତ୍ୟେକଙ୍କ ସୃଷ୍ଟି ସ୍ୱତନ୍ତ୍ର । ପ୍ରତ୍ୟେକଙ୍କ ଭିତରେ ଥିବା ଅଙ୍ଗପ୍ରତ୍ୟଙ୍ଗର ଭୂମିକା ସ୍ୱତନ୍ତ୍ର । ପକ୍ଷୀ, ମହୁମାଛି ଓ ବାଦୁଡ଼ିର ଡେଣା ଅଛି ଉଡ଼ିବାକୁ- କିନ୍ତୁ ପ୍ରତ୍ୟେକ ସ୍ୱତନ୍ତ୍ର । ଜୀବଜଗତରେ ଅନେକଙ୍କର ଆଖି ଅଛି କିନ୍ତୁ ଦେଖିବା ସ୍ୱତନ୍ତ୍ର ।

ପ୍ରତ୍ୟେକ ପତ୍ରରେ ଉଦ୍ଭିଦ, ଫୋଟୋସିନ୍ଥେସିସ୍ କରି ଖାଦ୍ୟ ଆହରଣ କରୁଛି । ଏସବୁର ସୃଷ୍ଟିପଛରେ ନିର୍ଦ୍ଦିଷ୍ଟ ନକ୍‌ସା ଅଛି । ପ୍ରତ୍ୟେକ ପ୍ରାଣୀ ଓ ଉଦ୍ଭିଦ ଏକ ନିର୍ଦ୍ଦିଷ୍ଟ ନକ୍‌ସା ନେଇ ସୃଷ୍ଟି ହୋଇଛନ୍ତି । ଏଥିରୁ ସ୍ପଷ୍ଟ କୁହାଯାଇ ପାରେ ଯେ ଜୀବଜଗତର ସୃଷ୍ଟି ଏକ ନିର୍ଦ୍ଦିଷ୍ଟ ସୂତ୍ର ଦ୍ୱାରା ହୋଇଛି କିନ୍ତୁ ବିବର୍ତ୍ତନବାଦ ଦ୍ୱାରା ଏବଂ ବିଭିନ୍ନ ପାରିବେଶିକ ପ୍ରଭାବ ଦ୍ୱାରା ବିଭିନ୍ନ ପ୍ରଜାତିର ପ୍ରାଣୀ ଓ ଉଦ୍ଭିଦ ସୃଷ୍ଟି ହୋଇଛନ୍ତି । ଏ ସୃଷ୍ଟି ଯେ ଭଗବାନଙ୍କ ଲୀଳା ଖେଳା ସେଥିରେ କେତେ ପରିମାଣରେ ସତ୍ୟତା ରହିଛି ତାହା ବୈଜ୍ଞାନିକମାନେ ପ୍ରଶ୍ନ କରିଛନ୍ତି ।

ଅନ୍ୟ ଏକ ଦୃଷ୍ଟିରେ ଦେଖିଲେ ପ୍ରତ୍ୟେକ ବସ୍ତୁ ବା ଜୀବ ମୌଳିକ କଣିକା ବା ଫଣ୍ଡାମେଣ୍ଟାଲ ପାର୍ଟିକିଲ୍‌ସ (fundamental particles)ଙ୍କ ଦ୍ୱାରା ଗଢ଼ା ଯାଇଛନ୍ତି । ଏଇ ମୌଳିକ କଣିକାମାନେ ପଦାର୍ଥ ପଦାର୍ଥ ମଧ୍ୟରେ ଘୂରି ବୁଲୁଛନ୍ତି ଓ ଏକ ନିୟମମାନି ଚଳୁଛନ୍ତି । ଏଗୁଡ଼ିକୁ ଯେ ଭଗବାନ ନିୟନ୍ତ୍ରଣ କରୁଛନ୍ତି ତାହା କହିବା କେତେଦୂର ଯୁକ୍ତିଯୁକ୍ତ ବୁଝି ହେଉ ନାହିଁ । ସେଇଭଳି କୋଟିକୋଟି ମନୁଷ୍ୟ କେତେ କଥା ଭାବୁଛନ୍ତି, କହୁଛନ୍ତି ଓ ପ୍ରଦର୍ଶନ କରୁଛନ୍ତି । ଯେଉଁ ଭଗବାନ ଏସବୁ କଥା ବିଚାରକୁ ନେଉଛନ୍ତି ବୋଲି କୁହାଯାଉଛି, ତାଙ୍କର ପରିଚୟ ସମ୍ଭବ ନୁହେଁ ବୋଲି ଅନାୟାସରେ କୁହାଯାଇପାରେ । ଭଗବତ୍ ବିଶ୍ୱାସୀମାନେ ଏଇଭଳି ବିଶ୍ଳେଷଣରେ ଏକମତ ନହୋଇପାରନ୍ତି । ବିଶିଷ୍ଟ ବିଜ୍ଞାନ ଲେଖକ ରିଚାର୍ଡ଼ ଡକିନ୍‌ସ୍ ତାଙ୍କ ବହି 'ଦି ଗଡ଼ ଡିଲୁଜନ'ରେ ଏଇସବୁ ଯୁକ୍ତିଗୁଡ଼ିକର ବ୍ୟାଖ୍ୟା କରିଛନ୍ତି । ସେ କହିଛନ୍ତି ଯେ ଆମାଜାନ୍ ଅବବାହିକାରେ ଯେଉଁଭଳି ଉଦ୍ଭିଦ ଓ ଜୀବଜଗତ ରହିଛନ୍ତି, ତାହା ଅଜଣା ସୃଷ୍ଟିକର୍ତ୍ତାଙ୍କ ଦ୍ୱାରା ସୃଷ୍ଟି ହୋଇନାହିଁ । ଏହା ପଛରେ ପ୍ରାକୃତିକ ପ୍ରକ୍ରିୟା ରହିଛି ଯାହା ସବୁ ଅବଶ୍ୟ ବୁଝିବା ଏପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ଭଗବାନ ଏବଂ ଐଶୀ ଶକ୍ତିକୁ ସେ ପ୍ରଶ୍ନ କରିଛନ୍ତି ବାରମ୍ବାର, ତାଙ୍କର ଯୁକ୍ତିକୁ ସେ କେତୋଟି ମୁଖ୍ୟ ଧାରାରେ ବିଭକ୍ତ କରିଛନ୍ତି । ପ୍ରଥମଟି

ହେଲା, ଯେ ଏ ସୃଷ୍ଟିରେ ଯେଉଁ ଜଟିଳ ନକ୍‌ସାମାନ ରହିଛି ତାହା ବୁଝିବା ମଣିଷ ପ୍ରତି ଏକ ବୌଦ୍ଧିକ ଆହ୍ୱାନ ହୋଇ ଯାଇଛି । ଦ୍ୱିତୀୟଟି ହେଲା, ଯେ ଗୋଟିଏ ଘଣ୍ଟା ଯେମିତି ଜଣେ କୁଶଳୀ ଇଞ୍ଜିନିୟର କରିପାରୁଛି, ସୃଷ୍ଟିର ପ୍ରତ୍ୟେକଟି ଉପାଦାନ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଇଞ୍ଜିନିୟରିଂଗ ତତ୍ତ୍ୱ ରହିଛି ବୋଲି କୁହାଯାଇଛି । ତୃତୀୟରେ, ଏଇ ଇଞ୍ଜିନିୟରିଙ୍ଗ ତତ୍ତ୍ୱକୁ ମଧ ପ୍ରଶ୍ନ କରାଯାଇଛି ଯେ ଇଞ୍ଜିନିୟରିଙ୍ଗ୍ ବୁଦ୍ଧି ବାହାର କରିଥିବା ଇଞ୍ଜିନିୟରଙ୍କୁ କିଏ ସୃଷ୍ଟି କରିଲା ? ଚତୁର୍ଥରେ, ଡାରୱିନ୍‌ଙ୍କ ବିବର୍ତ୍ତନବାଦ ଦ୍ୱାରା ଯାହାକିଛି ସୃଷ୍ଟି ହୋଇଛି- ତାହା ଧୀର ଓ ମନ୍ଥର ଗତିରେ ଆରମ୍ଭ ହୋଇଛି । ଯାହା ଆମେ ସୃଷ୍ଟିର ଲୀଳା କହୁଛେ ତାହା ଏକ ଲୀଳା ନୁହେଁତ ଆଉ କ'ଣ ? ସବୁ କିଛି ଭ୍ରମ । ତେଣୁ ଭଗବାନ ଅଛନ୍ତି କି ନାହିଁ ତାହା କେବଳ ଭ୍ରମ ବୋଲି ରିଚାର୍ଡ ଡକିନ୍‌ସ ପ୍ରମାଣ କରିବାକୁ ଚାହିଛନ୍ତି ।

ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ଅନେକ ମଣିଷ ଆଧୁନିକ ଯୁଗରେ ବିଭିନ୍ନ ଧରଣର ଘଟଣା ଦୁର୍ଘଟଣାକୁ ଆଧାର କରି ବିଭିନ୍ନ ପ୍ରଶ୍ନ ପଚାରୁଛନ୍ତି । କେଉଁଠି ଧର୍ଷଣ, ଘୃଣା, ଲୁଣ୍ଠନ ଓ ଅମାନୁଷିକ ଘଟଣା ଦୁର୍ଘଟଣା ଘଟିଲାଣିତ ଆଉ କେଉଁଠି ଯୁଦ୍ଧ ଓ ଆତଙ୍କବାଦୀ ଆକ୍ରମଣ ଦେଖାଦେଲାଣି । କେଉଁଠି କ୍ଷୁଧାର୍ତ୍ତ ମଣିଷଙ୍କ ପଟୁଆର ଚାଲିଛି ତ ଆଉ କେଉଁଠି ମଉଜ ମଜଲିସ୍‌ର ବ୍ୟଭିଚାର ସୀମା ଟପିଛି । ଯଦି ଭଗବାନ ଥାଆନ୍ତେ ତାହା ହେଲେ ଏହା କ'ଣ ଘଟିବାକୁ ଦିଅନ୍ତେ ? ଏତେ ଅନ୍ୟାୟ ଅସନ୍ତୋଷ କାହିଁକି ? ମଣିଷର ମଣିଷ ଓ ପ୍ରକୃତି ପ୍ରତି ଏତେ ଘୃଣା କାହିଁକି ? ଜଣେ କହୁଛନ୍ତି ଯେ ଭଗବାନ ନାହାନ୍ତି ଓ ତା' ବଦଳରେ ରାଜନୀତି ସବୁସ୍ଥାନରେ ବିରାଜମାନ କରୁଛି । ହେତୁବାଦୀମାନେ ବାରମ୍ବାର କହିଆସିଛନ୍ତି ଯେ ଭଗବାନ ନାହାନ୍ତି । ସବୁକିଛି ପଛରେ ବିଜ୍ଞାନସମ୍ମତ କାରଣ ରହିଛି । ମଣିଷର ବିଚାରଶକ୍ତି ଯେତେ ତୀବ୍ର ହେବ, ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ସେତିକି ସ୍ପଷ୍ଟ ଧାରଣା ଆସିଯିବ ।

ଭଗବାନଙ୍କ ଅସ୍ତିତ୍ୱ ଅଛି କି ନାହିଁ ତାହା ସମ୍ବନ୍ଧରେ ଅଧିକ ଜାଣିବାକୁ ଏ ମଣିଷ ଚେଷ୍ଟା କରୁଛି । ବିଜ୍ଞାନ ଯେତେ ଆଗେଇଲେ ମଧ ଅନେକ ପ୍ରଶ୍ନର ଉତ୍ତର ଏବେ ମଧ ମିଳିନାହିଁ । ଯଦିଓ ଭଗବନାଙ୍କ ନାମରେ ଅନେକ କିଛି ସ୍ୱୀକାର କରିବା ସମ୍ଭବ ହେଉଛି, ମଣିଷର କୌତୂହଳ ଓ ବୌଦ୍ଧିକ ଅନ୍ୱେଷଣ ତାହାକୁ ଏ ସୃଷ୍ଟିର ସାର୍ଥକତା ଆଣି ଦେଇଛି ।

❐ ❐ ❐

୩୫

# ପୁଲକିତ ପୃଥିବୀର ଶେଷ ଉପାସକ

ମହୁଲ ଫୁଲର ବାସ୍ନା ଓ ପଳାଶ ଫୁଲର ରଙ୍ଗ ମନେ ପକାଇ ଦିଏ ଯେ ବସନ୍ତ ଆସିଯାଇଛି । କିନ୍ତୁ ଏହା ଶେଷ ବସନ୍ତ ନୁହେଁ ଅନେକଙ୍କ ପାଇଁ । ବସନ୍ତ ଆସୁଥିଲା ଓ ଆଗାମୀ ଦିନମାନଙ୍କରେ ଆସୁଥିବ ସମସ୍ତଙ୍କୁ ସମ୍ମୋହିତ କରିବା ପାଇଁ । ମୁଁ ଏଇ ସମୟରେ ଘୋର ଅରଣ୍ୟର-ଆଦିମତାକୁ ଅନ୍ତରଙ୍ଗ ସହ ଆପଣାର କରିଥାଏ । ଦଣ୍ଡକ ପାଇଁ ଅଟକିଯାଏ ସବୁ ଶୋଭା ଓ ବର୍ଣ୍ଣବିନ୍ୟାସକୁ ଉପଭୋଗ କରିବା ପାଇଁ । ତଳେ ଝରାପତ୍ର ସବୁ କିଛି ବିଷାଦ ଓ ବିଷର୍ଣ୍ଣତାର ସଙ୍କେତ । ପ୍ରତିଟି ବୃକ୍ଷରେ ସଦ୍ୟ କଅଁଳି ଥିବା ପତ୍ରର ସବୁଜିମା । କେଉଁଠି କେଉଁଠି ଗଛରେ ରଙ୍ଗ ବେରଙ୍ଗର ଫୁଲ ଓ ପତ୍ର । ସବୁକିଛି ଜନ୍ମମୃତ୍ୟୁ ଚକ୍ରର ପରିଭାଷା । ମୁଁ ଯୁଗ ଯୁଗର ଲେଖକ, କବି, ଭାବୁକ ଓ ଚିତ୍ରକରମାନଙ୍କୁ ମନେ ପକାଇଥାଏ । ଆହୁରି ମଧ ମନେ ପକାଇଥାଏ ମୋର ଅତୀତକୁ ଯେଉଁଠି ମୁଁ ଏଇ ଦିନମାନଙ୍କର ଉନ୍ମାଦନାକୁ ବିଭିନ୍ନ ପାଗଳାମୀରେ ପ୍ରକାଶ କରିଥାଏ । ଜୀବନ କେବଳ ଯୁଦ୍ଧ ଓ ସଂଘର୍ଷ ନୁହେଁ । ଲୟ ଓ ବିଲୟ ନୁହେଁ । ଜୟ ଓ ବିଜୟ ନୁହେଁ । ସବୁ ମିଶାମିଶି । ସେଇଥିପାଇଁ ବଞ୍ଚିବାର ଆନନ୍ଦ ଅଛି ବୋଲି ସହଜରେ ଅନୁଭବ କରିହୁଏ । ବିଖ୍ୟାତ ଔପନ୍ୟାସିକ ଟଲଷ୍ଟୟ "ୱାର୍ ଆଣ୍ଡ୍ ପିସ୍"ରେ ଏଇକଥା ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ଯୁଦ୍ଧର ବିଭୀଷିକା ଭିତରେ ମଣିଷ ସହ ମଣିଷର ସମ୍ପର୍କ ଓ ଭଲପାଇବାର ମହାକାବ୍ୟ "ୱାର୍ ଆଣ୍ଡ ପିସ୍" । ଜୀବନ ଯୁଦ୍ଧରେ ମୁଁ ଥକିଯାଉଥିବା ବେଳେ ଏ ଉପନ୍ୟାସର କନ୍‌ଷ୍ଟାନ୍‌ସ ଗାର୍ଣ୍ଣେଟ୍ (Constance Garnet)ଙ୍କ ଏକ ମୌଳିକ ଅନୁବାଦ ପଢ଼ିବାକୁ ସୁଯୋଗ ପାଇଥିଲି । ଏତେବଡ଼ ବହିଟି ପଢ଼ିବାକୁ ତିନିମାସ ସମୟ ଲାଗିଥିଲା ଅବଶ୍ୟ । କିନ୍ତୁ ମୋ ଭିତରେ ଲାଗି ରହିଥିବା ଅନେକ ଅନ୍ତର୍ଦ୍ୱନ୍ଦ୍ୱ ଓ ସଂଶୟ କିନ୍ତୁ ମୋ ଭିତରେ ଲୋପ ପାଇଥିଲା । ଜୀବନ ଯୁଦ୍ଧରେ ଜୟ ପରାଜୟର ଅର୍ଥ ବଦଳି ଯାଇଥିଲା । କେଜାଣି କାହିଁକି ମୁଁ ଯୌବନର ଏକ ନିର୍ଦ୍ଦିଷ୍ଟ ସ୍ତରରେ ଯୁଦ୍ଧ ସାହିତ୍ୟ ପଢ଼ିବାକୁ ଖୁବ୍ ଭଲ ପାଇଥିଲି । ସୈନିକ ଆହତ ଓ ପରାସ୍ତ ହୁଏ ନାହିଁ କେବେ । ସେଇଥିପାଇଁ ସେ ସବୁ ହିଂସା ଓ ରକ୍ତପାତ ଭିତରେ ଅଦ୍ଭୁତ ଐଶୀ ସତ୍ତାକୁ ଆବିଷ୍କାର କରିଥାଏ । ସତ୍ୟ ଓ ସୌନ୍ଦର୍ଯ୍ୟର ଅର୍ଥ ବୁଝିଥାଏ । ଏଇଥିପାଇଁ ଏରିକ୍ ମାରିଆ ରେମାର୍କ (Erich Maria

Remarque)ଙ୍କ "ଅଲ୍ କ୍ୱାଇଟ୍ ଅନ୍ ଦି ୱେଷ୍ଟର୍ଣ୍ଣ ଫ୍ରଣ୍ଟ"(All Quiet on the Western Front) ଆଜି ଏକ ଅମର ପୁସ୍ତକ । ମୁଁ ଓ ମୋର ବନ୍ଧୁମାନେ ଏ ବହିଟିକୁ କେତେଥର ପଢ଼ିଥିବୁ । ବହିଟିର ନାୟକ ଜଣେ ଜର୍ମାନ ସୈନିକ । ଅନେକ ବର୍ଷଧରି ପ୍ରଥମ ବିଶ୍ୱଯୁଦ୍ଧରେ ସାମିଲ୍ ହୋଇଛନ୍ତି । ବେଶି ସମୟ ବଙ୍କର୍‌ରେ କାଟିଛନ୍ତି । ମୃତ୍ୟୁର ବିଭୀଷିକା ଆଖିରେ ଦେଖିଛନ୍ତି । ଯୁଦ୍ଧ ସରି ଆସୁଛି । ଏହି ସମୟରେ ଶତ୍ରୁପକ୍ଷକୁ ମାରିବାକୁ ସମସ୍ତେ ତତ୍ପର । ୧୯୧୮ ମସିହାରେ ଶାନ୍ତିର କଥାବାର୍ତ୍ତା ଚାଲିଛି । ବହିର ନାୟକ ଏକ ବଗିଚାରେ ନିରୋଳାରେ ବସିଛନ୍ତି । ବାହାରେ ଚମତ୍କାର ଖରା ପଡିଛି । ଗଛମାନେ ସବୁ ସୁନ୍ଦର ଦେଖା ଯାଉଛନ୍ତି । କେଉଁଠି ଗଛରେ ଲାଲ୍‌ଫଳ ଧରି ସ୍ୱତନ୍ତ୍ର ସ୍ୱତନ୍ତ୍ର ଦେଖାଯାଉଛି । ଗାଁର ଅଙ୍କାବଙ୍କା ରାସ୍ତା ଆକାଶ ସହ ଦୂର ଦିଗ୍‌ବଳୟ ତଳେ ମିଶି ଯାଇଛି । ଏଇ ସମୟରେ ପ୍ରଜାପତିଟିଏ କେଉଁଠୁ ଉଡି ଆସିଛି ପାଖକୁ ଆହୁରି ପାଖକୁ । କିନ୍ତୁ ଛୁଇଁ ହେଉ ନାହିଁ । ନାୟକ ତାକୁ ଧରିବାକୁ ନୋଇଁ ପଡିଛନ୍ତି । ଏଇ ସମୟରେ କେଉଁ ଅଜଣା ଶତ୍ରୁର ଗୁଳିରେ ସେଇ ମୁହୂର୍ତ୍ତରେ ସେ ଟଳି ପଡିଛନ୍ତି । ଲେଖକ ରେମାର୍କ ଏଇ ଦୃଶ୍ୟ ବର୍ଣ୍ଣନା କରି କହିବାକୁ ଚାହିଁଛନ୍ତି ଯୁଦ୍ଧ ଓ ଶାନ୍ତିର ପାର୍ଥକ୍ୟ । ପ୍ରଜାପତିଟି ସୌନ୍ଦର୍ଯ୍ୟ ଓ ମୁକ୍ତିର ସଙ୍କେତ । ଯୁଦ୍ଧ ଓ ବଙ୍କର୍‌ରେ ସୈନିକର ଜୀବନ ହିଁ ଏହାର ଠିକ୍ ଓଲଟା । ଯୁଦ୍ଧ ଅପ୍ରାକୃତିକ ଓ ଅସୁନ୍ଦର । କିନ୍ତୁ ଏ ପୃଥିବୀ ପ୍ରାକୃତିକ ଓ ସୁନ୍ଦର । କିନ୍ତୁ ଏ ଭିତରେ ଯେମିତି କିଛି ସମ୍ପର୍କ ନାହିଁ । ଏଇ କଥା ମୁଁ ବାରମ୍ବାର ନିଜ ଜୀବନର ବିଭିନ୍ନ ପ୍ରତିଫଳନ ଭିତରେ ଅନୁଭବ କରିବାକୁ ଚାହିଁଛି । ଏଇଥିପାଇଁ ମହୁଲ ଓ ପଳାଶର ଫୁଲମାନଙ୍କୁ ଆପଣାର କରି ମୁଁ ପ୍ରକୃତି ସହ ଏକାକାର ହେବାର ଚେଷ୍ଟା ବାରମ୍ବାର କରି ଆସୁଛି । ଏଇଥିପାଇଁ ବଣ ଜଙ୍ଗଲରେ ମୁଁ ଘୂରି ବୁଲିବାକୁ ସବୁବେଳେ ଚାହିଁଛି । ବନବାସୀଙ୍କ ସହ ସମୟ କାଟିବାକୁ ଅହେତୁକ ଆଗ୍ରହ ଦେଖାଇଛି । ବଣୁଆନୀତିମାନଙ୍କୁ ବୁଝିବାକୁ ଚେଷ୍ଟା କରିଛି । ଆରଣ୍ୟକ ହେବାକୁ ଚାହିଁଛି । କେବେ ମଧ୍ୟ ଅରଣ୍ୟ ଭିତରେ ଆଶ୍ରମଟିଏ ପ୍ରତିଷ୍ଠା କରି କେଉଁ ଏକ ଚରମ ତପସ୍ୟା କରିବାକୁ ମନ କେତେଥର ଡାକିଛି । ପ୍ରକୃତି କୋଳରେ ଜଣେ ରହିଲେ କୁଆଡେ ନ୍ୟାୟ, ସମତା, ଐକ୍ୟ ଓ ସଂହତିର ଅସଲ ଅର୍ଥ ସହଜରେ ବୁଝିହୁଏ । ମଣିଷ ସମାଜରେ ଏସବୁର ଅର୍ଥ କିନ୍ତୁ ଭିନ୍ନ । ଏଇଥିପାଇଁ ମଣିଷ ତାହାର ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥାଏ ।

ଯେଉଁଭଳି ପ୍ରକୃତି ଓ ପରିବେଶର ଅବକ୍ଷୟ ହେଉଛି ଏବଂ ଏହାର ପ୍ରଭାବରେ ବିଭିନ୍ନ କ୍ଷେତ୍ରରେ ଯେଉଁଭଳି ପରିବର୍ତ୍ତନ ଦେଖା ଦେଇଛି, ତାହାକୁ ବିଜ୍ଞାନୀମାନେ ଯେଉଁଭଳି ଦେଖୁଛନ୍ତି, ସମାଜଶାସ୍ତ୍ରୀ ଓ ଦାର୍ଶନିକମାନେ ସେଇଭଳି ପ୍ରାୟ ଦେଖୁଛନ୍ତି । ସମସ୍ତେ କହୁଛନ୍ତି ଯେ ଏ ପୃଥିବୀ ଓ ସମାଜ ଧ୍ୱଂସାଭିମୁଖୀ । ଯଦି କିଛି ସ୍ୱତନ୍ତ୍ର ପଦକ୍ଷେପ ନିଆନଯାଏ, ତେବେ ଏହା ଘଟିବା ଅବଶ୍ୟମ୍ଭାବୀ । ଏଇଥିପାଇଁ ସାମ୍ପ୍ରତିକ ପୃଥିବୀର ଅନେକ ମୂଲ୍ୟବୋଧ ଓ ବିଷାକ୍ତ ପ୍ରତିକ୍ରିୟା ଆଦି ସବୁକିଛି ଗ୍ରହଣଯୋଗ୍ୟ ହେଉନାହିଁ ।

ଯାହା ପ୍ରକୃତିର ପ୍ରତିକୂଳ ତାହା ଆଜି ଗ୍ରହଣଯୋଗ୍ୟ ନୁହେଁ । ବିଜ୍ଞାନ ହେଉ, ଶିଳ୍ପ ହେଉ, କୃଷି ହେଉ ଅଥବା ବୈଷୟିକ ଜ୍ଞାନକୌଶଳ ହେଉ, ଯଦି ଏହା ପ୍ରକୃତିକୁ ଧ୍ୱଂସମୁଖକୁ ଟାଣି ନେଉଛି, ତାହାକୁ ପରିତ୍ୟାଗ କରିବା ପାଇଁ ଅନେକ ଢ଼ଙ୍ଗରେ ଆହ୍ୱାନ ଦିଆଯାଇଛି । ନୂତନ ଚିନ୍ତା ଓ ଚେତନା ଜନ୍ମ ହେଉଛି । ପ୍ରକୃତି କୋଳରେ ରହି ଏକ ପ୍ରାକୃତିକ ଓ ସରଳ ଜୀବନ ଯାପନ କରିବାକୁ ଅନେକ ଆଜି ଇଛା ପ୍ରକାଶ କରୁଛନ୍ତି । ସବୁ କୋଳାହଳ ଠାରୁ ଦୂରରେ ରହିବାକୁ ଓ ସବୁ କୃତ୍ରିମ ଆମୋଦ ପ୍ରମୋଦ ଠାରୁ ନିଜକୁ ସୁରକ୍ଷିତ ରଖିବାକୁ ଆଜି ମଣିଷ ଯେମିତି ପ୍ରତିମୁହୂର୍ତ୍ତରେ ଚେଷ୍ଟା କରୁଛି ।

ପ୍ରକୃତି ସହ ସାମିଲ୍ ହେବାକୁ ହେଲେ ପ୍ରକୃତିରେ କ'ଣ ଘଟିଛି ତାହା ଏକ ମୂଲ୍ୟବୋଧର ରୂପରେଖ ସହ ଅନୁଭବ କରିବାକୁ ହେବ । ଜୀବନ ଓ ମୃତ୍ୟୁର ଚକ୍ରକୁ ସ୍ୱୀକାର କରିବାକୁ ହେବ । ବେଙ୍ଗକୁ ସାପ ଖାଉଛି । ସାପକୁ ମଣିଷ ମାରୁଛି । ମଣିଷର ମୃତ୍ୟୁପରେ ତାହାର ଶରୀର ମାଟିରେ ମିଶୁଛି । ସେଇ ମାଟିରୁ ଗଛଲତା ଘାସ ଓ ବିଭିନ୍ନ ପ୍ରକାର ବାକ୍‌ଟେରିଆ ଜନ୍ମ ନେଉଛନ୍ତି । କୀଟ ପତଙ୍ଗ ବଞ୍ଚୁଛନ୍ତି ଏଇ ଗଛଲତାରୁ । ସେଇ କୀଟପତଙ୍ଗମାନଙ୍କୁ ଖାଇ ବେଙ୍ଗ ବଞ୍ଚୁଛି । ଗୋଟାଏ ପ୍ରକାର ଭାରସାମ୍ୟ ରକ୍ଷା ହେଉଛି । ପ୍ରତ୍ୟେକ ଜୀବ ଓ ଉଦ୍ଭିଦର ନିର୍ଦ୍ଦିଷ୍ଟ ଭୂମିକା ଅଛି । ସହାବସ୍ଥାନ ଓ ସହଯୋଗ ଭିତରେ ଜୀବଜଗତ ନିଜକୁ ସୁରକ୍ଷିତ ରଖିଛି । ଦୁର୍ବଳକୁ ସବଳ ଆକ୍ରମଣ କରୁଛି ସତ, ବିଶୃଙ୍ଖଳା ଓ ଅନିୟମତା ବ୍ୟାପିଛି ସତ ତଥାପି ପ୍ରକୃତିର ନିୟମ ହେଉଛି ଶାନ୍ତି ଓ ସଂହତି । ଏହାକୁ ଆଧାର କରି ପୃଥିବୀ ଓ ସଭ୍ୟତା ବଞ୍ଚି ରହିଛି । ବଣ ଜଙ୍ଗଲ ଭିତରେ କିଛି ସମୟ ନିରୋଳାରେ କାଟିଲେ ଏହା ଅନୁଭବ କରିବାକୁ ବେଶୀ ସମୟ ଲାଗିବ ନାହିଁ । ଏକଥା ସତ ଯେ କିଏ ବଡ଼ ଓ କିଏ ସାନ, କିଏ ସବଳ ଓ କିଏ ଦୁର୍ବଳ, କିଏ ଜ୍ଞାନୀ ଓ କିଏ ମୂର୍ଖ, କିଏ ଉଚ୍ଚ ଓ କିଏ ନୀଚ ଆଦିର ପ୍ରଶ୍ନ ସବୁବେଳେ ରହିଥିବ । କିନ୍ତୁ ଏସବୁ ଭେଦଭାବର ପ୍ରାଚୀରକୁ ଅତିକ୍ରମ କରି ମଣିଷକୁ ପ୍ରକୃତି କୋଳକୁ ଫେରିଯିବାକୁ ହେବ କେବଳ ଶାନ୍ତି ପାଇଁ ଓ ସଦ୍‌ଭାବନା ପାଇଁ । ଏହାକୁ ଆଧାର କରି ମଣିଷକୁ ପୁଣିଥରେ ଜୀବନର ମାନ ନିର୍ଦ୍ଧାରଣ କରିବାର ଅଛି । ବର୍ତ୍ତମାନର କୃଷିକୁ ଦେଖିଲେ ଅତ୍ୟାଧୁନିକ ଓ ବିଜ୍ଞାନ ସମ୍ମତ କୃଷି ପ୍ରଣାଳୀ ନାମରେ ପ୍ରକୃତିକୁ ଧର୍ଷଣ କରାଯାଉଛି । ସମସ୍ତ ନିୟମ ବହିର୍ଭୂତ କାର୍ଯ୍ୟକଳାପକୁ ପ୍ରୋତ୍ସାହନା ଦିଆଯାଉଛି । ଜଳ, ଜମି, ଜଙ୍ଗଲ ଓ ପରିବେଶର ଅବକ୍ଷୟ ହେଉଛି । ମହୁଲ ଗଛରେ ଫୁଲ ଫୁଟୁ ନାହିଁ । ପଳାଶ ଫୁଲର ରଙ୍ଗ ଫିକା ପଡିଛି । ମଣିଷ ବଣ ଜଙ୍ଗଲ ବନାନୀକୁ ବେରଙ୍ଗ କରିବାକୁ ସବୁ ପ୍ରକାର ଉଦ୍ୟମ କରୁଛି । ଏଇ ସବୁ କଥାକୁ ଲକ୍ଷ୍ୟ କରି ବିଖ୍ୟାତ ଜାପାନୀ କୃଷକ ଓ ଦାର୍ଶନିକ ମାସାବୁ ଫୁକୋକା ପ୍ରକୃତି କୋଳକୁ ଫେରି ଯିବାର ଆହ୍ୱାନ ଦେଇ ଯେଉଁ ଯୁଗାନ୍ତକାରୀ ପୁସ୍ତକ ଲେଖିଛନ୍ତି ତାହାର ନାମ ହେଉଛି "ଦି ୱାନ୍ ଷ୍ଟ୍ର ରିଭୋଲ୍ୟୁସନ୍"(The One Straw Revolution ) । ଏଇ ଆହ୍ୱାନ ଯଦିଓ ଧୀରେ ଧୀରେ ପୃଥିବୀର ଅଗଣିତ

ଲୋକଙ୍କୁ ପ୍ରଭାବିତ କରୁଛି, କିନ୍ତୁ ସମଗ୍ର ଭାବେ ଏ ପୃଥିବୀର ଚିନ୍ତନରେ ବୈପ୍ଳବିକ ପରିବର୍ତ୍ତନ ଆସିନାହିଁ । ଏଇଥିପାଇଁ ପ୍ରକୃତିର ଧର୍ଷଣ ଅତି ଭୟାନକ ଭାବେ ଅବାରିତ ରହିଛି । ମୁଁ ଫୁକୋକାଙ୍କ ଲିଖିତ ବହି ସବୁ ପଢ଼ି ସାମ୍ପ୍ରତିକ ସମସ୍ୟା ଗୁଡିକର ସମାଧାନ ପାଇଁ ଅବିରତ ଚେଷ୍ଟା କରୁଛି । ଏହାଛଡ଼ା ଯେମିତି ଅନ୍ୟ କୌଣସି ରାସ୍ତା ନାହିଁ । ପ୍ରକୃତି କୋଳରେ ନିଜର ଅସ୍ତିତ୍ୱକୁ ଅନୁଭବ କରିବାକୁ ଜଣେ କାହିଁକି ଦ୍ୱିଧା ପ୍ରକାଶ କରିବ ? ନିଜର ଅସ୍ତିତ୍ୱକୁ ହଜାଇବାକୁ ଜଣେ କାହିଁକି ପଛଘୁଞ୍ଚା ଦେବ ? ପ୍ରକୃତିର ଭୟଙ୍କର ପ୍ରତିମୂର୍ତ୍ତିରେ ଜଣେ କାହିଁକି ଭୟଭୀତ ହେବ ? ମୁଁ ଜାଣେ ଯେ ସମସ୍ତ ଜଟିଳତା ଓ କୁଟିଳତା ଭିତରୁ ନିଜକୁ ଓହରେଇ ଦେବାକୁ ହେବ । ଆଗକୁ ଆଗକୁ ଯିବାକୁ ହେବ । ନିଜସ୍ୱ ଚଲାପଥରେ । ଅନ୍ୟ କେଉଁଠି କୁଡିଆଟିଏ କରି ରହିଯିବାକୁ ହେବ, କିନ୍ତୁ ଗତାନୁଗତିକ ଜୀବନର ଲୋଭ ଆସକ୍ତି ଦୂର କରିପାରିବାର ଚେଷ୍ଟା ସତତ ଜାରି ରହିଥିବ । ଆଧାତ୍ମିକ ପଥରେ ପଥଚାରୀ ହୋଇଥିବା ମଣିଷଟିକୁ ଏକଥା ମନେ ରଖିବାକୁ ହେବ ।

□ □ □

## ୩୬

# ପଙ୍ଗୁ ଲଂଘୟତେ ଗିରି

ପିଲାଟି ଦିନରୁ ଭାଗବତ ପଢ଼ିବା ଓ ଶୁଣିବା ପରେ ଯଦି ମୁଁ କେଉଁ ବାକ୍ୟ ପ୍ରତି ସବୁଠାରୁ ବେଶୀ ଆକର୍ଷିତ ହୋଇଛି, ତାହା ହେଉଛି "ପଙ୍ଗୁ ଲଂଘୟତେ ଗିରି" । ଅର୍ଥାତ୍ ଜଣଙ୍କର ଅଦମ୍ୟ ଇଚ୍ଛାଶକ୍ତି ଓ ଭଗବତ୍ ବିଶ୍ୱାସ ଥିଲେ, ସେ ପଙ୍ଗୁ ହୋଇ ମଧ୍ୟ ଅକ୍ଲେଶରେ ପର୍ବତ ଅତିକ୍ରମ କରିପାରେ । ୨୦୦୬ ମସିହାରେ ନ୍ୟୁଜିଲାଣ୍ଡର ପର୍ବତାରୋହୀ ମାର୍କ ଇଙ୍ଗ୍‌ଲିସ୍ (Mark Inglis) କୃତ୍ରିମ ଗୋଡରେ ଏଭେରେଷ୍ଟ ଶୃଙ୍ଗ ଆରୋହଣ କରିବାର ଗୌରବ ଅର୍ଜନ କରିଛନ୍ତି । ୧୯୮୨ ମସିହାରେ ବରଫାବୃତ ଏକ ପର୍ବତ ଆରୋହଣ କରୁଥିବାବେଳେ ବରଫଝଡ଼ରେ ସେ ଶିକାର ହୋଇଥିଲେ । ଏଥିରେ ତାଙ୍କର ଗୋଡ ଦୁଇଟି ତୁଷାର କ୍ଷତରେ ଆକ୍ରାନ୍ତ ହୋଇଯାଇଥିଲା ଓ ତାହାକୁ କାଟିବାକୁ ପଡିଥିଲା । ତାଙ୍କର କିନ୍ତୁ ସ୍ୱପ୍ନ ଥିଲା ଯେ ସେ ଏଭେରେଷ୍ଟ ଶୃଙ୍ଗ ଚଢ଼ିବେ । ତେଣୁ କୃତ୍ରିମ ଗୋଡ ଲଗାଇ ସେ ଏଭେରେଷ୍ଟ ଅଭିଯାନରେ ବାହାରିଲେ । ଛଅ ହଜାର ଚାରିଶହ ମିଟର ଉଠିଲା ପରେ ଗୋଟିଏ କୃତ୍ରିମ ଗୋଡ ଭାଙ୍ଗି ଯାଇଥିଲା । ସେ କୌଣସି ପ୍ରକାରର ତାହା ମରାମତି କରି ଆପଣାର ସ୍ୱପ୍ନ ସାକାର କରିଥିଲେ । ଏଇ ଦୁଃସାହସିକ ଅଭିଯାନ ଆଜି ଗୋଟିଏ ଉଦାହରଣ ହୋଇ ରହିଛି - ତାହା ହେଉଛି "ପଙ୍ଗୁ ଲଂଘୟତେ ଗିରି ।" ମଣିଷ ସବୁବେଳେ ଅନୁଭବ କରିଛି ଯେ ଏପରି ସ୍ଥାନ ଓ ସମୟ ଯାହା ପ୍ରକୃତିର ଦୃଷ୍ଟିକୋଣରୁ ଅପହଞ୍ଚ ଓ ଦୁଃସାଧ୍ୟ, ତାହାକୁ ଅତିକ୍ରମ କରିବା । ସେଇଥିପାଇଁ ଇତିହାସରେ ମଣିଷର ଅଦ୍‌ଭୁତ ଦୁଃସାହସିକ ଅଭିଯାନ ବା ଆଡ୍‌ଭେଞ୍ଚରମାନଙ୍କୁ ସ୍ୱତନ୍ତ୍ର ସ୍ଥାନ ଦିଆଯାଇଛି । ଏପରି କିଛି ସ୍ଥାନ ନାହିଁ ଯେଉଁଠି ମଣିଷ ପାଦ ପକାଇ ନାହିଁ । ଉତ୍ତରମେରୁ ହେଉ ବା ଦକ୍ଷିଣମେରୁ ହେଉ, ଉଚ୍ଚତମ ଏଭେରେଷ୍ଟ ଶୃଙ୍ଗ ହେଉ ବା ଗଭୀରତମ ସମୁଦ୍ର ହେଉ, କୌଣସି ନା କୌଣସି ବାଟରେ ସେଠାରେ ମଣିଷ ପହଞ୍ଚିବାକୁ ବାରମ୍ବାର ଚେଷ୍ଟା କରିଛି ଓ ସଫଳ ହୋଇଛି । କେତେ ଯେ ମଣିଷ ଏଇ ସାହସିକ ଅଭିଯାନରେ ମୃତ୍ୟୁବରଣ କରିଛନ୍ତି ତାହାର ହିସାବ ନାହିଁ । କିନ୍ତୁ ସବୁଠାରୁ ଖୁସିର କଥା ଯେ ଏଇସବୁ ଅଭିଯାନରେ ଯାହା କିଛି ଅନୁଭୂତି ଅର୍ଜନ କରାଯାଇଛି, ତାହାକୁ ଲିପିବଦ୍ଧ କରାଯାଇଛି ଆତ୍ମଲିପି ହିସାବରେ ବା ଭ୍ରମଣ କାହାଣୀ ହିସାବରେ । ଏବେ ଅବଶ୍ୟ ଭିଡିଓକ୍ୟାମେରା ଓ ଅନେକ

କିଛି ଉନ୍ନତ ଟେକ୍ନୋଲୋଜିର ସାହାଯ୍ୟ ନେଇ ଏଇ ସବୁ ଦୁଃସାହସିକ ଅଭିଯାନର ବାସ୍ତବଚିତ୍ର ଉତ୍ତୋଳନ କରାଯାଇପାରୁଛି । କିନ୍ତୁ ଯୁଗେ ଯୁଗେ ଏଇ ସବୁ ଦୁଃସାହସିକ ଅଭିଯାନରୁ ଉଦ୍ଭବ ପୁସ୍ତକ ସବୁ ବିଶ୍ୱ ସାହିତ୍ୟରେ ଅମର ହୋଇ ରହିଯାଇଛି । ଏକଥା ସତ ଯେ ଏଇସବୁ ଅଭିଯାନ ସମାହିତ ପୁସ୍ତକ ଓ ଅଦ୍ୱିତୀୟ ସାହିତ୍ୟ ପଢ଼ି ନାହିଁ । କିନ୍ତୁ ଯେତିକି ପଢ଼ିଛି ତାହା ମୋତେ ଜଣେ ଦୁଃସାହସିକ ଅଭିଯାତ୍ରୀ ହେବାକୁ ବାରମ୍ୱାର ଆହ୍ୱାନ ଦେଉଛି । ଗତ ପଚାଶବର୍ଷ ଧରି ଏଇ ଶାରୀରିକ ଓ ବୌଦ୍ଧିକ ଅଭିଯାନ ମୋତେ ସମ୍ଭବତଃ ମୋର ମଣିଷପଣିଆକୁ ଉଦ୍‌ବୋଧକ କରି ରଖିବାକୁ ଅନେକ ସାହାଯ୍ୟ କରିଛି । ଏଇଥିପାଇଁ ଅଭିଯାନ କୈନ୍ଦ୍ରିକ ବହି ସବୁ ପଢ଼ିବାକୁ ଅନେକ ଭଲ ଲାଗିଛି ଓ ଭଲ ଲାଗୁଥିବା ବହି ଗୁଡିକୁ ମୁଁ ଅନେକ ବାର ପଢ଼ିବାରେ ଲାଗିଛି ।

ସର୍ବପ୍ରଥମେ ଚିତ୍ତଭାଇଙ୍କ ଲିଖିତ "ଶିଳାତୀର୍ଥ"କୁ ମୁଁ ମୋର ଅଭିଯାନ ସମ୍ପର୍କିତ ପୁସ୍ତକ ତାଲିକାରେ ପ୍ରଥମ ସ୍ଥାନ ଦେବି । "ହିମାଳୟ ଦର୍ଶନ" ଜଣେ ତୀର୍ଥଯାତ୍ରୀର ମନରେ କେଉଁଭଳି ଭାବାନ୍ତର ସୃଷ୍ଟି କରିଥାଏ ଓ ଶାରୀରିକ, ମାନସିକ ଓ ବୌଦ୍ଧିକ କ୍ଷେତ୍ରରେ କେଉଁଭଳି ଚମକ ଆଣିଦିଏ ମୁଁ ନିଜେ ହିମାଳୟ ଯିବାବେଳେ ଅନୁଭବ କରିଛି । ବାରମ୍ୱାର ସେଆଡକୁ ଯିବାକୁ ଚାହିଁଛି । ଉଚ୍ଚତମ ଶୃଙ୍ଗମାନଙ୍କୁ ଆରୋହଣ କରିବାର ସ୍ୱପ୍ନ ଦେଖୁଛି । ନିଜକୁ ଲୀନ କରି ଦେବାକୁ ବାରମ୍ୱାର ଚାହିଁଛି । ବନ୍ଧୁ ଶ୍ରୀ ଗଦାଧର ପରିଡା ନିଜେ "ମାନସରୋବର" ଓ "କୈଳାସ ପର୍ବତ" ଦୁଇଥର ଯାଇଛନ୍ତି ଓ ଭିଡିଓରେ ଅନେକ ଛବି ଉତ୍ତୋଳନ କରି ସାଇତି ରଖିଛନ୍ତି । ମୁଁ ଅଭିଭୂତ ହୋଇଛି ସେଠାର ଦୃଶ୍ୟ ଦେଖି ଓ ଚାଲି ଚାଲି "ମାନସରୋବର" ଏବଂ "କୈଳାସ ପର୍ବତ" ପରିକ୍ରମା କରିବାର ସ୍ୱପ୍ନ ଦେଖିଛି । ଆଉ ଜଣେ ବନ୍ଧୁ ବାଟରେ "ଓଂ ପର୍ବତ"ର ଫଟୋ ଉତ୍ତୋଳନ କରି କହିଛନ୍ତି ଯେ ଜଣକର ଭାଗ୍ୟ ଥିଲେ "ଓଂ" ପର୍ବତ ଦେଖି ପାରିବ । ହିମାଳୟ ଏହା ଦ୍ୱାରା ଗୋଟାଏ ସଭ୍ୟତା ଓ ତାହାର ଦର୍ଶନ ସୃଷ୍ଟି କରିବାକୁ ପ୍ରେରଣା ଯୋଗାଇଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । "ହିମାଳୟକୁ ଆଧାର କରି ଆଉ ଦୁଇ ତିନୋଟି ବହି ମୋତେ ବାରମ୍ୱାର ଆକର୍ଷିତ କରିଛି । ଗୋଟିଏ ବହି ହେଉଛି ମରିସ୍ ହେର୍ଜଗ୍ (Maurice Herzog) ଙ୍କ ଲିଖିତ ବହି 'ଅନ୍ନପୂର୍ଣ୍ଣା' । ଆଠ ହଜାର ମିଟର ଉଚ୍ଚ ଏଇ ଶୃଙ୍ଗ ଆରୋହଣ କରିବା ସବୁଠାରୁ ଦୁରୂହ ବ୍ୟାପାର । ଅମ୍ଳଜାନର ବିନା ସହାୟତାରେ ଲେଖକ ଓ ତାଙ୍କ ସାଥୀମାନେ ବହୁ କଷ୍ଟରେ ଶୃଙ୍ଗ ଉପରେ ପାଦ ଦେଇଛନ୍ତି । କିନ୍ତୁ ଫେରିଲାବେଳକୁ ବରଫଝଡ, ବରଫ ଧସିବା ଓ ହାତଗୋଡ଼ ହେମାଳ ହୋଇଯିବା (ଯାହାକୁ ଫ୍ରଷ୍ଟବାଇଟ୍ କୁହାଯାଏ) ଆଦି ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି । ହାତର ସବୁଆଙ୍ଗୁଠି ସେ ହରାଇଛନ୍ତି ଏହା ଦ୍ୱାରା ସେ ନିଜର ଯାତ୍ରା କାହାଣୀ ନିଜେ ଲେଖି ନପାରି ଅନ୍ୟଦ୍ୱାରା ଲେଖାଇଛନ୍ତି । ପର୍ବତାରୋହଣ ଉପରେ ଆଉ ଏକ ଚମତ୍କାର ବହି ହେଉଛି ଜନ୍ କ୍ରାକ୍ରୋର(Jan KraKaur)ଙ୍କ ଲିଖିତ "ଇନ୍‌ଟୁ ଥିନ୍ ଏୟାର" (Into Thin Air) ।

୧୯୯୬ ମସିହାରେ ଏଭେରେଷ୍ଟ ପର୍ବତ ଆରୋହଣ କିରବାକୁ ଆସିଥିବା ବିଭିନ୍ନ ଦଳ ଭିତରୁ ୧୨ ଜଣ ମୃତ୍ୟୁ ମୁଖରେ ପଡିଥିଲେ । ଏହାର କାରଣ ଲେଖକ ଦର୍ଶାଇବାକୁ ଯାଇ ଲେଖକ ପର୍ବତାରୋହଣ କିପରି ଏକ ଚମତ୍କାର ଚ୍ୟାଲେଞ୍ଜ ତାହା ବର୍ଣ୍ଣନା କରିଛନ୍ତି । ତାଙ୍କର ଈଶ୍ୱର ବିଶ୍ୱାସରେ କିପରି ଆସ୍ଥା ରହିଛି ତାହା ସେ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି ଯେ ପ୍ରଭାବଶାଳୀ ପର୍ବତର ଦେବୀ ମାଆ ଚୋମୋଲୁଙ୍ଗମାଙ୍କର ଅବମାନନା କରାଯାଇଥିବାରୁ ପର୍ବତାରୋହୀମାନଙ୍କର ମୃତ୍ୟୁ ହେଲା । ହିମାଳୟ ଉପରେ ଆଉ ଗୋଟିଏ ବହି ମୁଁ କେତେଥର ପଢ଼ିଥିବି ଓ ଅନ୍ୟବନ୍ଧୁମାନଙ୍କୁ ପଢ଼ିବାକୁ ପ୍ରେରଣା ଦେଇଥିବି । ଏହା ହେଉଛି ପିଟର ମାଥିଏସେନ୍(Peter Mathiesen)ଙ୍କ ଲିଖିତ 'ଦି ସ୍ନୋ ଲିଓପାର୍ଡ' (The Snow Leopard) । ସହଜରେ ଦେଖା ଦେଉନଥିବା ଏଇ ବିରଳ ବନ୍ୟଜନ୍ତୁକୁ ଦେଖିବାକୁ ଲେଖକ ହିମାଳୟର ଏକ ଚମତ୍କାର ଯାତ୍ରା ଆରମ୍ଭ କରିଛନ୍ତି । ସେ ଗଧିଆ, ହରିଣ ସବୁ ଦେଖିଛନ୍ତି କିନ୍ତୁ ବରଫ ଚିତାବାଘକୁ ଦେଖି ପାରି ନାହାନ୍ତି । ଏଇ ଅନ୍ୱେଷଣ କିନ୍ତୁ ତାଙ୍କ ପାଇଁ ଏକ ଆଧ୍ୟାତ୍ମିକ ଯାତ୍ରା ହୋଇଛି । ସେ ଅଞ୍ଚଳର ଛବିଳ ଲ୍ୟାଣ୍ଡସ୍କେପ୍, କଠିନ ଜୀବନ ଓ ନିଃସଙ୍ଗତାକୁ ଆଧାର କରି ବହିଟି ଲେଖିଛନ୍ତି ଜୀବନର ପୂର୍ଣ୍ଣତା ପାଇଁ । ଏଇ ମର୍ମରେ ଆଉ ଗୋଟିଏ ବହି ମୋ ମନରେ ସ୍ମରଣୀୟ ହୋଇ ରହିଛି ଏରିକ୍ ନିଉବି (Eric Newby)ଙ୍କ "ଏ ସର୍ଟ ୱାକ୍ ଇନ୍ ଦି ହିନ୍ଦୁ କୁଶ"(A Short Walk in the Hindu Kush) । ଆଫଗାନିସ୍ତାନର ଦୁର୍ଦ୍ଧର୍ଷ ମଣିଷ ଓ କର୍କଶ ପାର୍ବତୀୟ ମାଳାରେ ଲେଖକ ଏକ ଚମତ୍କାର ଆଡଭେଞ୍ଚର କରିଛନ୍ତି । ଆଜି ବିଶ୍ୱରେ ଭ୍ରମଣକାହାଣୀ ମାନଙ୍କରେ ଏହାର ସ୍ଥାନ ଅନେକ ଉଚ୍ଚରେ ରହିଛି ।

ହିମାଳୟର ପର୍ବତମାଳା ମୋତେ ଯେତିକି ଆର୍କଷଣ କରିଛି, ମରୁଭୂମି ସେତିକି ମଧ୍ୟ ଆକର୍ଷଣ କରିଛି । "ମରୁଭୂମି"ର ଯାତ୍ରୀ ଜୀବନର ଅର୍ଥ ଅନ୍ୟବାଟରେ ବୁଝିଥାଏ । ଉପରେ ଆକାଶ ଓ ତାରକା ଖଚିତ ରାତ୍ରି, ଦିନରେ ଉତ୍ତାପ ଓ ଧୂଳିଝଡ, ଦୂରଦୂରାନ୍ତର ମରୁଦ୍ୟାନ ଓ କ୍ଷଣିକେ ବଦଳୁଥିବା ମରୀଚିକାକୁ ଆଧାର କରି ବିଶ୍ୱ ସାହିତ୍ୟ ସୃଷ୍ଟି ହୋଇଛି । ସର୍ବପ୍ରଥମେ ଯେଉଁ ବହିଟି ମୋତେ ଗୋଟାପଣେ ଗ୍ରାସ କରିଛି ତାହା ହେଉଛି, ସେଣ୍ଟ ଏକ୍‌ସୁପ୍ରେ (Saint Exupery) ଙ୍କ ଅନବଦ୍ୟ କୃତି "ଉଇଣ୍ଡ, ସ୍ୟାଣ୍ଡ ଆଣ୍ଡ ଷ୍ଟାରସ୍' (Wind, Sand and Stars) । ଲେଖକଙ୍କ ଦି ଲିଟ୍‌ଲ୍ ପ୍ରିନ୍‌ସ (The Little Prince) ବହିଟି ଆମ ଜୀବନର ଅନ୍ୟତମ ଶ୍ରେଷ୍ଠପୁସ୍ତକ ହୋଇଥିଲେ ମଧ୍ୟ ପ୍ରଥମ ବହିଟି ଦ୍ୱାରା ମୁଁ ବେଶୀ ପ୍ରଭାବିତ ହୋଇଛି ବୋଲି ସ୍ୱୀକାର କରିଛି । ଲେଖକ ଜଣେ ପାଇଲଟ୍ ଓ କବି ମଧ୍ୟ । ଲେଖକ ଫ୍ରାନ୍‌ସରୁ ସ୍ପେନ୍‌କୁ ରାତ୍ରିରେ ଡାକ ସବୁ ପ୍ଲେନ୍‌ରେ ନେଉଥିଲେ । ଏହାଛଡା ସେ ଉତ୍ତର ଆଫ୍ରିକାର ମରୁଭୂମି ଉପରେ ଉଡାଜାହଜ ଚଳାଉଥିଲେ । କେତେବେଳେ ଇଞ୍ଜିନ୍ ଖରାପ ହେଉଥିଲା ତ କେତେବେଳେ ପ୍ରବଳ ଧୂଳିଝଡର ସାମ୍ନା କରିବାକୁ ପଡୁଥିଲା । ପ୍ରବଳ ଉତ୍ତାପ । ପିଇବାକୁ ପାଣି ନାହିଁ ପାଖରେ । କିନ୍ତୁ ସବୁକିଛିରେ ଆନନ୍ଦ ଅଛି । କିଛି ହେଲେ ଅସହ୍ୟ ନୁହେଁ । ଜୀବନ ବି । ଏଇ କଥା ବାରମ୍ବାର ସେ ବହିଟିରେ

ଲେଖିଛନ୍ତି ଓ ଯଥାର୍ଥତା ପ୍ରତିପାଦନ କରିଛନ୍ତି । ମରୁଭୂମି ଓ ସେଥିରେ ଦୁଃସାହସିକ ଅଭିଯାନ କରିଥିବା ଆଉଜଣେ ଲେଖକ ଓ ସୈନିକ ହେଉଛନ୍ତି ଟି.ଇ. ଲରେନ୍ସ (T.E. Lawrence) ଏବଂ ତାଙ୍କର ବହି 'ଦି ସେଭେନ୍ ପିଲାର୍ସ ଅଫ ଉଇସ୍‌ଡ୍‌ମ' (The Seven Pillars of Wisdom) ବହି ମୋ ଜୀବନରେ ଏକ ମାଇଲଖୁଣ୍ଟ ବୋଲି ମୁଁ ମନେ କରିଛି । ଆରବୀୟମାନଙ୍କୁ ଏକାଠି କରି ତୁର୍କୀ ସେନାମାନଙ୍କ ବିରୁଦ୍ଧରେ ଏକ ଯୁଦ୍ଧ ଅଭିଯାନ କରିବାରେ ସେ ନେତୃତ୍ୱ ନେଇଥିଲେ । ଏଇ ଅଭିଯାନର ଅନୁଭୂତି ସେ ମରୁଭୂମିର ସମସ୍ତ ବିଚିତ୍ରତାକୁ ପୁଞ୍ଜି କରି ଲେଖିବାକୁ ଚାହିଁଛନ୍ତି । ଏହା ଏକ ରୋମାଣ୍ଟିକ୍ ଅଭିଯାନ । ତାଙ୍କର ଲୋକପ୍ରିୟତା ଏତେ ବଢ଼ିଯାଇଛି ଯେ ସାହିତ୍ୟରେ ହେଉ କି ଇତିହାସରେ ହେଉ, ସେ ଲରେନ୍ସ ଅଫ୍ ଆରବିୟା ବୋଲି ନିଜକୁ ପରିଚିତ କରିଛନ୍ତି । ମୁଁ ମରୁଭୂମିର ସୀମା କେତେଥର ଛୁଇଁବାକୁ ଚାହିଁଛି, ରାତ୍ରିର ଗଭୀରତା ବଢ଼ିଲେ, ନିସ୍ତବ୍ଧତାକୁ ଉପଭୋଗ କରିବାକୁ ଚାହିଁଛି । ମୁକ୍ତ ଆକାଶ ତଳେ ଶୋଇବାକୁ ପସନ୍ଦ କରିଛି । ତୃଷାର୍ତ୍ତ ହୋଇ, ଦିଗଭ୍ରଷ୍ଟ ହୋଇ ମଧ୍ୟ ମୁଁ ଗୋଟିଏ କଥା ଅନୁଭବ କରିଛି । ସବୁଆଡେ କର୍କଶ ଓ ଧୂସର ବାଲୁକାଖଣ୍ଡ - ସ୍ୟାଣ୍ଡଡ୍ୟୁନ୍ । କିନ୍ତୁ ବଞ୍ଚିବାରେ ଅଦ୍ଭୁତ ଆନନ୍ଦ ଅଛି । ଦେଖିପାରିଲେ ଅନେକ ରଙ୍ଗ ବିଭବ ଭରି ରହିଛି ।

କିନ୍ତୁ ଜୀବନରେ ନଦୀ ସବୁବେଳେ ଭରି ଦେଇଛି ଚମତ୍କାର ପୂର୍ଣ୍ଣତା ଓ ମହନୀୟତା । ପିଲାଦିନରୁ ମୁଁ ବ୍ରାହ୍ମଣୀ ନଦୀକୂଳରେ ବସି ସନ୍ଧ୍ୟା ଉପଭୋଗ କରିଛି ଓ ଆତ୍ମବିଭୋର ହୋଇଛି । ଯଦି ମୋ ଭିତରେ ସେଦିନର ଆବେଗ ଆଜି ପର୍ଯ୍ୟନ୍ତ ଜୀବନ୍ତ ଓ କାବ୍ୟିକ ହୋଇରହିପାରିଛି ତାହା ଏହି ବହମାନ ନଦୀକୁ ନେଇ । ମୁଁ ସବୁବେଳେ ଚାହିଁଛି ଯେ ପାଦରେ ଚାଲିଚାଲି ନଦୀର ଉତ୍ପତ୍ତି ସ୍ଥଳ ଠାରୁ ସମୁଦ୍ର ସହ ସଙ୍ଗମସ୍ଥଳ ପର୍ଯ୍ୟନ୍ତ ଆବିଷ୍କାର କରିବା ପାଇଁ । ନଦୀଛୋଟ ହେଉ କି ବଡ଼ ହେଉ କିଛି ଯାଏଆସ ନାହିଁ । ଏହା ଏକ ଅପୂରଣୀୟ ଇଚ୍ଛା ହୋଇ ରହିଛି । ଅନ୍ୟ ଏକ ଆଶା ରହିଛି ମନରେ । ତାହା ହେଉଛି ପଥଚାରୀ ହେବା ପାଇଁ । ବନଚାରୀ ବି ହେବା ପାଇଁ । ବେଳେବେଳେ ଅଦ୍ଭୁତ ଖିଆଲ ମନକୁ ଆସୁଛି ଯେ ଓଡ଼ିଶାର ମୋଟୁ ଠାରୁ ଆରମ୍ଭ କରି ମୟୂରଭଞ୍ଜ ପର୍ଯ୍ୟନ୍ତ ଖାଲିପାଦରେ ଚାଲି ଚାଲି ସବୁକିଛି ନୂତନ ଢ଼ଙ୍ଗରେ ଆବିଷ୍କାର କରିବା ପାଇଁ । ସବୁକିଛି ବଦଳିବାରେ ଲାଗିଛି ଏବେ । ପରିବର୍ତ୍ତନର ସୁଅ ମୁହଁରେ ପତର ଭଳି ନଭାସି ମଣିଷ କିପରି ନିଜକୁ ସୁରକ୍ଷିତ ରଖି ପାରିଛି ତାହାକୁ ଅଙ୍ଗେ ନିଭାଇବାକୁ ହିଁ ଚେଷ୍ଟା କରିବ ବୋଲି ଭାବି ଆସୁଛି । ଏବେ ସୁଦ୍ଧା ମୁଁ ଜାନୁଭଗ୍ନ ହୋଇ ନାହିଁକି ପରାସ୍ତ ସୈନିକ ହୋଇନାହିଁ ।

❑❑❑

୩୭

# ନଦୀ ଓ ଜୀବନ ଯାତ୍ରା

ପର୍ବତ ଓ ନଦୀ, ନଦୀ ଓ ଉପତ୍ୟକା, ଉପତ୍ୟକା ଓ ସଭ୍ୟତା, ସଭ୍ୟତା ଓ ସଂସ୍କୃତି ଓ ଏସବୁ ଭିତରେ ମୋର ନିଜର ସ୍ଥାନ ନିର୍ଦ୍ଧାରଣ କରିବାକୁ ମୁଁ ଯିମିତି ଜୀବନସାରା ପ୍ରୟାସ କରି ଆସିଛି । ନଦୀକୁ ଆଧାର କରି ଲେଖାଯାଇଥିବା କବିତା ଓ ଉପନ୍ୟାସ, ଦର୍ଶନ ଓ ଇତିହାସ, ଆତ୍ମକଥା ଓ ଦୁଃସାହସିକ ଯାତ୍ରା ଗୁଡିକୁ ପଢ଼ିବାକୁ ସୁଯୋଗ ପାଇଛି । ନଦୀକୁ କେନ୍ଦ୍ରକରି ଚିତ୍ରକର ସୃଷ୍ଟିମାନଙ୍କୁ ଦେଖିଛି ଓ ବୁଝିବାକୁ ଚେଷ୍ଟା କରିଛି ସେମାନଙ୍କର ମନର କଥା । ବହମାନ ନଦୀର ଆକର୍ଷଣ ଚିରନ୍ତନ । ନଦୀରେ ନୌକା ଚଳାଉଥିବା ନାବିକର ଜୀବନୋଲ୍ଲାସ ଚମତ୍କାର । ଜ୍ୟୋତ୍ସ୍ନାବିଧୌତ ରାତ୍ରିରେ ମୁଁ ନଦୀକୂଳରେ ବସି ଅନେକ ରାତି କାଟିଛି । ନଦୀ ଉପନଦୀମାନଙ୍କୁ ବୁଝିବା ପାଇଁ ଭୂଗୋଳର ପୃଷ୍ଠା ବାରମ୍ବାର ଉନ୍ମୋଚନ କରିଛି । ନଦୀର ସୃଷ୍ଟି ଓ ଅବଶେଷରେ ସମୁଦ୍ର ସହ ସଙ୍ଗମ ଭିତରେ ଏକ ନିବିଡ଼ ସମ୍ପର୍କ ରହିଛି । ବିଜ୍ଞାନ କହୁଛି ଏହାକୁ ଜଳଚକ୍ର । ଦର୍ଶନ କହୁଛି ଯେ ନଦୀର ଅଙ୍କାବଙ୍କା ଗତିପଥ ମଣିଷ ଜୀବନ ଭଳି । ପ୍ରତି ପଦକ୍ଷେପରେ ଏହା ବଦଳିବାରେ ଲାଗିଛି । କେଉଁଠି ଅଛି ସାମ୍ନାରେ ପାହାଡ ଯାହାକୁ ଅତିକ୍ରମ କରିବାକୁ ହେବ ଯେମିତି ହେଲେ ବି । କେଉଁଠି ସୃଷ୍ଟି ହେବ ଗଣ୍ଡ ବା କେଉଁଠି ସୃଷ୍ଟି ହେବ ହ୍ରଦ ପ୍ରପାତ । ସବୁ ଛବିଳ ଓ ସୁନ୍ଦର । ମଣିଷ ବାରମ୍ବାର ଚେଷ୍ଟା କରିଛି ବହମାନ ସ୍ରୋତକୁ ଅଟକାଇବା ପାଇଁ । ବାନ୍ଧିଛି ବନ୍ଧ, ତିଆରି କରିଛି ଆନିକଟ୍ ଓ କେନାଲ । କିନ୍ତୁ ଅଟକାଇ ପାରିଛି କି ? ଏସବୁ ଆତ୍ମନିରୀକ୍ଷଣ ପାଇଁ ଚମତ୍କାର ପ୍ରେରଣା । ଆତ୍ମସତ୍ତା ଓ ପରିପୂର୍ଣ୍ଣତା ପାଇଁ ଏକ ଦିଗ୍‌ଦର୍ଶନ । ଜୀବନ ଆମ ସମସ୍ତଙ୍କର ଏଇଭଳି । ଭୂମି ତଳେ ବି ନଦୀ ପ୍ରବାହିତ ହେଉଛି ସତ କେଉଁଠି ନା କେଉଁଠି ଆତ୍ମପ୍ରକାଶ ନିଶ୍ଚିତ କରୁଛି । ମଣିଷ ନିଜକୁ କେତେବେଳେ ହେଲେ ଆତ୍ମଗୋପନ କରି ପାରିବ ନାହିଁ । ସବୁ ଝଡଝଞ୍ଜା, ସ୍ଥିରତା ଓ ସ୍ଥବିରତା, ଆକାର ଓ ପ୍ରକାରକୁ ନେଇ ଜୀବନଯାତ୍ରା । ମୋର ଏବଂ ଆମ ସମସ୍ତଙ୍କର । କେହି ଅଟକି ଯାଇ ପାରିବ ନାହିଁ । ପୂର୍ବ ନିର୍ଦ୍ଧାରିତ ଗତିପଥରେ ଆମକୁ ଚାଲିବାକୁ ହେବ ଅନନ୍ତକାଳ ପାଇଁ । ପ୍ରତିଟି ମୁହୂର୍ତ୍ତରେ ନୂତନ ଆବିଷ୍କାର । ବଞ୍ଚିବାର ମହକ ଏହା ନୁହେଁତ ଆଉ କ'ଣ ? ନଦୀ ସମୁଦ୍ର ସହ ମିଶିଯାଉଛି ଓ ଲୀନ ହୋଇଯାଉଛି । ମଣିଷ

ବି ପରମାତ୍ମା ସହ ମିଶିଯାଇ ନିଜର ଜୀବନ ଯାତ୍ରା ଶେଷ କରୁଛି । ସବୁ ଆଧ୍ୟାତ୍ମିକ ଜିଜ୍ଞାସା ଓ ପରିଭାଷା ସମ୍ଭବତଃ ଏହିଭଳି । ବିଶ୍ୱାସ କର ବା ନକର, ଜଳବିନ୍ଦୁରୁ ଆରମ୍ଭ ହୋଇଥିବା ନଦୀ ଏ ମଣିଷକୁ ନିଜ ସହ ପରିଚିତ ହେବାକୁ ସାହାଯ୍ୟ କରିଛି । ସତ୍ୟ, ଶିବ, ସୁନ୍ଦରର ଆଲେଖ୍ୟ ହେଉଛି ନଦୀ । ଏଇଥିପାଇଁ ମଣିଷ ନଦୀତଟରେ ଗଢ଼ିଛି ଜନବସତି ଓ ତିଆରି କରିଛି ମନ୍ଦିର ଓ ପୂଜାସ୍ଥଳ । ଗଙ୍ଗାନଦୀ ଏହାର ଏକ ଜ୍ୱଳନ୍ତ ଉଦାହରଣ । ନଦୀ ହେଉଛି ଆମର ମାଆ । ଏକଥା ଅସ୍ୱୀକାର କରି ହେବକି ?

ନଦୀକୂଳରେ ଆମ ସହର । ସ୍କୁଲକୁ ଯିବା ରାସ୍ତା ନଦୀକୂଳକୁ ଲାଗିଛି ବୋଲି ଶୈଶବର ସବୁ ଆବେଗ ଓ ଚିନ୍ତନ ଯିମିତି ଉଦ୍‌ଭବ ହୋଇଛି ଏହି ଚଲାପଥରେ ଚାଲିଚାଲି । ବନ୍ଧୁତ୍ୱର ଡୋର ବନ୍ଧା ହୋଇଛି ନଦୀକୂଳରେ । ନଦୀରେ ପହଁରା ଶିଖିଲାବେଳେ ତିନିଥର ବୁଡି ଯାଉଥିଲା ବେଳେ କିଏ ନା କିଏ ମୋତେ ଉଦ୍ଧାର କରିଛି । ହେଲେ ମୁଁ ଏପର୍ଯ୍ୟନ୍ତ ପହଁରିବା ଶିଖି ନାହିଁ । ଦୁର୍ବଳ ମୁହୂର୍ତ୍ତରେ ଯଦି କେବେ ଆତ୍ମହତ୍ୟା କରିବାର ଭାବନା ମନ ଭିତରକୁ ଆସିଛି, ତେବେ ନଦୀର ଗଭୀର ଜଳକୁ ଲମ୍ଫଦେଇ ନିଜକୁ ଶେଷ କରିଦେବାର ଏକ ରୋମାଞ୍ଚଭରା ଯୋଜନା ମୁଣ୍ଡଟେକିଛି । ମାଛ ମାରୁଥିବା କେଉଟମାନଙ୍କର ଡଙ୍ଗାରେ ମୁଁ କେତେବାର ଗଭୀର ଜଳର ଘନନୀଳ ବିସ୍ତୃତି ଉପରେ ଆକାଶର ହାଲୁକା ବାଦଲର ପ୍ରତିଫଳନ ମୋର ଏକାଗ୍ରତା ଓ ଅନ୍ୱେଷଣକୁ ଏକ ନିର୍ଦ୍ଦିଷ୍ଟ ରୂପ ଦେଇଛି । ମୁଁ ବି କେତେଥର ଚାହିଁଛି ନୌକାର ନାବିକ ହେବା ପାଇଁ । ପାଲଟଣା ଡଙ୍ଗାରେ ମଙ୍ଗ ଧରିବାକୁ କେତେଥର ମନ ଡାକିଛି । ଅଜାଙ୍କ ଗାଁରେ ନଦୀର ଏକ ଗଭୀର ଗଣ୍ଡ । ଧୀବରମାନଙ୍କର ଖୁବ୍ ଭିଡ ସେଠି । ସବୁ ପ୍ରକାରର ମାଛ ଜାଲରେ ପଡନ୍ତି । ପିଲାଦିନର ଅନେକ ଅନୁଭୂତି ଆଜି ପର୍ଯ୍ୟନ୍ତ ଅଭୁଲା ରହିଛି । ଆମର ନଦୀର ଉପର ମୁଣ୍ଡରେ ନାଉରିଆମାନେ କାଠ ଓ ବାଉଁଶ ଭେଳା ଆଣନ୍ତି । କୋଇଲାଖଣିରେ କାଠର ବ୍ୟବହାର ଖୁବ୍ ବେଶି । ନାଉରିଆମାନଙ୍କୁ ମୁଁ ପଚାରିଥାଏ ସେମାନଙ୍କର ଜୀବନ କଥା । କେତେ ଦିନର ଯାତ୍ରା । ନୌକାରେ ରୋଷେଇ ହୁଏ । ନଦୀରୁ ମାଛ ଧରାଯାଏ । ଦିନ ନାହିଁ, ରାତି ନାହିଁ ଡଙ୍ଗା ଭାସି ଚାଲିଥାଏ । ମୁଁ ସେମାନଙ୍କ ସହ ଏଇମିତି ଯିବାକୁ ପ୍ରସ୍ତାବ ଦେଉଥାଏ । ସେମାନେ ହସନ୍ତି ଓ କହନ୍ତି ମୁଁ ଖୁବ୍ ଛୋଟ ପିଲା । ଡର ଲାଗିବ ମଝି ନଈରେ ଗଲାବେଳେ । କବି ମାୟାଧର ମାନସିଂଙ୍କ "ମହାନଦୀରେ ଜ୍ୟୋତ୍ସ୍ନାବିହାର", ମାର୍କ ଟ୍ୱେନ୍‌ଙ୍କ "ହକଲ୍‌ବେରୀ ଫିନ୍", ହରମାନ୍ ହେସ୍‌ଙ୍କ "ସିଦ୍ଧାର୍ଥ", ନଇପଲ୍‌ଙ୍କ "ଏ ବେଣ୍ଡ ଇନ୍ ଦି ରିଭର", ମାର୍କ୍ୱେଜଙ୍କ "ଲଭ୍ ଇନ୍ ଦି ଟାଇମ୍ ଅଫ କଲେରା" ଆଦି ଲେଖା ପଢ଼ିବା ପୂର୍ବରୁ ମୁଁ ନଦୀ ସହ ପ୍ରେମରେ ପଡିଯାଇଥିଲି । ଆଜି ଏ ପ୍ରେମ କୂଳ ଲଂଘିଛି । ନଦୀ ଖାଲି ଏକ ଦର୍ଶନ ନୁହେଁ । ଏହା ଏକ ବିଜ୍ଞାନ ଓ ପର୍ଯ୍ୟାବରଣ ବ୍ୟବସ୍ଥା । ଆହୁରି ମଧ ଏହା ଏକ ସାଂସ୍କୃତିକ ଉତ୍ସ । ନଦୀରେ କେବଳ ପାଣି ନାହିଁ, ଏଥିରେ ଅଛି ମାଛ, ବେଙ୍ଗ, ପୋକଜୋକ, ବୃକ୍ଷଲତା ଓ ଅନେକ ଜୈବବିବିଧତା । ନଦୀ ଗଢିମନ୍ତ କରିଛି ଜନବସତି, ଭାଷା, ସଙ୍ଗୀତ ଓ ଅଦ୍ୱିତୀୟ ପରିବେଶ । ନଦୀ ମଧ ସୃଷ୍ଟି କରିଛି

ରାଜନୀତି ଓ ସଂଘର୍ଷ । ବିଭିନ୍ନ ପ୍ରକାରର ସଂଘର୍ଷ ଓ ଦ୍ୱେଷ । ନଦୀ ସବୁ କଳୁଷିତ ଓ ପ୍ରଦୂଷିତ ହୋଇଛି ଅନେକ କ୍ଷେତ୍ରରେ । ବୃହତ୍ ନଦୀବନ୍ଧ ଯୋଜନା ଅନେକଙ୍କୁ ବାସଚ୍ୟୁତ କରିଛି । ଅନେକ ନଦୀରେ ମାଛ ଆଉ ନାହାନ୍ତି । ନଦୀଜଳ ଏବେ ମଣିଷର ବ୍ୟବହାରଯୋଗ୍ୟ ହେଉନାହିଁ । ନଦୀ ଏବେ ବାଣିଜ୍ୟ ଓ ବେପାରର ସାମଗ୍ରୀ ହୋଇଯାଇଛି । କେଉଁଠି ନଦୀ ଶୁଖିଲା ରହୁଛି ତ ଆଉ କେଉଁଠି ବନ୍ୟା ବିପ୍ଲାତ ସୀମା ଟପିଛି । ଆଧାତ୍ମିକତାର ପରିଭାଷା ଯେମିତି ଲୋପ ପାଇଯାଇଛି ସବୁଦିନ ପାଇଁ । ମଣିଷ ତାହାର ବିଭିନ୍ନ କାର୍ଯ୍ୟକଳାପ ପାଇଁ ନଦୀମାନଙ୍କୁ ନର୍ଦ୍ଦମାରେ ପରିଣତ କରିଦେଇଛି । କେଉଁଠି କେଉଁଠି ନଦୀମାନେ ଜୀବନଶୂନ୍ୟ ହୋଇପଡିଛନ୍ତି । ନଦୀକୁ ନେଇ ସବୁ ଆବେଗମୟ କବିତା ଯେମିତି ଶେଷ ହୋଇଛି ।

ଏବେ ମଧ୍ୟ ମୁଁ ନିରାଶ ହୋଇନାହିଁ । ନଦୀର ନାବିକ ହୋଇ ଅଥବା ନଦୀକୂଳର ପଥଚାରୀ ହୋଇ ମୁଁ ନଦୀକୁ ଅନ୍ତରଙ୍ଗତା ସହ ଭଲ ପାଇବାକୁ ଆନ୍ତରିକ ଚେଷ୍ଟା କରିଆସୁଛି । ନଦୀ ଉପରେ ଲେଖା ଯାଇଥିବା ବିଶ୍ୱ ସାହିତ୍ୟକୁ ପଢ଼ିବାକୁ ଖୋଜୁଛି । ବିଶ୍ୱକବି ରବୀନ୍ଦ୍ରନାଥ କୁଆଡେ କୋପାଇ ନଦୀ କୂଳରେ ତାଙ୍କର କବିତା ରଚନା କରୁଥିଲେ । ଅନେକ ଚରିତ୍ରର ସୃଷ୍ଟି ମଧ୍ୟ ଏଇ ନଦୀକୁ ନେଇ । ଏବେ ମଧ୍ୟ ବିଶ୍ୱକବିଙ୍କୁ ଅନୁଭବ କରିବା ପାଇଁ କୁଆଡେ ଅନେକେ କୋପାଇ ନଦୀ କୂଳକୁ ଯାଉଛନ୍ତି । ଲ୍ୟାଣ୍ଡସ୍କେପ୍ ବଦଳିଛି ସତ କିନ୍ତୁ କିମ୍ବଦନ୍ତୀ ମରିନାହିଁ । ବିଶ୍ୱ ସାହିତ୍ୟରେ ନିଜକୁ ଅନେକ ଉଚ୍ଚରେ ପ୍ରତିଷ୍ଠା କରିଥିବା ଲେଖକ ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍ ଲେଖିଛନ୍ତି "ଦି ରିଭର ଅଫ ଆୱାର୍ ଲାଇଫ୍" (The River of Our Life) । ସେ ଲେଖିଛନ୍ତି ଯେ ଯଦି କେହି ତାଙ୍କୁ ଆଉଥରେ ପିଲା ହେବା ପାଇଁ କହେ, ସେ ମାଗ୍‌ଡେଲେନା(Magdelena) ନଦୀରେ ନୌଯାତ୍ରା କରିବା ପାଇଁ ଇଚ୍ଛା କରିବେ । ଯିଏ ଏହି ନୌଯାତ୍ରା କେବେ କରିନାହିଁ, ସେ ତାହାର ମଜା ଜାଣିପାରିବ ନାହିଁ । ସେ ସ୍କୁଲରେ ପାଠ ପଢ଼ିଲାବେଳେ ବର୍ଷକୁ ଦୁଇଥର ଏହି ନୌଯାତ୍ରା କରିଥାଆନ୍ତି । ମାର୍କ୍ୱେଜ୍ କହିଛନ୍ତି ଯେ ସ୍କୁଲରେ ଯାହା ପଢ଼ିଥାଆନ୍ତି, ଏଇ ନୌଯାତ୍ରାରେ ତାହାଠାରୁ ଅଧିକ ଶିଖି ଥାଆନ୍ତି । କଲମ୍ବିଆର ରାଜଧାନୀ "ବଗୋଟା"ରୁ ତାଙ୍କର ଜନ୍ମସ୍ଥାନ ପାଞ୍ଚଦିନର ଯାତ୍ରା । ଯଦି ନଦୀରେ ବଢ଼ି ଆସିଥାଏ, ତେବେ ଏହା ତିନି ସପ୍ତାହ ଲାଗି ପାରେ । ଯଦିଓ ନୌଯାତ୍ରା ଖୁବ୍ ଧୀର ମନ୍ଥର ହୋଇଥାଏ । ଦିନରେ ଯାତ୍ରୀମାନେ ଡ଼େକ୍ ଉପରେ ବସି ଦୃଶ୍ୟପଟ୍ଟ ଦେଖୁଥାଆନ୍ତି । କୁମ୍ଭୀରମାନେ ନଦୀ କୂଳରେ ଶୋଉ ଥାଆନ୍ତି ପାଟି ଆଁ କରି । ନୌକା ଆସିଲା ମାତ୍ରକେ ବହୁ ସଂଖ୍ୟକ ବଗ ଉଡୁ ଥାଆନ୍ତି । ନଦୀରେ ମାଛମାନେ ନଦୀରେ ପହଁରୁ ଥାଆନ୍ତି । ବେଳେବେଳେ ଗୋରୁମାନଙ୍କର ଶବ ଭାସିଆସେ । ତୀବ୍ର ଗନ୍ଧ । ଗୋରୁ ଶବ ଉପରେ ଶାଗୁଣାଟିଏ ବସିଥାଏ । କେତେବେଳେ ମାଙ୍କଡ ପଲ ସକାଳର ନିଦ ଭାଙ୍ଗି ଦିଅନ୍ତି । ଶୁଆମାନଙ୍କର କଳରବ ମଧ୍ୟ ସକାଳକୁ କୋଳାହଳ କରିଦିଏ । ଏବେ ଉଡାଜାହାଜର ଯାତ୍ରା ସବୁକିଛି

ବଦଳାଇ ଦେଉଛି । ମାଗ୍‌ଡେଲେନା ନଦୀରେ ନୌଯାତ୍ରା ସମସ୍ତଙ୍କୁ ଗୋଟାଏ ବଡ଼ ପରିବାରର ସଦସ୍ୟ କରିଦିଏ । ସମସ୍ତେ ପୁଣିଥରେ ଏକାଠି ମିଳିତ ହୋଇ ଏ ଯାତ୍ରା କରିବାକୁ ପ୍ରସ୍ତାବ ଦିଅନ୍ତି । ସବୁ ଆନନ୍ଦର କଥା । ନୌଯାତ୍ରା ଯେମିତି ଅଧିକ ସମୟ ନେବ, ସେଥିରେ ଅଧିକ ଆନନ୍ଦ ଥିବ ।

ଏବେ କିନ୍ତୁ ମାଗ୍‌ଡେଲେନା ନଦୀଟି ମରିଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ପାଣି ଏବେ ବିଷାକ୍ତ । ନଦୀର ସମସ୍ତ ପ୍ରାଣୀ ମୃତ ଓ ଲୁପ୍ତପ୍ରାୟ । କେତେ ଜଣ ସଚେତନ ସାମ୍ବାଦିକ ନଦୀର ଦୁରବସ୍ଥା ଲୋକଲୋଚନକୁ ଆଣିବା ପରେ ଏବେ ନଦୀଟିକୁ "ପୁଣି ଜୀବିତ କରିବାକୁ ଉଦ୍ୟମ ହୋଇଛି । କୋଟି କୋଟି ସଂଖ୍ୟାରେ ବୃକ୍ଷରୋପଣ କରାଯାଉଛି । କିନ୍ତୁ ନଦୀର ପାର୍ଶ୍ୱବର୍ତ୍ତୀ ଜମି ସବୁ ଲୋକଙ୍କର ଘରୋଇ ସମ୍ପତ୍ତି । ବୃକ୍ଷରୋପଣ ପାଇଁ ସେମାନେ ଜମିଛାଡିବେ କି ନାହିଁ କିଏ କହିବ ? ନଦୀର ପାଣି ଏତେ ପ୍ରଦୂଷିତ ଯେ ଏହାକୁ ବ୍ୟବହାର କରିବାକୁ ଆସୁ ନାହାନ୍ତି । ସହରମାନଙ୍କର ଅଳିଆ ମଳିଆ, ଶିଳ୍ପମାନଙ୍କର ବର୍ଜ୍ୟବସ୍ତୁ, ମଣିଷ ଓ ପଶୁମାନଙ୍କ ମଳ ଓ କୃଷିଜାତ ପଦାର୍ଥରୁ ନିର୍ଗତ ମଇଳା ଦ୍ୱାରା ନଦୀଟି ଭରି ଯାଇଛି । ନଦୀଟିକୁ କମାଇବା ପାଇଁ ୩୦ଟି ଖଣ୍ଡରେ ବିସ୍ତୃତ ଯୋଜନା କରାଯାଇଛି । ଏହା କଲମ୍ବିଆରେ ଚହଳ ପକାଇଛି । ମାଗ୍‌ଡେଲେନା ନଦୀକୂଳରେ ରହୁଥିବା ଲୋକମାନେ ଚାହିଁଲେ ନଦୀର ସମସ୍ୟା ଓ ସମାଧାନକୁ ନେଇ ଏକ ନୂତନ ରାଷ୍ଟ୍ରପତି ନିର୍ବାଚିତ କରିପାରିବେ । ମୋର ଆଶା ଅଛି ଯେ ମୋ ପ୍ରିୟ ସହରର ପାର୍ଶ୍ୱରେ ବୋହୁଥିବା ନଦୀଟି ମ୍ୟାଗ୍‌ଡେଲେନା ନଦୀଭଳି ପ୍ରଦୂଷିତ ଓ ପରିତ୍ୟକ୍ତ । କିନ୍ତୁ ରାଜନୈତିକ କର୍ମଚିନ୍ତନ ବଳରେ ଏହାକୁ ପୁଣି ସୁଧାରି ହେବ ଓ ସଂରକ୍ଷଣ କରାଯାଇ ପାରିବ । ଆମେ ସମସ୍ତେ ଏହିଦିନ କେବେ ଆସିବ ଏହାର ଅପେକ୍ଷାରେ ଅଛୁ ।

❒ ❒ ❒

୩୮

# ନଦୀ ଓ ଉପନଦୀ, ଜୀବନ ଓ ଜିଜ୍ଞାସା

ନଦୀଟିଏ କେତେ ଆପଣାର ତାହା କେବଳ ଅନୁଭବ କରିହୁଏ । ବେଳେବେଳେ ତାହାର ଉଚ୍ଛ୍ୱାସ ସମସ୍ତଙ୍କୁ ଅଭିଭୂତ କିରଥାଏ । କବି ଓ ଲେଖକ, ଚିତ୍ରଶିଳ୍ପୀ ଓ ସଂଗୀତଜ୍ଞ – ସମସ୍ତଙ୍କ ପାଇଁ ନଦୀ ଭାବାନ୍ତର ସୃଷ୍ଟି କରିଥାଏ ବୋଲି ସବୁ ଦେଶରେ, ସବୁ ସାହିତ୍ୟ ଓ ସଂସ୍କୃତିରେ ଏହାର ସଙ୍କେତ ସବୁଦିନ ପାଇଁ ରହିଯାଇଛି । ମଣିଷ ତାହାର ସୃଷ୍ଟି ଦିନଠାରୁ ନଦୀ ସହ ସମ୍ପର୍କ ଯୋଡ଼ିଛି ଓ ନଦୀର ବହମାନ ସ୍ରୋତଭଳି ଅଟକି ଯାଇନାହିଁ କେଉଁଠି । ଜଣେ ସଚେତନ ମଣିଷ ଗଙ୍ଗୋତ୍ରୀ, ଯମୁନୋତ୍ରୀ ବା ଅମରକଣ୍ଟକ ନଗଲେ ବି ଅଥବା ରାଜକପୁରଙ୍କ ଜଣେ "ଜିସ୍ ଦେଶ ମେ ଗଙ୍ଗା ବହତି ହେ" ବା ଜାନ୍‌ହ୍ନୁ ବରୁଆଙ୍କ 'ଦି ରିଭର ଷ୍ଟୋରି' ନ ଦେଖିଲେ ବି, ନଦୀ ପ୍ରତି ସବୁଦିନେ ଆକର୍ଷିତ ହୋଇଛି । ଜଣେ 'ଭଲ୍‌ଗାରୁ ଗଙ୍ଗା' ବହି ଅଥବା ଅମିତା ବାଭିସ୍କାରଙ୍କ 'ୱାଟର ଲାଇନ୍‌ସ' ବହିଟି ନ ପଢ଼ି ମଧ୍ୟ ନଦୀକୁ ଭଲ ପାଇବ ଏଥିରେ ସନ୍ଦେହ ନାହିଁ । ନଦୀ ଆମ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ନଦୀ ଭଲ ପାଇବାର ଅନ୍ୟ ଏକ ପରିପ୍ରକାଶ । ମୁଁ ହରିଦ୍ୱାରରେ ସ୍ନାନ କରିଛି ଏବଂ ବନାରସର ଘାଟରେ ଅନେକ ସମୟ ଧରି ବସି ରହି ଆତ୍ମ ବିଭୋର ହୋଇଛି । ତିରୁଚିରାପଲ୍ଲୀ ଠାରେ କାବେରୀ ନଦୀ ଓ ସନ୍ନିକଟ ମନ୍ଦିରମାନଙ୍କୁ ଦେଖି ସେମାନଙ୍କର ଇତିହାସ ଜାଣିବାକୁ ଋହିଁଛି । ସିଲେରୁ ଓ ଶାବରୀ ନଦୀର ସଙ୍ଗମ ସ୍ଥଳରୁ ଗୋଦାବରୀ ନଦୀରେ ଏକ ନୌବିହାର କରିବାର ସ୍ୱପ୍ନ ଦେଖିଛି । କେରଳର ପେରିଆର୍ ନଦୀର ଅଭୂତପୂର୍ବ ଦୃଶ୍ୟ ଦେଖି ମୁଁ ଅଭିଭୂତ ହୋଇଛି । ମହାନଦୀର ସାତକୋଶିଆ ଗଣ୍ଡରେ ନୌବିହାର କରିଛି । ଭିତର କନିକା ଏବଂ ସୁନ୍ଦରବନର ହେନ୍ତାଳ ବଣ ଭିତରେ ନଦୀ, ଉପନଦୀମାନଙ୍କର ଅନ୍ୟ ଏକ ରୂପ ଦେଖି ଅଭିଭୂତ ହୋଇଛି । ଚନ୍ଦ୍ରଭାଗା ଯେଉଁଠି ସମୁଦ୍ର ସହ ମିଶିଛି, ସେଇଠି ଅବଗାହନ କରି ସୂର୍ଯ୍ୟୋଦୟ ଦେଖିଛି । ବ୍ରାହ୍ମଣୀ ନଦୀର ମୂଳ କୋଏଲ୍ ନଦୀ ଯେଉଁଠି ଛୋଟଧାରାଟିଏ ହୋଇଛି, ସେଇଠି କିଛି ସମୟ ପାଇଁ ଅଟକିଛି । ଗୋନାସିକା ଠାରେ ପହଞ୍ଚି ଗୋଟାଏ ନଦୀର ଜନ୍ମ କିପରି ହୁଏ ତାହା ଅଧ୍ୟୟନ କରିବାକୁ ଋହିଁଛି । ନଦୀ ସହ ଏକ ଆଧାତ୍ମିକ ଯାତ୍ରା ସବୁବେଳେ ମୁଁ ଆବିଷ୍କାର କରିଛି । ଏଇଥିପାଇଁ ନଦୀକୁ ମୁଁ କେବେହେଲେ

ଭୌଗୋଳିକର ଦୃଷ୍ଟିକୋଣରୁ ବିଚାରକୁ ନେଇନାହିଁ । ନଦୀ ଏକାନ୍ତରେ କବିର ଓ ଦାର୍ଶନିକର ଅତି ଆପଣାର । ନଦୀ ପଠାରେ କାଶତଣ୍ଡୀ ଫୁଲ ଯେତିକି ଆକର୍ଷଣୀୟ, ନଦୀବାଲିର ଏକ ଅଭୂତପୂର୍ବ ସ୍ପର୍ଶ ସେତିକି ଉତ୍ତେଜକ । ଅନୁଭବ କରିବାର ଏକ ତୀବ୍ର ଶକ୍ତିର ଆବଶ୍ୟକତା ରହିଛି ଓ ହୃଦୟଭରି ଭଲ ପାଇବାର ଇଚ୍ଛାଶକ୍ତି ମଧ୍ୟ ଦରକାର ପଡିଛି । ନଦୀ ଓ ମଣିଷ ଡଙ୍ଗାଘାଟରେ ଏକାକାର ହୋଇଛନ୍ତି ସବୁବେଳେ ।

ମୋତେ ଯଦି କେହି ପଚାରିବ ଯେ ପିଲା ଦିନର ସବୁଠାରୁ ଅଭୂଲା ସ୍ମୃତି କ'ଣ, ମୁଁ କହିବି ଯେ ନଦୀ ଓ ଉପନଦୀର ସଙ୍ଗମ ସ୍ଥଳରେ ଦିନସାରା ପାଣିରେ ଖେଳିବା । ମୋର ବଡ଼ ଭଉଣୀ ପରିବାରର ଏକ ବିଶାଳ ଆମ୍ବତୋଟା ସିଙ୍ଗଡ଼ା ନଦୀକୁ ଲାଗି । ଏହା ଗୋଟିଏ ଉପନଦୀ । ଅନତି ଦୂରରେ ବ୍ରାହ୍ମଣୀ ନଦୀ ବୋହୁଛି । ଖରାଦିନେ ଆମ୍ବତୋଟାରେ ଦିନସାରା ବସି ରହି ବିଭିନ୍ନ କିସମର ଆମ୍ବ ଖାଇବାକୁ ଭଲ ଲାଗୁଥିଲା । ଟିକିଏ ଗରମ ବେଶୀ ହେଲେ ସିଙ୍ଗଡ଼ା ନଦୀ କୂଳେ କୂଳେ ଚାଲି ବ୍ରାହ୍ମଣୀ ନଦୀରେ ଡେଇଁବାକୁ ପଡୁଥିଲା । ସନ୍ଧ୍ୟା ନୋଇଁ ଆସିଲେ ନଦୀ ସେ କୂଳକୁ କୁଆଡେ ହାତୀ ଆସନ୍ତି ପାଣି ପିଇବାକୁ ବୋଲି ଅନେକ ଲୋକ ଦେଖିଛନ୍ତି । ରାତିରେ ମହାବଳ ବାଘ ନଦୀ ପହଁରି ଏ କୂଳକୁ ଆସେ ବୋଲି ତାହାର ପାହୁଲ ଚିହ୍ନରୁ ଜଣାପଡେ । ପିଲାଦିନେ ଏସବୁ କାହାଣୀ ଭଳି ଲାଗୁଥିଲା । ଅବଶ୍ୟ ଏସବୁର ଏବେ ଚିହ୍ନବର୍ଣ୍ଣ ନାହିଁ । ସମଲ ବ୍ୟାରେଜ୍ ହେବା ପରେ ସବୁ ପାଣି ଭିତରେ ବୁଡି ଯାଇଛି । ଆମ୍ବତୋଟା ଏବଂ ଦୁଇଟି ନଦୀର ସଙ୍ଗମ ସ୍ଥଳ ଚିହ୍ନଟ କିରବା ଅସମ୍ଭବ ଏବେ । ବାଘ ଓ ହାତୀ ନିଶ୍ଚିହ୍ନ ହୋଇଗଲେଣି । ମୋର ଭଉଣୀର ଗାଁ ମଧ୍ୟ ବୁଡିଯାଇଛି । ସମସ୍ତେ ବାସଚ୍ୟୁତ ହୋଇଛନ୍ତି କିନ୍ତୁ ସେମାନଙ୍କର ଏକ ଗ୍ରାମ୍ୟ ଜୀବନ ଓ ସ୍ୱାବଲମ୍ବନଶୀଳତା ମୋର ଅଭୁଲା ସ୍ମୃତି ହୋଇଯାଇଛି । ପିଲାଦିନେ ରାଉରକେଲା ଯିବାକୁ ଭଲ ଲାଗୁଥିଲା । ତାଳଚେରରୁ ଖରାଦିନେ ବସ କେବଳ ଯାତାୟାତ କରେ । ବ୍ରାହ୍ମଣୀ ନଦୀକୁ ତିନିଥର ଅତିକ୍ରମ କରିବାକୁ ପଡେ । ସେତେବେଳେ ପୋଲ ତିଆରି ହୋଇନଥିଲା । ବସ୍‌ଟି ଡଙ୍ଗା ଉପରେ ଚଢ଼ାଇବାକୁ ପଡେ । ଚାରୋଟି ବଡ଼ ଡଙ୍ଗାକୁ ନେଇ ଏକ ଭେଳା କରାଯାଇଥାଏ । ପୋଖତ ବସ୍ ଡ୍ରାଇଭର ଓ ଡଙ୍ଗାର ଦକ୍ଷ ନାଉରିଆମାନଙ୍କର ହାତରେ ଆମେ ଯାତ୍ରୀମାନେ ଖୁବ୍ ସୁରକ୍ଷିତ । ସମଲଘାଟ, ବାରକୋଟ ଓ ବଣେଇ ଠାରେ ଘାଟ ଓ ନାଉରିଆମାନଙ୍କୁ ମୁଁ ବାରମ୍ବାର ଲକ୍ଷ୍ୟ କରୁଥାଏ । ଆଉ ବି ଲକ୍ଷ୍ୟ କରୁଥାଏ ନଦୀର ଆକାର ପ୍ରକାର ଓ ଗଭୀରତା । ନାଉରିଆ ହେବା ଗୋଟିଏ ଭାଗ୍ୟ ନୁହେଁ ତ ଆଉ କ'ଣ ?

ପ୍ରାପ୍ତ ବୟସରେ ହରମାନ୍ ହେସ୍‌ଙ୍କ "ସିଦ୍ଧାର୍ଥ" ଉପନ୍ୟାସ ପଢ଼ିବା ପରେ ମୁଁ ଅନେକ ଦିନ ପର୍ଯ୍ୟନ୍ତ ଜୀବନରେ ନାଉରିଆ ହେବାର ସ୍ୱପ୍ନ ଦେଖୁଥିଲି । "ସିଦ୍ଧାର୍ଥ" ବହିଟି ଅନେକବର୍ଷ ଧରି ଏକ ଲୋକପ୍ରିୟ ଉପନ୍ୟାସ ବୋଲି ନାମ ଅର୍ଜନ କରିଥିଲା । ଗୌତମ ବୁଦ୍ଧଙ୍କ ସମୟର କଥା । ସବୁଆଡେ ବୌଦ୍ଧ ସନ୍ୟାସୀ ବା ଶ୍ରମଣମାନଙ୍କର

ଉପସ୍ଥିତି । "ସିଦ୍ଧାର୍ଥ" ଏମାନଙ୍କ ସହ ସାମିଲ୍ ହେବା ପାଇଁ ନିଜର ବାପାଙ୍କ ଠାରୁ ବିଦାୟ ନେଇ ବନ୍ଧୁ ଗୋବିନ୍ଦ ସହ ଏକ ଆଧ୍ୟାତ୍ମିକ ଯାତ୍ରା ଆରମ୍ଭ କରିଛି । ଜ୍ଞାନାନୁଭୂତିକୁ ପୁଞ୍ଜି କରି ସେ ଜୀବନର ନୂତନ ଆଲୋକ ଦେଖିବାକୁ ଚାହିଁଛି । ଗୌତମ ବୁଦ୍ଧଙ୍କ ସହ ତାର ଭେଟ ହୋଇଛି ଓ ସେ ଜାଣିବାକୁ ଚାହିଁଛି ଯେ ଜଣେ ମହାପୁରୁଷର ଚରମ ଦିବ୍ୟ ଅନୁଭୂତିକୁ ଧର୍ମ ପ୍ରଚାର କରି ବଣ୍ଟାଯାଇ ପାରିବ ନାହିଁ । ଜଣେ ଦିବ୍ୟଜ୍ଞାନ ପାଇବା ପାଇଁ ନିଜକୁ ଗୋଟାପଣେ ସଂଶ୍ଳିଷ୍ଟ କରିବାକୁ ହେବ ଓ ସାଧନାରେ ବ୍ରତୀ ହେବାକୁ ହେବ । ସିଦ୍ଧାର୍ଥ ଗୌତମ ବୁଦ୍ଧଙ୍କୁ ଏଇ କଥା ହିଁ ପଚାରିଛି ଯେ ତାଙ୍କର ଅସଲ ଜ୍ଞାନର ଅଧିକାରୀ ସେ ଓ ତାହା ସେ ଅନ୍ୟକୁ ଦେଇ ପାରିବେ ନାହିଁ । ଗୌତମ ବୁଦ୍ଧ ଏ ପ୍ରଶ୍ନର କୌଣସି ଉତ୍ତର ଦେଇନଥିଲେ । "ସିଦ୍ଧାର୍ଥ" ବୌଦ୍ଧ ଶ୍ରମଣମାନଙ୍କ ଠାରୁ ନିଜକୁ ଅପସାରିତ କରି ସଂସାର ଭିତରକୁ ଫେରି ଆସିଛି । ଦିବ୍ୟ ଚିନ୍ତା ଓ ଭକ୍ତି ହେଉ ବା ସଂସାରର ଦୈହିକ ଆନନ୍ଦ ଓ ଦୁଃଖ ହେଉ, କେହି ସମ୍ଭବତଃ ଅସଲ ଦିବ୍ୟଜ୍ଞାନ ହାସଲ କରିବାକୁ ସାହାଯ୍ୟ କରିପାରିବେ ନାହିଁ । ସିଦ୍ଧାର୍ଥ ବିବାହ କରିଛି ସୁନ୍ଦରୀ କମଳା ସହିତ । ପୁତ୍ର ସନ୍ତାନର ଜନକ ହୋଇଛି । ସଂସାରର ଲୀଳାଖେଳାରେ ସେ ବି ବୁଡି ଯାଇଛି । ପାଇଛି ଐଶ୍ୱର୍ଯ୍ୟ ଓ ଆଭିଜାତ୍ୟ । କିନ୍ତୁ ଏହା ତାକୁ ସାଧାରଣ ମଣିଷର ସ୍ତରକୁ ନେଇଛି ବୋଲି ସେ ଯେଉଁ ଦିନ ଅନୁଭବ କରିଛି, ସେ ଦିନ ସେ ସବୁକିଛି ପରିତ୍ୟାଗ କରି ଆଗକୁ ଚାଲିଛି । ବାଟରେ ଦେଖା ହୋଇଛି ନାଉରିଆ ବାସୁଦେବ ସହ । ନଦୀର ସଙ୍ଗୀତ ଶୁଣି ଶୁଣି ବାସୁଦେବ ଦିବ୍ୟଜ୍ଞାନ ପାଇଛି । ଆନନ୍ଦମୟ ଜୀବନ ସେ ଅତିବାହିତ କରୁଛି ଲୋକମାନଙ୍କୁ ଏ କୂଳରୁ ସେ କୂଳକୁ ନେବା ଦ୍ୱାରା । ସିଦ୍ଧାର୍ଥ ନଦୀ ଅତିକ୍ରମ କିରବାକୁ ବାସୁଦେବଙ୍କ ଡଙ୍ଗାରେ ବସିଛି । ହାତରେ ପଇସା ନାହିଁ । କିନ୍ତୁ ବାସୁଦେବ ବିନା ଦ୍ୱିଧାରେ ସିଦ୍ଧାର୍ଥକୁ ଡଙ୍ଗାପାର କରାଇଛି । ଦେଇଛି ଦିଗ୍‌ଦର୍ଶନ । ସିଦ୍ଧାର୍ଥ ହୋଇଛି ନାଉରିଆ । ଲୋକକୁ ପାରିକରିବାରେ ତାର ଅବଶିଷ୍ଟ ଜୀବନ କାଟିଛି । ବାସୁଦେବର କଥା ତା'ର ସବୁବେଳେ ମନେ ପଡିଛି ଯେ ସବୁକିଛି ଫେରିଆସେ । ନଦୀ ସହ ଜୀବନକୁ ତୁଳନା କରଯାଇପାରେ । ନଦୀର ଆରମ୍ଭ, ମଧଭାଗ ଓ ଅବଶେଷରେ ସଙ୍ଗମ ସବୁ ଆରମ୍ଭ ଓ ଶେଷର ଏକ ଚକ୍ର । ଜୀବନ ବି ଠିକ୍ ଏଇଭଳି । ଏଇ କଥା ଅନୁଭବ କରି ସିଦ୍ଧାର୍ଥ ପାଇଛି ନିର୍ବାଣ । ଆମ ସମସ୍ତଙ୍କର ଆଧ୍ୟାତ୍ମିକ ଯାତ୍ରା ଠିକ୍ ଏଇଭଳି ନୁହେଁତ ଆଉ କ'ଣ ?

ଅମିତା ବାଭିସ୍କାରଙ୍କ ସମ୍ପାଦିତ 'ୱାଟରଲାଇନ୍' ବହିଟି ଏକ ସ୍ୱତନ୍ତ୍ର ରୁଚିର । ଭାରତୀୟ ସାହିତ୍ୟରେ ନଦୀକୁ ଆଧାର କରି ଯେତେ ପ୍ରକାରର ପଦ୍ୟ ଓ ଗଦ୍ୟ ସୃଷ୍ଟି କରାଯାଇଛି ତାହାର ଏହା ଏକ ସଂକ୍ଷିପ୍ତ ସଂକଳନ । ଅମିତା ବାଭିସ୍କାର ଜଣେ ସମାଜଶାସ୍ତ୍ରୀ ଓ 'ନର୍ମଦା ବଞ୍ଚାଓ ଆନ୍ଦୋଳନ' ର ସମର୍ଥକ । ତାଙ୍କର ଅନ୍ୟତମ ଶ୍ରେଷ୍ଠ ବହିଟି ହେଉଛି – (In the Belly of River) "ଇନ୍ ଦି ବେଲି ଅଫ ରିଭର" । ବିଶ୍ୱ କବି ରବୀନ୍ଦ୍ରନାଥଙ୍କ ଠାରୁ ଆରମ୍ଭ କରି ଅନ୍ୟତମ କବି ଏ.କେ. ରାମାନୁଜମ୍, ଆଜ୍ଞେୟ ସଚ୍ଚିଦାନନ୍ଦ ବାତ୍ସାୟନ,

ଅରବିନ୍ଦ କୁମାର ମାଲହୋତ୍ରାଙ୍କ ପର୍ଯ୍ୟନ୍ତ ନଦୀ ଉପରେ ଲେଖିଥିବା ବିଭିନ୍ନ ଲେଖା ଉପସ୍ଥାପନ କରିଛନ୍ତି । ଜୀମ୍ କର୍‌ବେଟ୍‌ଙ୍କ "ମୋ ସ୍ୱପ୍ନର ମାଛ" ଠାରୁ ଆରମ୍ଭ କରି ମାଲୟାଲାମ୍ କବି ବାସୁଦେବ୍ ନାୟାରଙ୍କ ଲେଖା ମଧ୍ୟ ପ୍ରକାଶ ପାଇଛି । ନଦୀ ବିଷୟରେ ବିଭିନ୍ନ ପ୍ରକାରର ବର୍ଣ୍ଣନା ଅଭୂତପୂର୍ବ । ପାଠକମାନେ ପଢ଼ିବାକୁ ଚେଷ୍ଟା କରିବେ, ବୋଲି ମୁଁ ଅନୁରୋଧ କରୁଛି । କିନ୍ତୁ ଓଡ଼ିଶାର କବି, ଲେଖକ ଓ ସାହିତ୍ୟିକମାନଙ୍କର ନଦୀ ଉପରେ ବର୍ଣ୍ଣନାକୁ ନେଇ ଏଇଭଳି ସଙ୍କଳନଟିଏ ବାହାରିଛି କି ନାହିଁ ମୁଁ ଜାଣିନାହିଁ । ଯଦୁନାଥ ଦାସମହାପାତ୍ରଙ୍କ "ଗ୍ରାମ୍ୟ ନଦୀର ତୀରେ" ହେଉ ବା କାହ୍ନୁ ମହାନ୍ତିଙ୍କ "ତମସାତୀ"ରେ ହେଉ ବା କବି ମାନସିଂଙ୍କ "ମହାନଦୀରେ ଜ୍ୟୋତ୍ସ୍ନାବିହାର" ହେଉ ବା ଜୟନ୍ତ ମହାପାତ୍ରଙ୍କ କଟକ। ସ୍ମୋକ୍ ଆଣ୍ଡ ଏ ସନ୍‌ସେଟ ଅଫ ରିଭରସ୍ (Cuttack : Smoke and a Sunset of Rivers) ସବୁ ପ୍ରାଣୋଦ୍ଦୀପକ ହେଲେ ବି ଯଥେଷ୍ଟ ନୁହେଁ । ଓଡ଼ିଶା ନଦୀର ପ୍ରଦେଶ । କିନ୍ତୁ ନଦୀକୁ ନେଇ ସାହିତ୍ୟ, ସଙ୍ଗୀତ, ରୋମାଞ୍ଚକାରୀ ଯାତ୍ରା ଯେମିତି ଏବେ ମଧ୍ୟ ଅସମ୍ପୂର୍ଣ୍ଣ ରହିଛି । ଏକଥାକୁ ଅନୁଭବ କରି ବନ୍ଧୁ ଓ ସାହିତ୍ୟିକ ଡକ୍ଟର ସଂଗ୍ରାମ ଜେନା କିଛି ଦିନ ତଳେ "ନଦୀନାନାଦି" ନାମରେ ଗୋଟିଏ ସଙ୍କଳନ ପ୍ରକାଶ କରିଛନ୍ତି । ଅତୀତରେ ଓଡ଼ିଶାର ବିଭିନ୍ନ ନଦୀକୁ ନେଇ କବି ଓ ସାହିତ୍ୟକମାନେ ଅଛ ଯାହା କିଛି ସୃଷ୍ଟି କରିଛନ୍ତି ସେ ସବୁର ଏକ ସମାହାର । ଧନ୍ୟବାଦ ଦେଉଛି ତାଙ୍କୁ ତାଙ୍କର ପ୍ରୟାସ ପାଇଁ । କିନ୍ତୁ ଏଥିରେ ସବୁ ପୁରୁଣା ଲେଖା ଓ ଲେଖକଙ୍କ କୃତି ରହିଛି । ଆଧୁନିକ ଲେଖକମାନେ ନଦୀ କଥା ଯେମିତି ଭୁଲି ଯାଇଛନ୍ତି !

ନଦୀ ଓ ବହମାନ ସ୍ରୋତକୁ ନେଇ ମୋ ଭଳି ମଣିଷମାନେ ଯେ ବଞ୍ଚିଛନ୍ତି ଏହା ଅସ୍ୱୀକାର କରି ହେବ ନାହିଁ । ନଦୀକୁ ନେଇ ମୋର ଅନ୍ୱେଷଣ ଏବେ ମଧ୍ୟ ଶେଷ ହୋଇନାହିଁ ।

□□□

୩୯

# ଦର୍ଶନ ଓ ଗଣିତର ପ୍ରହେଳିକା

ଗଣିତର ଇତିହାସ ଓ ଦର୍ଶନର ଇତିହାସ ଭିତରେ ଅନେକ ସାମଞ୍ଜସ୍ୟ ଓ ସମାନତା ରହିଛି ବୋଲି ଜଣେ କେହି ବକ୍ତା ଭାଷଣ ଦେବା ଛଳରେ କହିଥିଲେ ଆମେ ସ୍କୁଲରେ ପଢ଼ିବା ବେଳେ । ଗଣିତକୁ ବୁଝିବା ସହଜ କିନ୍ତୁ ଦର୍ଶନକୁ ନୁହେଁ ବୋଲି ସେ ଯୁକ୍ତି କରୁଥିଲେ । ଏ ସବୁର ଜଟିଳତାକୁ ବୁଝିବାକୁ ହେଲେ ବହୁତ କିଛି ପଢ଼ିବାକୁ ହେବ ବା ଜ୍ଞାନ ଆହରଣ କରିବାକୁ ହେବ ବୋଲି ସୂଚନା ଦେଇଥିଲେ । ସେତେବେଳେ ଆମର ଯେଉଁମାନେ ପ୍ରିୟ ଶିକ୍ଷକ ଥିଲେ, ସେମାନଙ୍କୁ ଦର୍ଶନ କ'ଣ ବୋଲି ମୁଁ ଅନେକ ଥର ପଚାରିଥିବି । ସେମାନେ ଯଦିଓ ଏକ ଯଥାର୍ଥ ଉତ୍ତର ଦେଇପାରୁନଥିଲେ, ତଥାପି ସେ ସମୟରେ ଆମର ସାହିତ୍ୟ ବହିମାନଙ୍କରେ ବିଭିନ୍ନ କବି ଓ ଲେଖକମାନଙ୍କର ରଚନାବଳୀରେ ଦର୍ଶନର କେମିତି ସ୍ପଷ୍ଟ ଛାପ ରହିଛି ତାହାର ଉଦାହରଣ ଦେଉଥିଲେ । 'ମନବୋଧ ଚଉତିଶା' ହେଉ କି ଭକ୍ତ କବି ମଧୁସୂଦନଙ୍କ 'ରେ ଆତ୍ମନ, କରକର ନିରୀକ୍ଷଣ...' ଆଦିରୁ ପଦ୍ୟାବଳୀ ଆବୃତ୍ତି କରିବାକୁ ପଡୁଥିଲା ସେମାନଙ୍କୁ । ଜୀବନ ଦର୍ଶନର ବିଭିନ୍ନ ପରିସର କଥା ତାରୁଣ୍ୟ ସହ ଯେମିତି ଫେଣ୍ଟାଫେଣ୍ଟି ହୋଇଯାଇଥିଲା ସେ ସମୟରେ । ଗଣିତଜ୍ଞ ଓ ଦାର୍ଶନିକମାନଙ୍କର ବିଷୟରେ ସବିଶେଷ ଜାଣିବାକୁ ଇଚ୍ଛା ଅଙ୍କୁରିତ ହୋଇଥିଲା ଆମ ବନ୍ଧୁ ମାନଙ୍କର । ସେ ସମୟରେ 'ଜ୍ଞାନମଣ୍ଡଳ'ର କେତେ ଖଣ୍ଡ ବହି ବାହାରି ସାରିଥାଏ । ନୂଆ ନୂଆ ହୋଇ ପ୍ରକାଶିତ ବହିଗୁଡ଼ିକୁ ଆମକୁ ହେଡମାଷ୍ଟରଙ୍କ ଅନୁମତି ନେଇ ପଢ଼ିବାକୁ ପଡୁଥିଲା । କିନ୍ତୁ ଦୁଇଟି ଏନ୍‌ସାଇକ୍ଲୋପେଡିଆ ସେଟ୍ ହେଡ୍‌ମାଷ୍ଟରଙ୍କ ଅଫିସରେ ଧୂଳି ଖାଉଥିଲା । ସେଗୁଡିକ ହେଲା "ଏନ୍‌ସାଇକ୍ଲୋପେଡିଆ ବ୍ରିଟାନିକା" ଓ "ଏ ବୁକ୍ ଅଫ ନଲେଜ୍" । ମୁଁ ସାହସର ସହ ହେଡ୍‌ମାଷ୍ଟର୍‌ଙ୍କ ଅଫିସକୁ ପଶି ଯାଇ ଏ ବହି ସେଟ୍ ରେଫରେନ୍‌ସ ନେବାକୁ ଅନୁମତି ଚାହିଁଥିଲି । ଜଣେ ଭଲ ଛାତ୍ରର ଅନୁରୋଧ ସେ କାଟିଥିଲେ ବଦ୍‌ନାମ ହୋଇଥାଆନ୍ତେ ସମ୍ଭବତଃ । କିନ୍ତୁ ମୋତେ ସେ କହିଥିଲେ ଯେ ବହି କିଣାଯିବା ଦିନ ଠାରୁ ଏ ଗୁଡିକର ପୃଷ୍ଠା ଓଲଟା ଯାଇନାହିଁ । କେବଳ ହେଡ୍‌ମାଷ୍ଟର୍‌ଙ୍କ ଅଫିସରେ ଶୋଭା ବଢ଼ିବା ପାଇଁ କାଚ ଆଲ୍‌ମାରୀରେ ରଖାଯାଇଛି । ଏଣୁ ମୁଁ ହେବି ପ୍ରଥମ ଛାତ୍ର ଯିଏ କି ଏ ଏନ୍‌ସାକ୍ଲୋପେଡିଆର ସହାୟତା ନେବ । ଏହା ମୂଲ୍ୟବାନ ଓ ଓଜନିଆ ବହି ହୋଇଥିବାରୁ

ସ୍କୁଲ ଅଫିସ ବାହାରକୁ ଯାଇପାରିବ ନାହିଁ । ଏଥିପାଇଁ ହେଡମାଷ୍ଟରଙ୍କ ଅଫିସକୁ ଲାଗି ହେଡ୍‌କ୍ଲର୍କଙ୍କ ଅଫିସରେ ଟେବୁଲ ଚୌକି ପଡିଲା ଓ ଆମେ କେତେଜଣ ବନ୍ଧୁ ସମୟ ଦେଖି ଏନ୍‌ସାକ୍ଲୋପେଡିଆ ସେଟ୍‌ରେ ମନୋନିବେଶ କରିଥିଲୁ । ଅଧିକ ଇଂରେଜୀ ମଧ ଜଣା ନଥିଲା ଆମକୁ । ଆମକୁ ସହାୟତା କରିବା ବା ପ୍ରକୃତ ମାର୍ଗ ଦର୍ଶନ କରିବାକୁ କେହି ଶିକ୍ଷକ ସମୟ ଦେଇ ପାରୁନଥିଲେ । କିନ୍ତୁ ଗଣିତଜ୍ଞ ଓ ଦାର୍ଶନିକମାନଙ୍କର କେତେକ ନାମ ଆମେ ଜାଣିଥିଲୁ ଓ ସେମାନଙ୍କ ନାମରେ ଥିବା ପୃଷ୍ଠାଗୁଡିକୁ ସହଜରେ ପାଇ ଯାଉଥିଲୁ । ଇୟୁକ୍ଲିଡଙ୍କ ଜ୍ୟାମିତି, ନିୟୁଟନଙ୍କ ବିଭିନ୍ନ ନିୟମ, ଡେକାର୍ଟେଙ୍କ ଥିଓରମ୍, ଗାଲିଲିଓ ଓ ଆଇନଷ୍ଟାଇନ୍‌ଙ୍କ ବିଭିନ୍ନ ଥିଓରୀ ଆଦି ସହଜରେ ପଢ଼ିବାକୁ ମିଳୁଥିଲା ।

ଆମେ ଏନ୍‌ସାକ୍ଲୋପେଡିଆ ଠାବ କରିପାରୁଥିଲୁ । କେଜାଣି କାହିଁକି ଗଣିତଜ୍ଞ ଓ ଦାର୍ଶନିକମାନଙ୍କର ଚିତ୍ର ସବୁ ଦେଖିବାକୁ ଭଲ ଲାଗୁଥିଲା । ଅନେକଙ୍କ ମୁହଁରେ ଲମ୍ୱା ଦାଢ଼ି । ଅଦ୍ଭୁତ ଚେହେରା । ଜୀବନ କାହାଣୀରେ ଅନେକ ବୈଚିତ୍ର୍ୟ । ଏମାନଙ୍କର ଆବିର୍ଭାବ ଯେ ପୃଥିବୀରେ ଇତିହାସ ବଦଳାଇ ଦେଇଛି, ଏହା ବେଳେବେଳେ ବିଶ୍ୱାସ କରି ହେଉନଥିଲା । ଜଣେ ଦାର୍ଶନିକ, ଗଣିତଜ୍ଞ ଅଥବା ବୈଜ୍ଞାନିକ ହେବାକୁ ହେଲେ ଚଲାପଥରେ ନଯାଇ ଅଜଣା ବାଟରେ ଯିବାକୁ ହେବ ତାହା ସ୍ପଷ୍ଟ ଜଣା ପଡୁଥିଲା । ନୂଆ ତତ୍ତ୍ୱକୁ ଉପସ୍ଥାପନ କରିବାକୁ ଯାଇ ଗଣିତଜ୍ଞ ଓ ଦାର୍ଶନିକମାନେ କେତେ ଯେ ବିରୋଧର ସମ୍ମୁଖୀନ ହୋଇଛନ୍ତି ତାହା ଜାଣି ଅବାକ୍ ଲାଗୁଥିଲା । କିଏ କାରାଗାରରେ ବନ୍ଦୀ ହୋଇଛି ତ କିଏ ଦେଶରୁ ନିର୍ବାସିତ ହୋଇଛି । କିଏ ପ୍ରାଣଦଣ୍ଡ ପାଉଛି ତ ଅନ୍ୟ କିଏ ସାମାଜିକ ବାସନ୍ଦର ଶିକାର ହୋଇଛି । ପ୍ରତ୍ୟେକଙ୍କ ଜୀବନ କାହାଣୀ ଆମ ପାଇଁ ଆଣି ଦେଉଥିଲା ବିସ୍ମୟ ଓ ଆତ୍ମ ପ୍ରତ୍ୟୟର ସଙ୍କେତ । ଏସବୁ କଥା ଆମକୁ ମଧ ରୋମାଣ୍ଟିକ୍ କରି ଦେଉଥିଲା । ଜଣେ ଭଲ ନ ପାଉଥିଲେ ଗଣିତଜ୍ଞ ଓ ଦାର୍ଶନିକ ହୋଇ ପାରିବ ନାହିଁ ବୋଲି ଆମର ଧାରଣା ହୋଇଥିଲା । ଆମେ ସତରେ ପ୍ରେମରେ ପଡି ଯାଇଥିଲୁ ଜ୍ଞାନ ଜଗତ ସହିତ ଗଣିତ ଓ ଦର୍ଶନର ପୃଥିବୀ କେବଳ ପ୍ରେମିକମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ତ ଆଉ କ'ଣ ? ଜଣେ ପ୍ରେମରେ ପଡିଲେ ଶରୀରର ରସାୟନ ଓ ମନସ୍ତତ୍ତ୍ୱର ପରିପ୍ରକାଶ ଆପଣା ଛାଏଁ ବଦଳି ଯାଏ । ଜଣେ କବି, ଭାବୁକ ବା ଦାର୍ଶନିକ ହେବାକୁ ମନ ବଳାଇଥାଏ । କେହି କେହି ବି ବିଶୃଙ୍ଖଳିତ ହେବାକୁ ଡେଇଁ ପଡିଥାଆନ୍ତି । 'ଦେବଦାସ' ଭଳି ବଞ୍ଚିବାକୁ ଓ ମରିବାକୁ କେହି କେହି ବି ପସନ୍ଦ କରିଥାଆନ୍ତି ।

ରେଭେନ୍‌ସା କଲେଜକୁ ଆସିବାପରେ ନୂଆ ବନ୍ଧୁମାନଙ୍କ ସହ ଯେତେବେଳେ ଗୁରୁତ୍ୱପୂର୍ଣ୍ଣ ବିଷୟରେ ବାର୍ତ୍ତାଳାପ ହୁଏ ଅଥବା ଭାବ ବିନିମୟ ହୁଏ, ସେତିକିବେଳେ ଦାର୍ଶନିକମାନଙ୍କ ବିଷୟରେ ଆଲୋଚନା ସ୍ୱତଃପ୍ରବୃତ୍ତ ଭାବରେ ସ୍ଥାନ ପାଏ । ଆମେ ସବୁ ଯେଉଁମାନେ ଗଣିତ ଓ ବିଜ୍ଞାନର ଛାତ୍ର ଥିଲୁ, ଆମକୁ ଦର୍ଶନ ଅଡୁଆ ଲାଗେ ନାହିଁ । ମୋର ମନେ ଅଛି ପ୍ରଥମ ଥର ପାଇଁ ଫରାସୀ ଗଣିତଜ୍ଞ ଓ ଦାର୍ଶନିକ ଡେକାର୍ଟେଙ୍କ ଅତି ବିଖ୍ୟାତ ଉକ୍ତି 'I think, therefor I exist'କୁ ନେଇ ଆମେ ଅନେକ ଦିନ ଯୁକ୍ତିତର୍କ

କରିଥିଲୁ । ଅସ୍ତିତ୍ୱବାଦର ସମ୍ଭବତଃ ଏହା ଏକ ଦୃଢ଼ସ୍ତମ୍ଭ ଭାବେ ସବୁ ଯୁଗ ପାଇଁ ଛିଡା ହୋଇଛି । ଏହାକୁ ଆଧାର କରି ଅସ୍ତିତ୍ୱବାଦ ବିଭିନ୍ନ ବାଟରେ ରୂପାୟିତ ହୋଇଛି । ଋଷିଆର ଲେଖକ ଦସ୍ତୋଭସ୍କି ହୁଅନ୍ତୁ ବା ଜର୍ମାନୀର ଦାର୍ଶନିକ ନୀତ୍‌ସେ ହୁଅନ୍ତୁ, ଫରାସୀ ଦାର୍ଶନିକ ଜାଁ ପଲ୍ ସାର୍ତ୍ର ହୁଅନ୍ତୁ ବା ଔପନ୍ୟାସିକ କାମ୍ୟୁ ହୁଅନ୍ତୁ, ସବୁ ଏଇ ଅସ୍ତିତ୍ୱବାଦର ଚମତ୍କାର ବ୍ୟାଖ୍ୟା କରିଛନ୍ତି । ଏହା ପଛରେ ମୌଳିକ ଦର୍ଶନ ଆଗରୁ ଯେମିତି ଥିଲା, ଏବେ ବି ସେମିତି ଅଛି । ଏବେ ମଧ୍ୟ ମଣିଷ ଆପଣାର ଅସ୍ତିତ୍ୱର ଜଟିଳତା ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅବଗତ ଅଛି । ମୁଁ କିନ୍ତୁ ଗାଣିତିକ ସତ୍ୟର ଅନୁସନ୍ଧାନରେ ବ୍ୟାକୁଳ ହୋଇଥିବାବେଳେ ଦାର୍ଶନିକ ସତ୍ୟମାନଙ୍କର ସନ୍ଧାନ ପାଇଥିଲି । କିନ୍ତୁ ନା ମୁଁ ଗଣିତଜ୍ଞ ହେବାକୁ ଚାହୁଁଥିଲି ନା ଦାର୍ଶନିକ ହେବାକୁ । ବଞ୍ଚିବାର ସାର୍ଥକତା ମୁଁ ଆଉ କେଉଁଠାରେ ଠାବ କରିବାକୁ କ'ଣ ଚାହୁଁଥିଲି ?

ଦର୍ଶନକୁ ବୁଝିବାକୁ ଯେଉଁ କେତୋଟି ଲୋକପ୍ରିୟ ପୁସ୍ତକ ମୋତେ ଖୁବ୍ ସାହାଯ୍ୟ କରିଥିଲେ ସେଗୁଡିକ ହେଲା – ଉଇଲ୍ ଡୁରାଣ୍ଟଙ୍କ 'ଦି ଷ୍ଟୋରି ଅଫ ଫିଲୋସୋଫି' (The Story of Philosophy) । ଆଲଡସ୍ ହକ୍‌ସଲିଙ୍କ 'ଦି ପେରେନିଆଲ୍ ଫିଲୋସୋଫି' (The Perennial Philosophy) ଏବଂ ଖ୍ରୀଷ୍ଟୋଫର ଇସରଉଡ୍‌ଙ୍କ 'ବେଦାନ୍ତ ଫର୍ ମଡର୍ଣ୍ଣମ୍ୟାନ୍' (Vedanta for Modern Man) । ଆଜିକୁ ପ୍ରାୟ ଚାଳିଶ ବର୍ଷ ତଳେ ଏ ବହି ଗୁଡିକ ମୋ ତରୁଣ ମନରେ ଗଭୀର ରେଖାପାତ କରିଥିଲା । ଏବେ ମଧ୍ୟ ଏମାନଙ୍କୁ ମୁଁ ପଢ଼ି ନୂତନ ଭାବରେ ବୁଝିବାକୁ ଅବିରତ ଚେଷ୍ଟା କରିଆସୁଛି । 'ଦି ଷ୍ଟୋରି ଅଫ ଫିଲୋସୋଫି'ରେ କେବଳ ପାଶ୍ଚାତ୍ୟ ଦର୍ଶନର ଇତିହାସ ଉଲ୍ଲେଖ କରିଛନ୍ତି ଲେଖକ । ଆରମ୍ଭ କରିଛନ୍ତି ପ୍ଲାଟୋ, ଆରିଷ୍ଟୋଟଲ୍‌ଙ୍କ ଠାରୁ ଓ ସେମାନଙ୍କର ଦ୍ୱାରା ଉପସ୍ଥାପିତ ବିଭିନ୍ନ ଦାର୍ଶନିକ ତତ୍ତ୍ୱକୁ । ଗ୍ରୀକ୍ ଦର୍ଶନରେ ଯେଉଁ କେତେକ ମୌଳିକତା ରହିଛି ତାହା ଡୁରାଣ୍ଟ ସ୍ପଷ୍ଟ ଭାବେ ଉପସ୍ଥାପନ କରିଛନ୍ତି । ଏହା ପରେ ପରେ ସେ ଫ୍ରାନ୍‌ସିସ୍ ବାକନ୍, ସ୍ପିନୋଜା, ଭୋଲଟାୟାର୍, କାଣ୍ଟ, ସୋପେନ୍‌ହର୍, ସ୍ପେନ୍‌ସର୍, ନୀତ୍‌ସେ ଆଦି ବିଶ୍ୱ ବିଖ୍ୟାତ ଦାର୍ଶନିକଙ୍କ ବିଭିନ୍ନ ଦର୍ଶନକୁ ସାଧାରଣ ପାଠକ ବୁଝିବା ଭଳି ଭାଷାରେ ଲେଖିଛନ୍ତି । ବହିଟି ଏତେ ପଠନ ଯୋଗ୍ୟ ହୋଇଛି ଯେ ଦର୍ଶନ ଉପରେ ଏହା ଅସାଧାରଣ ଲୋକପ୍ରିୟ ପୁସ୍ତକ । ଡୁରାଣ୍ଟ ତାଙ୍କର ମୁଖବନ୍ଧରେ ଲେଖିଛନ୍ତି ଯେ ବିଶ୍ଳେଷଣ ହିଁ ବିଜ୍ଞାନର ପରିଭାଷା ଯାହା ଆମକୁ ଜ୍ଞାନ ଆହରଣ କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଦର୍ଶନ ଆଣିଦିଏ ଅସଲ ଜ୍ଞାନ ଏବଂ ବିଜ୍ଞତା । ଦର୍ଶନରେ ଅଛି ତର୍କଶାସ୍ତ୍ର, ନୀତିଶାସ୍ତ୍ର, ସୌନ୍ଦର୍ଯ୍ୟ ବିଜ୍ଞାନ, ରାଜନୀତି ଏବଂ ଆଧ୍ୟାତ୍ମିକଶାସ୍ତ୍ର । ଜୀବନରେ ନୂତନ ଅର୍ଥ ଆଣି ଦିଏ ଦର୍ଶନ କେବଳ ଏମାନଙ୍କ ଜରିଆରେ । ଏଇଥିପାଇଁ ଦାର୍ଶନିକମାନଙ୍କୁ ଜାଣିବାକୁ ହେବ ଓ ବୁଝିବାକୁ ହେବ ସେମାନଙ୍କର ଦର୍ଶନ ସଂଶ୍ଳିଷ୍ଟ ଚିନ୍ତାଧାରାକୁ । ଡୁରାଣ୍ଟଙ୍କ ବହି ତାଙ୍କର ୧୯୮୧ ମସିହାରେ ମୃତ୍ୟୁପରେ ମଧ୍ୟ ପାଠକମାନଙ୍କୁ ଆଜି ବି ଆକୃଷ୍ଟ କରୁଛି ।

ଅନ୍ୟ ପକ୍ଷରେ ଆଲ୍‌ଡସ୍ ହକ୍‌ସଲିଙ୍କ ଚମତ୍କାର ବହି 'ଦି ପେରେନିଆଲ୍ ଫିଲୋସୋଫି' ଏକ ଅନବଦ୍ୟ କୃତି ବୋଲି ଏବେ ମଧ ବିଶ୍ୱରେ ସ୍ୱୀକାର କରାଯାଉଛି । ୧୯୪୫ ମସିହାରେ ପ୍ରକାଶିତ ଏ ବହିରେ 'ତତ୍ ତ୍ୱମ୍ ଅସୀ' (Thou Art That)ରୁ ଆରମ୍ଭ କରି ଲେଖକ କହିବାକୁ ଚାହିଁଛନ୍ତି ଯେ ଆତ୍ମା ପରମ୍‌ବ୍ରହ୍ମ ସହ ଏକାକାର ହୋଇ ରହିଛି । ମଣିଷର ଅସ୍ତିତ୍ୱର ମୌଳିକତା ହିଁ ଏଥିରେ ଭରି ରହିଛି । ଏଥିପାଇଁ ମଣିଷକୁ ପ୍ରାଣ ଥିବା ପର୍ଯ୍ୟନ୍ତ ସେ କିଏ ତାହା ଆବିଷ୍କାର କରିବାକୁ ଆହ୍ୱାନ ଆସିଛି । ହକ୍‌ସଲି ଭଗବାନ, ଧର୍ମ, ବିଶ୍ୱାସ, ପ୍ରାର୍ଥନା, ଭଲ ଓ ମନ୍ଦ ଆଦି ବିଭିନ୍ନ ଦାର୍ଶନିକ ବିଷୟ ଗୁଡ଼ିକୁ ଆଲୋଚନା କରିଛନ୍ତି । ଏ ବହିରେ ସ୍ପଷ୍ଟ ଉଲେଖ କରାଯାଇଛି ଯେ ସବୁଧର୍ମର ଏକ ଚିରନ୍ତନ ସାରତତ୍ତ୍ୱ ରହିଛି ଯାହା ପ୍ରାୟ ଏକ ଓ ଅଦ୍ୱିତୀୟ । ତେଣୁ ହିନ୍ଦୁ, ଖ୍ରୀଷ୍ଟିଆନ୍, ମୁସଲ୍‌ମାନ, ବୌଦ୍ଧ, ଇହୁଦୀ ଆଦି ଧର୍ମ ଗୁଡ଼ିକରେ ଏକ ସମାନ କେନ୍ଦ୍ର ବିନ୍ଦୁ ରହିଛି । ସତ୍ୟ ହିଁ ଏକମାତ୍ର ଚିରନ୍ତନ । ମୌଳିକ ବିଶ୍ୱାସ ହିଁ ସବୁ ଧର୍ମର ଆଧାର ।

ଅନ୍ୟ ପକ୍ଷରେ ଖ୍ରୀଷ୍ଟୋଫର୍ ଇସରଉଡ୍‌ଙ୍କ ଦ୍ୱାରା ସମ୍ପାଦିତ 'ବେଦାନ୍ତ ଫର ମଡ଼ର୍ଣ୍ଣ ମ୍ୟାନ୍' ବହିଟିକୁ ଜଣେ କାହିଁକି ପଢ଼ିବ ବୋଲି କେହି କେହି ପ୍ରଶ୍ନ କରିଛନ୍ତି । ମୋ ମତରେ ଆଧୁନିକ ମଣିଷ ଏତେ ଜଟିଳ ଜୀବନକୁ ବଞ୍ଚି ରହିଛି ଯେ, ପ୍ରତ୍ୟେକର ଅର୍ଥ ଓ ଯଥାର୍ଥତା ସେ ନବୁଝିଲେ ଘୋର ମାନସିକ ଅଶାନ୍ତି ଓ ଆଧ୍ୟାତ୍ମିକ ଯନ୍ତ୍ରଣାର ଶିକାର ହେଉଛି । ବେଦାନ୍ତକୁ ଅସ୍ତ୍ରକରି ସ୍ୱାମୀ ବିବେକାନନ୍ଦ ଭାରତରେ ଚହଳ ପକାଇଥିଲେ ଧର୍ମ ଓ ସମାଜ କାର୍ଯ୍ୟ କ୍ଷେତ୍ରରେ । ପ୍ରେରଣା ଦେଉଥିଲେ ଭାରତବାସୀଙ୍କୁ । ଏବେ ଭାରତର ଆର୍ଥିକ ଓ ଆଧ୍ୟାତ୍ମିକ ସମସ୍ୟା ଦିନକୁ ଦିନ ବଢ଼ି ଚାଲିଛି । କିନ୍ତୁ ବେଦାନ୍ତ ଏକ ସମାଧାନର ରାସ୍ତା ବୋଲି ସ୍ୱୀକାର କରାଯାଇଛି ସବୁବେଳେ । କିନ୍ତୁ ବେଦାନ୍ତର ଅର୍ଥ ଏବେ ମଧ ସାଧାରଣ ଲୋକଙ୍କ ପାଇଁ ଯିମିତି ଅବୋଧ ହୋଇ ରହିଛି ।

ଗଣିତ ଓ ଦର୍ଶନର ପ୍ରହେଳିକା ଦୂର କରିବାକୁ ହେଲେ, ଆମକୁ, ଆମ ସମସ୍ତଙ୍କୁ ଗଣିତଜ୍ଞ ଓ ଦାର୍ଶନିକଙ୍କ ଭଳି ଏକ ଅଜଣା ପଥରେ ପଥିକ ହେବାକୁ ପଡିବ ବୋଲି ମୁଁ ବିଶ୍ୱାସ କରୁଛି । ଆଜିର ମଣିଷ କେଜାଣି କାହିଁକି ଅଜଣା ପଥକୁ ଯିବାକୁ ଦ୍ୱିଧା ପ୍ରକାଶ କରୁଛି । ଅବଶ୍ୟ ସେଇଠି ରହିଛି ସମସ୍ତ ଦୁଃଖ ଓ ସଂଦିଗ୍ଧତା । ଅଜଣା ପଥରେ ଚାଲିବାକୁ କେଜାଣି କାହିଁକି ସବୁବେଳେ କିଏ ଜଣେ ଡାକ ଦେଉଛି ।

❑ ❑ ❑

୪୦

# ଗୁରୁମାନଙ୍କ ସନ୍ଧାନରେ

ଏ ମଣିଷର ଯାତ୍ରା ଓ ଅନ୍ୱେଷଣ  କେବେହେଲେ ବ୍ୟର୍ଥ ହୁଏ ନାହିଁ । ଅବଶ୍ୟ ମଣିଷ ଲକ୍ଷ୍ୟସ୍ଥଳରେ ପହଞ୍ଚେ ନାହିଁ ଅଥବା ବାଟ ହୁଡି ଯିବାର ଆଶଙ୍କା ପ୍ରତ୍ୟେକ ପଦକ୍ଷେପରେ ଥାଏ । କିନ୍ତୁ ଯଦି ଜଣେ ଗୁରୁଙ୍କର ଆଦର୍ଶ ଓ ଦିଗଦର୍ଶନ ପଥିକର ପାଥେୟ ହୋଇଥାଏ, ତେବେ ସବୁକିଛି ସ୍ଥିର ନିଶ୍ଚିତ ଓ ଆଶା ସମାହିତ ହୋଇଯାଇଥାଏ । ମନଭିତରୁ ସଂଦିଗ୍ଧତା ଓ ସଂଶୟ ଦୂର ହୋଇଯାଏ । ନିରାଶର କଳା ବାଦଲ ଘୁଞ୍ଚିଯାଇ ଆଲୋକମୟ ଆକାଶ ଉଦ୍‌ଭାସିତ ହୁଏ । ଆସ୍ଥାସୂଚକ ଜୀବନର ଏଇ ଭଳି ଅନେକ କାହାଣୀ ଅଛି । କିନ୍ତୁ ଅସଲ ଗୁରୁ କିଏ ? ପାଠଶାଳାରେ ହେଉ କି ଗୁରୁକୂଳ ଆଶ୍ରମର ଗଛତଳେ ହେଉ, ତକ୍ଷଶୀଳାରେ ହେଉ ବା ଗୁରୁଙ୍କ ପାଦତଳେ ହେଉ, ମଣିଷ ସବୁବେଳେ କିଛି ନା କିଛି ଅସଲ ଜ୍ଞାନ ଖୋଜିବାକୁ ଚେଷ୍ଟା କରିଛି ଓ ସଫଳ ହୋଇଛି ମଧ୍ୟ । କିନ୍ତୁ ଅସଲ ଗୁରୁମାନଙ୍କୁ ସେ ପାରମ୍ପରିକ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନର ଢ଼ାଞ୍ଚା ବାହାରେ ମଧ୍ୟ ଖୋଜିଛି ଓ ଏଇ ଖୋଜିବା ଭିତରେ ସେ ପାଇଛି ଅପାର ଆନନ୍ଦ ଓ ଅନନ୍ତ ଜ୍ଞାନ ଭଣ୍ଡାର । ଏଇ ଗୁରୁମାନଙ୍କ ଯୋଗୁଁ ହିଁ ଅସଲ ଜ୍ଞାନର ବର୍ତ୍ତିକା ଆଜି ମଧ୍ୟ ଉଦ୍‌ଜୀବିତ ରହିଛି ଏ ବିଶ୍ୱର ସବୁକୋଣ ଅନୁକୋଣରେ । ଗୁରୁଙ୍କ ବିଷୟରେ ମୁଁ ପିଲାଦିନରୁ ଶୁଣି ଆସିଛି ମୋର ପିତାଙ୍କ ମୁହଁରୁ । ପ୍ରତ୍ୟେକ ମାସ ଶୁକ୍ଳ ପକ୍ଷ ଏକାଦଶୀ ଦିନ ସେ ଶ୍ରୀ ଜଗନ୍ନାଥ ଦାସଙ୍କ  ଶ୍ରୀମଦ୍ ଭାଗବତର ଦଶମ ଓ ଏକାଦଶ ସ୍କନ୍ଧ ପଢୁଥିଲେ ଆମୂଳଚୂଳ ଏବଂ ଉଚ୍ଚସ୍ୱରରେ ଆବୃତ୍ତି କରୁଥିଲେ କେତେଗୁଡିଏ ଅଧ୍ୟାୟ । ସେତେବେଳେ ମୁଁ ଗୁରୁ ଶିଷ୍ୟଙ୍କ ବିଷୟରେ ଏକ ସ୍ପଷ୍ଟ ଧାରଣା କରିପାରୁଥିଲି । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କ'ଣ କହିଲେ ବା ଉଦ୍ଧବଙ୍କୁ କ'ଣ ଉତ୍ତର ଦେଲେ ତାହା ଅବଶ୍ୟ ସେ ବୟସରେ ସହଜରେ ବୁଝିବା ସମ୍ଭବ ହେଉ ନଥିଲା । ମୁଁ କିନ୍ତୁ କାହାଣୀ ହିସାବରେ ସବୁ ଶୁଣିବାକୁ କାନ ଡେରୁଥିଲି । ପରୀକ୍ଷିତ ଓ ଶୁକମୁନିଙ୍କ ଭିତରେ କଥୋପକଥନ, ଛାତ୍ର ଏବଂ ତାହାର ଗୁରୁଙ୍କ ଭିତରେ ପ୍ରଶ୍ନୋତ୍ତର ଭଳି । ସବୁକିଛି ପୌରାଣିକ ଗଳ୍ପଭଳି ଲାଗୁଥିଲା । ଏଥିପାଇଁ ଦିନେ ସମୟ ଓ ସୁଯୋଗ ଦେଖି ଭାଗବତର ଏଇ ଦୁଇଟି ମୁଁ ପଢ଼ିବାକୁ ଚେଷ୍ଟା କରିଥିଲି ଷାଠିଏ ଦଶକରେ । ଯଦୁବଂଶ କେମିତି ଧ୍ୱଂସ ହେଲା ଓ ଜାରାଶବର ଦ୍ୱାରା ଶରବିଦ୍ଧ ଶ୍ରୀକୃଷ୍ଣଙ୍କ

ଶେଷ ମୁହୂର୍ତ୍ତ କ'ଣ ଥିଲା ? ଏସବୁ ଯେମିତି କାହାଣୀ ନହୋଇ ସତ ବୋଲି ପ୍ରତୀୟମାନ ହୋଇଥିଲା । ଏଇ ବହିଟିକୁ ମୋତେ ଲୁଚାଇ ପଢ଼ିବାକୁ ପଡିଥିଲା ସେ ବୟସରେ । କାରଣ ଏ ପୁରାଣ ଧର୍ମଶାସ୍ତ୍ର ଆମର ପଠନଯୋଗ୍ୟ ବିଷୟ ନଥିଲା । ଆଜି ମୋର ମନେ ଅଛି ସେଇ ମୁହୂର୍ତ୍ତର ମନ ଭିତର କଥା, ଯେଉଁ ଭାଗବତର ଏକାଦଶ ସ୍କନ୍ଧ ଅଷ୍ଟମ, ନବମ ଓ ଦଶମ ଅଧ୍ୟାୟରେ ଚବିଶ ଜଣ ଗୁରୁଙ୍କର ଆଲୋଚନା କରାଯାଇଥିଲା । ଆମୂଳଚୂଳ ମୁଁ ଏଇ ଅଧ୍ୟାୟକୁ କେତେଥର ପଢ଼ିଥିବି ନିଶ୍ଚିତ । ପାଠକମାନଙ୍କୁ ଅବାକ୍ ଲାଗିବ ଯେ ଆଜି ମଧ୍ୟ ମୁଁ ତା'କୁ ଅନେକ ବାର ପଢ଼ିବାରେ ଲାଗିଛି । ଆମର ଅସଲ ଗୁରୁ କିଏ ସେମାନଙ୍କୁ ଜାଣିବାକୁ ଋହିଁଛି ।

ଏଇ ଚବିଶ ଜଣ ଗୁରୁଙ୍କ କଳ୍ପନା ଭାଗବତର ଏକ ବିଶେଷତ୍ୱ ବୋଲି ଅନେକ କ୍ଷେତ୍ରରେ ସ୍ୱୀକାର କରାଯାଇଛି । ଭାଗବତରେ ଲେଖାଯାଇଛି –

"ପୃଥିବୀ ପବନ ଅନଳ । ଉର୍ଦ୍ଧ୍ୱେ ଯେ ଆକାଶମଣ୍ଡଳ ॥
ରବି ଶଶାଙ୍କ ଆପ ସିନ୍ଧୁ । ପ୍ରଥମ ସର୍ବ ପୁଷ୍ଟ ବନ୍ଧୁ ॥
କପୋତପକ୍ଷୀ ଗୁରୁ ମୋର ॥ ପତଙ୍ଗ ସର୍ପ ଅଜଗର ॥
ମୀନ ପିଙ୍ଗଳା ବେଶ୍ୟା ନାରୀ । କୁରର କୁମର କୁମାରୀ ॥
ହରିଣ ଉର୍ଣ୍ଣନାଭକରୀ । ଗୀର କାରକ ମଧୁହାରୀ ॥
ଆବର କୀଟ ପେଶସ୍କାରୀ । ମୁଁ ଏତେ ଗୁରୁ ସେବା କରି ॥
ଚବିଶ ଗୁରୁ ମୋର ଏତେ । ଶୁଣ ହେ ରାଜା ଏକ ଚିତ୍ତେ ॥

ଅର୍ଥାତ୍ ପୃଥିବୀ ପବନ, ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ଠାରୁ ଆରମ୍ଭ କରି କପୋତ ପକ୍ଷୀ ଅଜଗର ଓ ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ଚବିଶ ଜଣ ଗୁରୁଙ୍କୁ ନାମିତ କରାଯାଇଛି । ପ୍ରତ୍ୟେକ ଗୁରୁଙ୍କୁ କାହିଁକି ଗୁରୁ କୁହାଯିବ ତାହା ମଧ୍ୟ ବର୍ଣ୍ଣନା କରାଯାଇଛି । ଶ୍ରୀମଦ୍ ଭାଗବତରୁ ଯେଉଁ କେତୋଟି ପଦ ମୁଁ ମନେ ରଖିଛି, ସେ ଭିତରେ ଅଛି – "କର୍ମ କଷଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥" ସେଦିନ ଠାରୁ କିଏ ଅସଲ ଗୁରୁ ହେବ ମୋ ଜୀବନରେ, ମୁଁ ଆଜି ପର୍ଯ୍ୟନ୍ତ ଅନ୍ୱେଷଣ କରିବାରେ ଥକି ଯାଇନାହିଁ । ଗୁରୁମାନଙ୍କର ସାନ୍ନିଧ ଓ ସଂପ୍ରୀତିକୁ ମୁଁ ମୋ ବାଟରେ ଆତ୍ମସ୍ଥ କରି ଯେମିତି ବଞ୍ଚି ରହିଛି ।

ପ୍ରକୃତରେ ମୁଁ କୌଣସି ଗୁରୁମାନଙ୍କର ପ୍ରବଚନ ଶୁଣିନାହିଁ । ଯଦି କେବେ ବି ଭୁଲବଶତଃ ଶୁଣିଛି, ତାହା ମୋତେ ପ୍ରଭାବିତ କରି ନାହିଁ । ଗୁରୁମାନଙ୍କର ଲିଖିତ ବହି ଅବଶ୍ୟ ମୁଁ କେବେକେବେ ପଢ଼ିଛି ଓ ସେମାନଙ୍କର ଆଧାତ୍ମିକ ଜୀବନ ଓ ତପସ୍ୟା ବିଷୟରେ ଜାଣି ଆଶ୍ଚର୍ଯ୍ୟ ହୋଇଛି । ସେମାନଙ୍କର ଅଲୌକିକ ଶକ୍ତି ଯେକୌଣସି ଲୋକକୁ ଆକର୍ଷଣ କରିବ । ଗୁରୁମାନେ ବାସ୍ତବରେ ନମସ୍ୟ ବୋଲି ସ୍ୱୀକାର କରାଯାଇଛି । ସେମାନଙ୍କ ପ୍ରତି ଆସ୍ଥା ରଖିଲେ ଜୀବନର ସ୍ରୋତ କିପରି ବଦଳି ଯାଏ ତାହାର ଅନେକ ଉଦାହରଣ ଅଛି । ଐଶ୍ୱୀ ଶକ୍ତିର ଅଧିକାରୀ ହୋଇଥିବା ଗୁରୁମାନଙ୍କୁ ପୂଜା କରିବାର ଏକ

ପରମ୍ପରା ରହିଛି । ମୁଁ କିନ୍ତୁ ସବୁବେଳେ ବିଶ୍ୱାସ ରଖିଛି ଯେ ଯିଏ ମୋ ଭିତରର ଆଧ୍ୟାତ୍ମିକ ପ୍ରଶ୍ନମାନଙ୍କୁ ଉତ୍ତର ଦେବ ଓ ମୋର ଜୀବନଯାତ୍ରାର ପଥ ସୁଗମ ଓ ସୁରକ୍ଷିତ କରିପାରିବ, ସେମାନଙ୍କୁ ଗୁରୁବୋଲି ମାନ୍ୟତା ଦେବାକୁ ହେବ । କିଛି ଦିନ ତଳେ ସୋଫିଇ୍ ୱାର୍ଲ୍ଡ (Sophie's World ) ବୋଲି ଏକ ଲୋକପ୍ରିୟ ବହି ପଢୁଥିଲି । ସୋଫି ବୋଲି ଛୋଟ ଝିଅଟିଏ, କିଏ ଜଣେ ତା'କୁ ଗୋଟାଏ ଚିଠି ପଠାଇଲା ଓ ପଚାରିଥିଲା ସେ କିଏ ? ଓ "ତା'ର ପୃଥିବୀ କେଉଁଠୁ ଉତ୍ପତ୍ତି ହୋଇଛି ?" ଏହାକୁ ନେଇ ବୃହତ୍ତର ଦର୍ଶନର ଗଭୀର ପ୍ରଶ୍ନମାନ ଉଠାଯାଇଥିଲା ସୋଫି ଏବଂ ଦାର୍ଶନିକ ଆଲବର୍ଟ ନକ୍ସ୍ (Albert Knox)ଙ୍କ ଭିତରେ । ଲେଖକ ଜଷ୍ଟିନ୍ ଗାର୍ଡର (Jostein Gaarder) ଦର୍ଶନ ଓ ଦାର୍ଶନିକ, ଗୁରୁ ଓ ଛାତ୍ରଙ୍କ ଭିତରେ କେଉଁଭଳି ସମ୍ବନ୍ଧ ଅଛି ତାହାକୁ ନେଇ ବହିଟି ଲେଖିଛନ୍ତି । ଛାତ୍ର ଜୀବନତତ୍ତ୍ୱକୁ ନେଇ ଅନେକ ଜଟିଳ ପ୍ରଶ୍ନ ପଚାରିବ ଓ ଗୁରୁ ତାହାର ଏକ ଯଥାର୍ଥ ଉତ୍ତର ଦେବ ଏହା ଆଧ୍ୟାତ୍ମିକତା ସହ ପରିଚିତ ହେବାର ଏକ ଉତ୍ତମ ରାସ୍ତା ବୋଲି ସ୍ୱୀକାର କରିବାକୁ ହେବ । ପାଶ୍ଚାତ୍ୟ ଦର୍ଶନକୁ ବୁଝିବା ପାଇଁ ଯେମିତି ଅନେକ ଶାସ୍ତ୍ର ଲେଖାଯାଇଛି । ଆଲ୍‌ଡସ ହକ୍‌ସଲେଙ୍କ "ଦି ପେରେନିଆଲ୍ ଫିଲୋସୋଫି" ଏବଂ ବ୍ରଟାଣ୍ଡ ରସେଲ୍‌ଙ୍କ "The History of Western Philosophy"ଆଦି ବହି ଏ ଦିଗରେ ଉଲ୍ଲେଖନୀୟ ପଦକ୍ଷେପ । ସେଇଭଳି ହିନ୍ଦୁ ଓ ପୂର୍ବ ଜଗତର ଦର୍ଶନ ସମ୍ପର୍କରେ ଅନେକ ଶାସ୍ତ୍ର ଲେଖାଯାଇଛି । ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଭାରତୀୟ ଦର୍ଶନ ଉପରେ ଲେଖା ଗୁଡିକ ଯୁଗାନ୍ତକାରୀ । ଭଗବାନଙ୍କ ଅସ୍ତିତ୍ୱ, ଧର୍ମ ଓ ଧର୍ମବିଶ୍ୱାସ, ଆଧ୍ୟାତ୍ମିକ କର୍ମ ଚିନ୍ତନ ଆଦି ଉପରେ ଏ ଲେଖା ଓ ଟିପ୍‌ପଣୀ ଦିଆଯାଇଛି । ଏସବୁ ଖୁବ୍ ପଠନୀୟ ପୁସ୍ତକ ଗୁଡିକୁ ପଢ଼ାଯାଇପାରେ ଆଗ୍ରହର ସହ-କିନ୍ତୁ ଏ ସବୁର ଲେଖକମାନେ ମୋର ଜୀବନରେ ଗୁରୁପଦବାଚ୍ୟ ହୋଇଛନ୍ତି କି ନାହିଁ ତାହା ପ୍ରଶ୍ନବାଚକ ଚିହ୍ନରେ ରହିଯାଇଛି ।

କିନ୍ତୁ ମୋର ଜାଣତ ଅଜାଣତରେ ପୁସ୍ତକମାନଙ୍କରେ ବର୍ଣ୍ଣିତ ଗୁରୁମାନଙ୍କୁ ପଢ଼ି ମୁଁ ଭୁଲି ଯାଇନାହିଁ । ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ଯୋଗାନନ୍ଦ, ସିରିଡି ସାଇବାବା, ଶ୍ରୀ ଅରବିନ୍ଦଙ୍କ ଜୀବନୀ ଓ ଜୀବନ ଦର୍ଶନ ମୁଁ ଆଗ୍ରହର ସହ ପଢ଼ିଛି । ଅବଶ୍ୟ ଏସବୁ ପ୍ରତି ଆଗ୍ରହ ପ୍ରକାଶ ପାଇବା ପଛରେ ବିଭିନ୍ନ ବନ୍ଧୁଙ୍କ ସୁଚିନ୍ତିତ ପରାମର୍ଶ ଓ ନୈତିକ ପ୍ରୋତ୍ସାହନ ଅବଶ୍ୟ ରହିଛି । ଆମ ସମାଜରେ ଯେଉଁ କିଛି ଆଧ୍ୟାତ୍ମିକ ସଙ୍ଗଠନ ରହିଛି ସେମାନଙ୍କ ଆଡକୁ ମୁଁ କଦାପି ଢ଼ଳି ନାହିଁ । ବିଶ୍ୱ ସାହିତ୍ୟରେ ଗୁରୁମାନଙ୍କର କଳ୍ପନା ସବୁବେଳେ ରହି ଆସିଛି । ମୁଁ ପଢ଼ିଥିବା ବହିମାନଙ୍କର ବର୍ଣ୍ଣିତ ଗୁରୁମାନଙ୍କର ବିଷୟରେ ଦୁଇପଦ କହିବା ଏକାନ୍ତ ଆବଶ୍ୟକ ମନେ କରୁଛି । ଦସ୍ତୋଭସ୍କି ତାଙ୍କର ବହି 'ଦି ବ୍ରଦରସ୍ କାରାମାଜୋଭ' (The Brother's Karamazov) ରେ ଫାଦର ଜୋସିମାଙ୍କ ଭଳି ଏକ ଚରିତ୍ରର ଉପସ୍ଥାପନ କରିଛନ୍ତି ଯାହା ଆଜି ପର୍ଯ୍ୟନ୍ତ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରୁଛି । ରିଚାର୍ଡ ବାକ୍ ତାଙ୍କର ବହି 'ଇଲ୍ୟୁଜନ୍'ରେ ଗୁରୁଙ୍କୁ ବର୍ଣ୍ଣନା କରିବାକୁ ଯାଇ ତାଙ୍କୁ

Reluctant Messiah ବୋଲି ନାମିତ କରିଛନ୍ତି । ହରମାନ୍ ହେସ୍ ତାଙ୍କର ନୋବେଲ୍ ପ୍ରାଇଜ ପ୍ରାପ୍ତ ବହି ମ୍ୟାଜିଷ୍ଟର ଲୁଡି (Majister Ludi)ରେ ଯେଉଁ ଗୁରୁଙ୍କ ପରିକଳ୍ପନା କରିଛନ୍ତି ସେ ହେଉଛନ୍ତି ଏକାଧାରରେ ଗଣିତ, ସଙ୍ଗୀତ ଓ ଉପାସନାର ପ୍ରତୀକ । କାର୍ଲୋସ୍ କାଷ୍ଟାନେଡ଼ା ମେକ୍‌ସିକୋରେ ଡନ୍‌ଜୁଆନ୍ ନାମକ ଗୁରୁଙ୍କୁ ଠାବ କରିଛନ୍ତି ଯିଏ ଅଦ୍‌ଭୂତ ଆଧାତ୍ମିକ ଶକ୍ତିର ଅଧିକାରୀ । ଔପନ୍ୟାସିକ ଆର.କେ.ନାରାୟଣ 'ଦି ରିଲକ୍‌ଟାଣ୍ଟ ଗୁରୁ' (The Reluctant Guru) ନାମରେ ଏକ ଗଳ୍ପ ସଙ୍କଳନ ଲେଖି କହିବାକୁ ଚାହିଁଛନ୍ତି ଯେ ଭାରତରେ ଅନେକ ପ୍ରକାରର ଗୁରୁ ଅଛନ୍ତି । ଆମ ଓଡ଼ିଶାରେ ଓଡ଼ିଆ ଲେଖକ ମହାପାତ୍ର ନୀଳମଣି ସାହୁ "କପୋତ ପକ୍ଷୀ ଗୁରୁ ମୋର" ନାମକ ଗଳ୍ପ ଲେଖି ଓଡ଼ିଆ ସାହିତ୍ୟରେ ଏକ ବିଶେଷ ସ୍ଥାନ ଅଧିକାର କରିଛନ୍ତି । ପାଶ୍ଚାତ୍ୟ ଦୃଷ୍ଟିକୋଣରେ ବର୍ଣ୍ଣିତ ଭାରତ ଅସଲରେ ଅନ୍ୟ କିଛି । ପ୍ରକୃତରେ ଗୁରୁ ଓ ଶିକ୍ଷକ ଭିତରେ ଅନେକ ଫରକ ଅଛି । ଶିକ୍ଷକ ଶିକ୍ଷାଦାନ କରିଥାଏ । ଗୁରୁ କିନ୍ତୁ ଆଧାତ୍ମିକତାରେ ନିଜକୁ ପରିଚିତ କରାଇଥାଏ । ଗୁରୁ ଶିଷ୍ୟ ପରମ୍ପରାକୁ ନେଇ ଅନେକ ପୁସ୍ତକ ମଧ୍ୟ ରଚନା କରାଯାଇଛି । ଯୋଗଶାସ୍ତ୍ର ଠାରୁ ଆରମ୍ଭ କରି ବଣିଜ ବେପାର ପର୍ଯ୍ୟନ୍ତ ଗୁରୁମାନେ ଆବିର୍ଭାବ ହୋଇଛନ୍ତି । ବିଭିନ୍ନ ଗୁରୁମାନଙ୍କ ସଂସ୍ପର୍ଶରେ ଆସି ଅନେକ ନିଜ ନିଜର ଆଧାତ୍ମିକ ଅନୁଭୂତି ଲେଖିଛନ୍ତି । ଜଣେ ବନ୍ଧୁ 'ଲିଭିଂ ଉଇଥ୍ ବି ହିମାଲୟାନ୍ ମାଷ୍ଟରସ୍' (Living with the Himalayan Masters) ବହିଟି ମୋତେ ପଢ଼ିବାକୁ ପ୍ରସ୍ତାବ ଦେଇଛନ୍ତି । ସବୁକ୍ଷେତ୍ରରେ ଗୁରୁମାନେ ଯେମିତି ଭରି ଯାଇଛନ୍ତି ଓ ସାଧାରଣ ମଣିଷକୁ ସେମାନଙ୍କୁ ଖୋଜିବା ପାଇଁ ଯଥେଷ୍ଟ ସମୟ ଲାଗୁନାହିଁ ଆଜିକାଲି । ମୋ ଜୀବନରେ ବିଭିନ୍ନ ପରିସରରେ ଗୁରୁମାନେ ଦେଖାଦେଇଛନ୍ତି । ମୁଁ ସେମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଛି କି ? ତର୍କ ଓ ଜ୍ଞାନର ଜାଲରେ କବଳିତ ହୋଇ ଜଣେ ସବୁକିଛି ପ୍ରଶ୍ନ ସୃଷ୍ଟି କରିଚାଲିଥାଏ । ଉତ୍ତର ମିଳୁ କି ନ ମିଳୁ, ପ୍ରଶ୍ନ ପରେ ପ୍ରଶ୍ନ ମୁଣ୍ଡ ଟେକିଥାଏ । ଜୀବନର ଚୌମୁହାଣୀରେ ବି ଅଟକି ଯିବାକୁ ପଡିଥାଏ । କିନ୍ତୁ ଆଗେଇ ଚାଲୁଥିବା ମଣିଷକୁ ଗୁରୁମାନଙ୍କୁ ପାଇବାକୁ ବେଶି ସମୟ ଲାଗେ ନାହିଁ ।

❑ ❑ ❑

**୪୧**

# ନଷ୍ଟାଲ୍‌ଜିଆ : ବଞ୍ଚିବାର ଅନ୍ୟତମ ପାଥେୟ

ଜଣେ ଆତ୍ମନିଷ୍ଠ ଜୀବନଯାତ୍ରୀର ସମସ୍ତ ଅନ୍ୱେଷଣର ପ୍ରେରଣା କ'ଣ ବୋଲି ଅନେକ ପ୍ରଶ୍ନ ଉଠିଛି ଓ ବିଭିନ୍ନ ବାଟରେ ତାହାର ଉତ୍ତର ମଧ୍ୟ ଦିଆଯାଇଛି । ଯେ ପର୍ଯ୍ୟନ୍ତ ଏହି ପ୍ରକ୍ରିୟା ଚାଲିଥିବ, ସେ ପର୍ଯ୍ୟନ୍ତ ଏ ପ୍ରଶ୍ନୋତ୍ତର ଆମ ସମସ୍ତଙ୍କୁ ସମ୍ମୋହିତକରି ରଖିଥିବ ନିଶ୍ଚିତ । ଅର୍ଥପୂର୍ଣ୍ଣ ଜୀବନଯାତ୍ରାର ତିନୋଟି ଦିଗ ବୋଲି ମୋଟାମୋଟି କୁହାଯାଇପାରେ – ଆଧାତ୍ମିକ, ବୌଦ୍ଧିକ ଓ ଆବେଗମୟ । ବେଳେବେଳେ ଏ ସମସ୍ତଙ୍କର ସମନ୍ୱୟ ମଧ୍ୟ ସମାହିତ ହୋଇଥାଏ ମଣିଷ ଜୀବନରେ । ସ୍ତରୀଭୂତ ଜୀବନରେ ସମ୍ଭବତଃ ମଣିଷ ଗୋଟାଏ ସ୍ତରରୁ ଆଉ ଏକ ଉଚ୍ଚସ୍ତରକୁ ଯିବାକୁ ସର୍ବଦା ସଂଘର୍ଷରତ ହୋଇଥାଏ । ଆମେ ସବୁ ଜୀବନସାରା ଯୁକ୍ତି କରିଥାଉ – ମଣିଷ କାହାଦ୍ୱାରା ପରିଚାଳିତ ? ବିଶ୍ୱାସ ନା ତର୍କ ନା ଆବେଗ ? ନା ଆଉ କିଛି ? ଆମେ ଆମର ଜୀବନକୁ ଅନ୍ତର୍ଦୃଷ୍ଟିର ସହ ଦେଖୁ କି ନାହିଁ ଜଣାନାହିଁ ସତ, କିନ୍ତୁ ଏହାର ଅପରୂପ ପରିପ୍ରକାଶ ଏଇ ଭିତରେ ହିଁ ରହିଥାଏ । କିଛି ବର୍ଷତଳେ ମୁଁ ଅରୁଣାଞ୍ଚଳ ପ୍ରଦେଶର ତାୱାଙ୍ଗ ମୋନାଷ୍ଟେରୀ ଯାଇଥିଲି । ବୌଦ୍ଧଧର୍ମାବଲମ୍ବୀଙ୍କ ପାଇଁ ଏହା ଏକ ବିଖ୍ୟାତ ଓ ଐତିହାସିକ ଉପାସନା କ୍ଷେତ୍ର ବୋଲି ପୃଥିବୀସାରା ପରିଚିତ । ହଜାର ହଜାର ତୀର୍ଥଯାତ୍ରୀ ଆସନ୍ତି ଏଠାକୁ । ଆଉ ଆସନ୍ତି ଅନ୍ୱେଷଣରତ ପରିବ୍ରାଜକମାନେ ଓ ଆଗ୍ରହୀ ପର୍ଯ୍ୟଟକମାନେ । ଚୀନ ସୀମାନ୍ତରେ ଅବସ୍ଥିତ ଏ ଚମତ୍କାର ସ୍ଥାନର ଉଚ୍ଚତା ଏଗାର ହଜାର ଫୁଟ । କିନ୍ତୁ ଏ ସ୍ଥାନରେ ପହଞ୍ଚିବାକୁ ହେଲେ ପାର୍ବତୀୟ ଅଙ୍କାବଙ୍କା ଘାଟି ରାସ୍ତା ଦେଇ ଯିବାକୁ ହୁଏ । ତେର ହଜାର ଫୁଟ ଉଚ୍ଚରେ ଅବସ୍ଥିତ ଓ କିମ୍ବଦନ୍ତୀ ପରିପୂର୍ଣ୍ଣ ସେଲା ପାସ (Sela pass) ଘାଟି ଚଢିବାକୁ ହୁଏ । ବରଫାବୃତ ପର୍ବତ ଓ ସୂର୍ଯ୍ୟକିରଣର ଝଲକ ଯିଏ ଦେଖିଛି ଜୀବନ ସାରା ତାହା ଭୁଲି ନାହିଁ । ମୋର ଜୀବନରେ ଏହା ହିଁ ଘଟିଥିଲା । ଏଇ ସବୁ ସ୍ଥାନରେ ଆଧାତ୍ମିକ, ବୌଦ୍ଧିକ ଓ ଆବେଗମୟ ଜୀବନର ସମନ୍ୱୟ ହୋଇଯାଏ ସତରେ । ଜୀବନଯାତ୍ରା ଏଇଠି ସରିଯାଉ ବୋଲି ମନରେ ଭାବାନ୍ତର ସୃଷ୍ଟି ହୁଏ । କିନ୍ତୁ ତାୱାଙ୍ଗ୍ ଘାଟି ରାସ୍ତାର ଆରମ୍ଭରେ ସମତଳ ଇଲାକା ଭାଲୁକ୍ ପଙ୍ଗ । ଛୋଟ ସହରଟିଏ ।

ସାମରିକ ଓ ବେସାମରିକ କାର୍ଯ୍ୟାଳୟମାନଙ୍କର ଲମ୍ୱାଲମ୍ୱା କୋଠାଘର ସ୍ଥାନୀୟ ଲୋକଙ୍କ ବସତିକୁ ଲାଗି । ଜଣେ ବନ୍ଧୁ କହିଲେ ଯେ କିଛି ଦୂରରେ ଟିପି ନାମକ ଏକ ଦର୍ଶନୀୟ ସ୍ଥାନ ଅଛି । କାମେଙ୍ଗ ନଦୀ କୂଳରେ ଅବସ୍ଥିତ ଏ ସ୍ଥାନରେ ଅର୍କିଡ୍(Orchid) ଫୁଲର ଗବେଷଣା କରନ୍ତି । ଚମତ୍କାର ଓ ମନୋରମ ଏ ସ୍ଥାନ । ମୁଁ କାମେଙ୍ଗ ନଦୀ କୂଳରେ ଓହ୍ଲାଇଥିଲି ଓ ପଠାରେ କିଛି ସମୟ ବସିଥିଲି । ଉପରେ ଆକାଶ, ନିର୍ମେଘ । ନଦୀକୂଳକୁ ଲାଗି ଘଞ୍ଚ ଅରଣ୍ୟ । କାମେଙ୍ଗ୍ ନଦୀ କାହିଁ କେତେ ଦୂରରୁ ବୋହି ଆସିଛି ବିଭିନ୍ନ ପର୍ବତ ଓ ଅରଣ୍ୟ ଅତିକ୍ରମ କରି ବ୍ରହ୍ମପୁତ୍ର ସହ ମିଶିବା ପାଇଁ । ସାଙ୍ଗରେ ଆଣିଛି ରଙ୍ଗ ବେରଙ୍ଗର ଗୋଲାକାର ଛୋଟ ଛୋଟ ପଥର । ପର୍ଯ୍ୟଟକମାନେ ଏସବୁକୁ ସଂଗ୍ରହ କରନ୍ତି ଟେବୁଲରେ ସଜାଇବା ପାଇଁ । ନଦୀର ସ୍ରୋତ ପ୍ରଖର ଓ ଗାଧୋଇବାକୁ ସମସ୍ତଙ୍କୁ ମନା କରାଯାଇଥାଏ । ପ୍ରକୃତରେ ନଦୀଗର୍ଭ ପଥରରେ ପରିପୂର୍ଣ୍ଣ । ଗୋଡ ଖସିଯାଇ ଅନେକଙ୍କ ମୃତ୍ୟୁ ହୋଇଛି ବୋଲି ସ୍ଥାନୀୟ ଲୋକେ ସତର୍କବାଣୀ ଶୁଣାଉଥିଲେ । ମୁଁ କିନ୍ତୁ ଏକାକୀ ବସିଥିଲି ଓ ଗୋଟାଏ ପ୍ରକାର ଐକାନ୍ତିକ ଭାବନାରେ ବୁଡି ଯାଇଥିଲି । ଏକ ଅଦ୍‌ଭୁତ ଚେତନା ଓ ସ୍ମୃତି ମୋତେ ଗୋଟାପଣେ ଗ୍ରାସ କରିଥିଲା । ମୁଁ ମନେ ପକାଉଥିଲି ଆମ ନଦୀ କଥା । ଦୁଇ ପାଖେ ଉଚା ଉଚା ପାହାଡ଼ ଓ ଜଙ୍ଗଲ । ତା' ଭିତରୁ ନଦୀଟି ନିର୍ଗତ ହୋଇଛି ବୋଲି ଜଣାପଡେ । ନଦୀ ପଠାରେ ବାଲି ଓ ପଥରର ଅପୂର୍ବ ବର୍ଣ୍ଣ ବୈଭବ । ଏଇଭଳି ଏକ ସ୍ମୃତିଚାରଣାକୁ ମୁଁ କହିବି ନଷ୍ଟାଲ୍‌ଜିଆ (Nostalgia) । ଜଣେ ପରିବ୍ରାଜକର ନିହାତି ଅନ୍ତରଙ୍ଗ ଅନୁଭୂତି ଏହା ନୁହେଁ ତ ଆଉ କ'ଣ ? ସେଦିନ ମୁଁ ଗତ କେତେଦିନର ଭାରାକ୍ରାନ୍ତ ଓ ଜଟିଳ ମାନସିକତାକୁ ଅତିକ୍ରମ କରି ଉପସ୍ଥିତ ହୋଇଥିଲି ଆଉ ଏକ ପୃଥିବୀରେ - ହୋଇଥିଲି ନଷ୍ଟାଲ୍‌ଜିକ୍ ।

ଆମେ ବନ୍ଧୁମାନେ ସମସ୍ତେ ନଷ୍ଟାଲ୍‌ଜିଆମାନଙ୍କୁ ନେଇ ବଞ୍ଚି ରହିଛୁ ବୋଲି କେହି କେହି ମନ୍ତବ୍ୟ ଦିଅନ୍ତି । ମୁଁ ଅସ୍ୱୀକାର କରିପାରେ ନାହିଁ । ଯେଉଁଠିକି ଗଲେ ବାରମ୍ବାର ମନେ ପଡିବ ସେଇ ସ୍ଥାନ, କାଳ, ପାତ୍ରର କଥା - ସେହି ଘର, ବୃକ୍ଷଲତା, ସବୁଜ ବନାନୀ, ନଦୀ, ପର୍ବତ, ସେଇ ସବୁ ଚିହ୍ନା ମୁହଁ ଓ ମମତାର ଡୋର । ମନେ ପଡିଯିବ ଅନେକ ଘଟଣା ଦୁର୍ଘଟଣା ଓ ମାନସପଟରେ ଲିପିବଦ୍ଧ ହୋଇଥିବା ଏକ ଇତିହାସ । ଆମେ ଯେଉଁମାନେ ବନ୍ଧୁତା ଓ ଭଲ ପାଇବାର ଉପତ୍ୟକାରେ ଜୀବନସାରା ରହିବାକୁ ଚାହୁଁ, ସବୁବେଳେ ଯେମିତି ସ୍ମୃତିର ପାହାଚ ଚଢୁଥାଉ । ଜଣେ ବନ୍ଧୁ ହଳଦିଆ ଫ୍ରକ୍ ପିନ୍ଧୁଥିବା ଝିଅଟିର ପ୍ରେମରେ ପଡି ପାଗଳ ହୋଇଯାଇଥିଲେ । ହଳଦିଆ ରଙ୍ଗ ଦେଖିଲା ମାତ୍ରକେ ଆତ୍ମବିଭୋର ହୋଇଯାଉଥିଲେ । କ୍ଷଣିକ ପାଇଁ ନିଜକୁ ହଜାଇ ଦେଉଥିଲେ । ମୁଁ ତାଙ୍କ ପାଇଁ ଆମ୍‌ଷ୍ଟର ଡ୍ୟାମ୍ ମ୍ୟୁଜିୟମରୁ ଭାନ୍‌ଗଗ୍‌ଙ୍କ ପ୍ରସିଦ୍ଧ ଚିତ୍ର "ସୂର୍ଯ୍ୟମୁଖୀ ଫୁଲ'ର ଏକ ନକଲ ଚିତ୍ର ଆଣି ଦେଇଥିଲି । ସେ କେତେଦିନ ଧରି ତା'କୁ ଦେଖୁଥିଲେ । ଆଉ ଜଣେ ବନ୍ଧୁ ଗାଇଆଳ ହେବାର ସ୍ୱପ୍ନ ଦେଖୁଥିଲେ । ଗୋମେଷାଦି

ପଶୁମାନଙ୍କ ପଛେ ପଛେ ଚରଣ ଭୂମି ଅନୁସନ୍ଧାନରେ ଯିବାକୁ ସେ ସର୍ବଦା ସ୍ୱପ୍ନ ଦେଖୁଥିଲେ । ଗାଈଆଳ ହେବାରେ ଏକ ଚରମ ମୁକ୍ତି ଓ ସ୍ୱାଧୀନତାର ସ୍ୱାଦ ସେ ଚାଖୁଥିଲେ । ଆଉ ଜଣେ ବନ୍ଧୁ ତିବ୍ବତୀୟ ଲାମା ହେବାକୁ ଚାହୁଁଥିଲେ । ସାଧୁସନ୍ଥଙ୍କୁ ଦେଖିଲାମାତ୍ରକେ ସେ ଏକ ନୂତନ ପ୍ରେରଣାରେ ଆନ୍ଦୋଳିତ ହୋଇ ପଡୁଥିଲେ । ଜୀବନର ଅନ୍ତିମ ଲକ୍ଷ୍ୟ ଥିଲା ଯେ ବରଫାବୃତ୍ତ ପର୍ବତ ଗୁମ୍ଫାରେ ସେ ତପସ୍ୟା କରିବେ ଓ ନିର୍ବାଣ ପାଇବେ । ଏସବୁକୁ ବାହାନା କରି ଆମ ବନ୍ଧୁମାନେ ବିଜନତାକୁ ଭଲ ପାଉଥିଲେ । ସେ ସବୁସ୍ଥାନରେ ପୂର୍ବଦିନମାନଙ୍କର ଅଭୁଲାସ୍ମୃତିକୁ ନେଇ ନୂଆ ନୂଆ ସ୍ୱପ୍ନ ଗଢୁଥିଲେ । ଏଇ ସବୁକଥା ଭାବି ଭାବି ମୁଁ ଖୁବ୍ ନଷ୍ଟାଲଜିକ୍ ହୋଇଯାଏ ଏବେ ବି । ସେ ବନ୍ଧୁମାନେ ନାହାନ୍ତି ଏବେ, କି ସ୍ୱପ୍ନବିଳାସ ନାହିଁ ଆଜିର ପୃଥିବୀରେ ।

ସତକଥା କହିବାକୁ ଗଲେ, ଆମକୁ ପ୍ରଭାବିତ କରିଥିଲେ କେତୋଟି ବହି ଓ ସେମାନଙ୍କର ଲେଖକମାନେ । ଏ ଭିତରେ ସର୍ବପ୍ରଥମେ ଥିଲେ ନୋବେଲ୍ ପୁରସ୍କାର ପ୍ରାପ୍ତ ଔପନ୍ୟାସିକ ହରମାନ୍ ହେସ୍ । ମୁଁ ତାଙ୍କର ପ୍ରାୟ ସବୁ ବହି ପଢିଛି କି ନାହିଁ ବୋଲି ଜର୍ମାନୀର ବନ୍ ସହରରେ ଏକ ସନ୍ଧ୍ୟାରେ ଜଣେ ଜର୍ମାନ ବନ୍ଧୁ ମୋର ପରୀକ୍ଷା ନେଉଥିଲେ । ତାଙ୍କ ପାଖରେ ମୂଳଜର୍ମାନ୍ ଭାଷାର ହେସ୍‌ଙ୍କ ସମ୍ପୂର୍ଣ୍ଣକୃତି ରହିଛି ଓ ଏହା କିପରି ଅଭୁତପୂର୍ବ ଭାବେ କାବ୍ୟିକ ସେ ଉଚ୍ଛ୍ୱସିତ ସ୍ୱରରେ କହୁଥିଲେ । ଗୋଟାକ ପରେ ଗୋଟାଏ ବହିର ଆଲୋଚନା ହେଉଥିଲା । ସେ ଅବାକ୍ ହେଉଥିଲେ ଯେ ମୁଁ ହେସ୍‌ଙ୍କ ବହି କେବଳ ପଢ଼ିନାହିଁ, ବିଶେଷଭାବେ ବୁଝିଛି ଓ ପ୍ରଭାବିତ ହୋଇଛି ମଧ । ସେ କହୁଥିଲେ "ଦି ଗ୍ଲାସ୍ ବିଡ୍ ଗେମ୍' (The Glass Bead Game) ତାଙ୍କର ଶ୍ରେଷ୍ଠ ବହି । ମୁଁ କହୁଥିଲି "କୁଲ୍‌ପ"(Knulp) । ସେ ପଚାରୁଥିଲେ କାହିଁକି ? ମୁଁ କହୁଥିଲି ଏଥିରେ ଅଛି ଅସଲ ନଷ୍ଟାଲ୍‌ଜିଆ । ମଣିଷ ସ୍ଥାନ, କାଳ, ପାତ୍ର ସହ ବାନ୍ଧି ହୋଇଯିବ ନାହିଁ । ଯେଉଁଠି ପହଞ୍ଚିବ, ସେଠାରେ ବନ୍ଧୁଙ୍କ ଗହଣରେ ସୃଷ୍ଟି କରିବ ନଷ୍ଟାଲ୍‌ଜିଆ । ମୁଁ କେତେଥର ଏଇଭଳି ବଞ୍ଚିବା କଥା କଳ୍ପନା କରିଛି । ଅଚାନକ ଅତୀତର କୌଣସି ପରିଚିତ ସ୍ଥାନରେ ପହଞ୍ଚିଯିବ ଓ ସେଠାରେ ସମସ୍ତେ ମନେ ପକାଇବେ ଏ ମଣିଷଟି ଏଇଠି ରହୁଥିଲା ଓ ଅସ୍ୱାଭାବିକ ଓ ଅମଣିଷ ଜୀବନ କାଟୁଥିଲା । ବନ୍ଧୁତାର ପରଶ ଥିବ ଅଥଚ ମାୟାମମତା ନଥିବ । ବନ୍ଧୁଜଣକ ମୋ ବିଶ୍ଳେଷଣରେ ସହମତ ହେଲେ ଓ ମୋତେ ଜଣେ ରୋମାଣ୍ଟିକ୍ ବୋଲି ନାମିତ କରିଲେ । ଚାଳିଶ ବର୍ଷ ତଳେ "ହରମାନ୍ ହେସ୍"ଙ୍କ ପ୍ରଥମ ପୁସ୍ତକ ପଢ଼ିବାକୁ ସୁଯୋଗ ମିଳିଥିଲା । ଆଜି ସମୟ ମିଳିଲେ ସେ ସବୁ ବହି ଗୁଡିକୁ ମୁଁ ପୁଣଥରେ ପଢ଼ନ୍ତି । ଆମେ ସମସ୍ତ ବନ୍ଧୁ ଏକାଠି ହୁଅନ୍ତୁ ଓ ଗତ କେତେ ବର୍ଷର ଜୀବନରେ ଯେଉଁ ଉଠାଣି ଗଡାଣି ଚାଲିଛି ତାହାର ଏକ ଆତ୍ମିକ ସମୀକ୍ଷା କରନ୍ତୁ ଓ ନଷ୍ଟାଲଜିଆର ପୁନଃ ଆବିଷ୍କାର କରନ୍ତୁ । ପୁଣିଥରେ ପ୍ରମାଣ କରିଦିଅନ୍ତୁ ଯେ ଆମ ସମସ୍ତଙ୍କୁ ଯେମିତି ଏକ ଅଭୁତ ନଷ୍ଟାଲ୍‌ଜିଆ ବାନ୍ଧି ରଖିଛି ।

ଆଉ ଜଣେ ଲେଖକ ଯିଏ "ନଷ୍ଟାଲ୍‌ଜିଆ" କଥା ମନେପକାଇ ଦିଅନ୍ତି ସେ ହେଉଛନ୍ତି ଅଙ୍କଲ୍ ହୋ - ଅର୍ଥାତ ଭିଏତ୍‌ନାମର ଜନନାୟକ "ହୋ ଚି ମିନ୍" । ତାଙ୍କର ବିଖ୍ୟାତ ପୁସ୍ତକ "ଦି ପ୍ରିଜନ୍ ଡାଏରୀ" (The Prison Diary) ପ୍ରକୃତରେ ଏକ କାରା କବିତା । ବନ୍ଦୀଶାଳାରେ ଥାଇ ସେ ମନେ ପକାଇଛନ୍ତି ଘର କଥା, ମଇଁଷି ପିଠିରେ ବସି ବଂଶୀ ଫୁଙ୍କିବା କଥା, ଲଢୁଥିବା ସଂଗ୍ରାମୀ ବନ୍ଧୁମାନଙ୍କ କଥା, ଦୁଃଖରେ ଥିବା ଆତ୍ମୀୟମାନଙ୍କ କଥା । ଛୋଟ ଛୋଟ କବିତା ଗୁଚ୍ଛ କିନ୍ତୁ ଖୁବ୍ ହୃଦୟସ୍ପର୍ଶୀ । ପ୍ରତିଟି ଶବ୍ଦରେ ନଷ୍ଟାଲ୍‌ଜିଆ । ମୁଁ ତାଙ୍କୁ ଉଦ୍ଧାର କରୁଛି:

Mountains, Clouds
More Mountains, More Clouds
Far below a river streams
bright and unspotted.
Alone, with a beat-up heart,
I walk on the Western Range.
And gaze far off towards the South
and think of my Comrades.

ମୁଁ କ୍ଲାନ୍ତ ହୋଇଗଲେ ଏ ବହିଟି ଥରକୁ ଥର ପଢ଼ିଥାଏ । ନଷ୍ଟାଲ୍‌ଜିଆ ମରିଯାଏ ନାହିଁ । କେବେହେଲେ ବି ନୁହେଁ ।

□□□

୪୨

# ପର୍ବତ ଓ ପ୍ରେମ, ଉପତ୍ୟକା ଓ ଉନ୍ମାଦନା

୧୯୮୦ ମସିହାର କଥା । ରାଜସ୍ଥାନର ଅର୍ଦ୍ଧମରୁଭୂମି ଅଞ୍ଚଳରୁ ହିଁ ଏକ ନୂତନ ଆଡଭେଞ୍ଚର ଆରମ୍ଭ ହୋଇଥିଲା । ଖାଲି ମଣିଷମାନଙ୍କ ସହ ନୁହେଁ, ରଙ୍ଗ ବେରଙ୍ଗର ଲ୍ୟାଣ୍ଡ୍‌ସ୍କେପ୍‌ମାନଙ୍କ ସହ । ଆମେ ଯେଉଁ ଗାଁରେ ରହୁଥିଲୁ ସେଠାରେ ଥିଲା ଛୋଟ ପାହାଡଟିଏ । ତା'ପାଖକୁ ଲାଗି ବିସ୍ତୀର୍ଣ୍ଣ ବାଲୁଖଣ୍ଡ । ସବୁ ଉଚା ନୀଚାର ଭୂଗୋଳ । ରାଜସ୍ଥାନର ଲଳନାମାନେ ଚମତ୍କାର ରଙ୍ଗର ପୋଷାକ ପିନ୍ଧନ୍ତି । ଘାଘରା, ଚୋଲି ଓ ଓଢ଼ଣୀର ଅଦ୍‌ଭୂତ ରଙ୍ଗ ବିନ୍ୟାସ । ରାଜସ୍ଥାନର ପୁରୁଷମାନଙ୍କ ମଥାରେ ପଗଡି-ସ୍ଥାନୀୟ ଭାଷାରେ କହନ୍ତି ସାଫା । ଲାଲ୍, ହଳଦିଆ, ନେଳିଆ ରଙ୍ଗର ଉଜ୍ଜ୍ୱଳତମ ପରିପ୍ରକାଶ । ଦିନେ ବାଲିକୁଦର ଶୀର୍ଷ ସ୍ଥାନରେ ପହଞ୍ଚି ମୁଁ ଆତ୍ମବିଭୋର ହୋଇ ଯାଇଥାଏ । ସାଥୀରେ ବନ୍ଧୁ ଖେମ୍‌ରାଜ । ମୁଁ କିପରି ପର୍ବତ ଓ ଉପତ୍ୟକାକୁ ପିଲାଦିନରୁ ଭଲ ପାଇଛି ଜାଣିବା ପରେ ପ୍ରସ୍ତାବ ଦେଲେ ଯେ ସେ ଦେଖିଥିବା ସବୁଠାରୁ ସୁନ୍ଦର ପର୍ବତ ଓ ଉପତ୍ୟକାକୁ ମୋତେ ଦେଖାଇବାକୁ ନେଇଯିବ । ଖେମ୍‌ରାଜ ରାଜସ୍ଥାନର ଯୁବକ । ଜାତିରେ ଜାଠ୍ । ଘର ହେଉଛି ଚିତୋରଗଡ଼ର ଏକ ଅନାମଧେୟ ଗାଁରେ । ଜୀବନରେ ତାଙ୍କର ଚରମ ଅଭିଳାଷ; ସେ ହେବେ ଓଷ୍ଟ୍ରୋଭସ୍କିଙ୍କ(Ostrovsky) ବିଖ୍ୟାତ ଋଷୀୟ ଉପନ୍ୟାସ 'ଇସ୍ପାତ ମଣିଷ'(How the Steel Was Tempered ) ର ନାୟକ ପାଭେଲ କୋର୍ଚିଗିନ୍(Korchigin) ଓ ବିପ୍ଳବର ସେନାପତି । କରିବେ ମାଓ ସେ ତୁଙ୍ଗ୍‌ଙ୍କ 'ଲଙ୍ଗ୍ ମାର୍ଚ୍ଚ' । ମୁଁ କିନ୍ତୁ ତାଙ୍କୁ ଭାବୁଥାଏ ଯେ ସେ ଜଣେ ବିପ୍ଳବୀ ହିରୋ ନୁହନ୍ତି । ସେ ଅସଲରେ ଜଣେ ରୋମାଣ୍ଟିକ୍ ପ୍ରେମିକ । ମୁଁ ତାଙ୍କୁ ଗ୍ରୀକ୍ ଔପନ୍ୟାସିକ ନିକୋସ୍ କାଜାନ୍‌ଜାକିସ୍‌ଙ୍କ ଅନ୍ୟତମ ଶ୍ରେଷ୍ଠକୃତି 'ଜୋର୍ବା, ଦି ଗ୍ରୀକ୍" (Zorba, the Greek) ରେ ହିଁ ଠାବ କରିଥାଏ । ଜଣେ ନାଚିବ, ଗାଇବ, ଜୀବନର ଉଦ୍ଦାମତା ଅନୁଭବ କରିବା ପାଇଁ ପ୍ରେମରେ ପଡିଯିବ ଏବଂ କରିବ ଲୋମହର୍ଷଣକାରୀ ଅଭିଯାନ । ମୋତେ ପ୍ରଭାବିତ କରିବା ପାଇଁ ସେ କହୁଥିଲେ ଯେ ତାଙ୍କ ଗାଁ ସବୁଠାରୁ ସୁନ୍ଦର ଓ ସବୁଜ । ପାଖରେ

ବିସ୍ତୀର୍ଣ୍ଣ ଆଖୁ କିଆରୀ । ଅନତି ଦୂରରେ ବିରଳା କମ୍ପାନୀର ସିମେଣ୍ଟ ଫ୍ୟାକ୍ଟ୍ରୀ । ଗାଁର ଅନେକ ଲୋକ କର୍ମରତ ସେଠାରେ । ଆଖୁ କିଆରୀ ଭିତରେ ହୁଏ ତାଙ୍କର ଅନେକଙ୍କ ସହ ପ୍ରେମାଳାପ । ଆଖପାଖର ସବୁଠାରୁ ସାହସୀ ଯୁବକ ହିସାବରେ ସେ ନାମ ଅର୍ଜନ କରିଥିଲେ । କଲେଜରେ ପାଠ ପଢ଼ିବା ବେଳେ ଛାତ୍ରନେତା ଥିଲେ । ଶ୍ରମିକ ସଂଗଠନଟିଏ କରି ବିରଳା କମ୍ପାନୀର ଅନ୍ୟାୟ ଶୋଷଣ ବିରୁଦ୍ଧରେ ଲଢ଼ିବାକୁ ଅଣ୍ଟା ଭିଡିଥିଲେ । ଏଇଥିପାଇଁ ଆଖପାଖର ସମସ୍ତ ଯୁବତୀଙ୍କର ସେ ଆକର୍ଷଣ ହୋଇପଡିଥିଲେ । ବିପ୍ଳବୀର ଜୀବନରେ ଅସଲ ପ୍ରେମ ହେଉଛି ଆଦର୍ଶବାଦ ସହ ପ୍ରେମ । ଶାରୀରିକ ବା ଆଧ୍ୟାତ୍ମିକ ନୁହେଁ । ଏଥିରେ କୁଆଡେ ବ୍ୟର୍ଥତା ଓ ହତାଶାଭାବ ନାହିଁ । ନାହିଁ ଅନୁତାପ ଓ ଅନୁଶୋଚନା । ଯେଉଁମାନେ ଖେମ୍‌ରାଜଙ୍କୁ ପ୍ରେମ ନିବେଦନ କରୁଥିଲେ, ସେମାନେ ମଧ୍ୟ ଜାଣିଥିଲେ ଯେ ତାଙ୍କର ଜୀବନର ଲକ୍ଷ୍ୟ ଅନ୍ୟକିଛି । ମୋତେ ଦେଖୁ ଦେଖୁ ସେ କହି ପକାଇଲେ ଯେ ମୁଁ ଜଣେ ବ୍ୟର୍ଥ ପ୍ରେମିକ ନିଶ୍ଚିତ । ନହେଲେ ଜୀବନଟାକୁ ଏମିତି ଉଦାସ ଓ ମର୍ମାନ୍ତକ ବୋଲି କାହିଁକି ସବୁବେଳେ ନିଅନ୍ତି । ଜୀବନ ଓ ଏହାର ଯାତ୍ରାପଥକୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କରି ମୁଁ ଯେ ଏକ ଭୟଙ୍କର ଆବର୍ତ୍ତ ଭିତରେ ପଡିଯାଉଛି ତାହା ମୁଁ ତାଙ୍କୁ ବୁଝାଇ ପାରୁନଥିଲି । ମୁଁ ଓ ଖେମ୍‌ରାଜ କେତେ ରାତି କାଟିଛୁ ଆପଣା ଆପଣାର କଥା କହି । ମୁଁ ଜଣେ ସଂକୀର୍ଣ୍ଣ ଗ୍ରନ୍ଥକୀଟ ଓ ଆର୍ମଚେୟାର ବୁଦ୍ଧିଜୀବୀ । ସେ କିନ୍ତୁ ଜୀବନ ଓ ଯୌବନକୁ ଉପଭୋଗ କରିଆସୁଥିବା ସରଳ, କର୍ମଚଞ୍ଚଳ ସାହସୀ ଓ ମେଳାପୀ ମଣିଷଟିଏ । ସମସ୍ତଙ୍କ ସହ ବନ୍ଧୁତା ସ୍ଥାପନ କରିପାରିବାରେ ତାଙ୍କର ଥିଲା କଳା ନିପୁଣତା । ଏଇଥିପାଇଁ ଟ୍ରେନ୍‌ରେ ଯାତ୍ରା କରୁଥିବାବେଳେ ଜଣେ ନିଶା ବେପାରୀର ବ୍ୟାଗ୍‌କୁ କିଛି ସମୟ ପାଇଁ ନିଜ ହେପାଜତରେ ରଖି କୁଆଡେ ପୋଲିସ ହାତରେ ଧରାପଡିଥିଲେ ଓ ଅନେକ ଦିନ ଧରି ତାଙ୍କୁ ଜେରା କରାଯାଇଥିଲା । ଜଣେ ଭଲ ପାଉଥିବା ମଣିଷ ପାଇଁ ସେ ଜୀବନ ଦେଇଦେବେ ବୋଲି ତାଙ୍କର ସଂକଳ୍ପକୁ ଅନେକବାର ପ୍ରକାଶ କରିଥିଲେ । ନିମନ୍ତ୍ରଣ କରି ଥିଲେ ତାଙ୍କ ଗାଁକୁ ଯିବାକୁ । ଶୀତ ସରିଆସୁଥାଏ । ଆମେ ମିଟର ଗେଜ୍ ଟ୍ରେନ୍‌ରେ ଗଲୁ ମାରୱାଡ୍ ଜଙ୍କସନ୍ ପର୍ଯ୍ୟନ୍ତ, ସେଠାରୁ ବସ୍‌ଧରି ତାଙ୍କ ଗାଁରେ ପହଞ୍ଚିଲୁ । ଗାଁର ଉପକଣ୍ଠରେ ଛୋଟ ଘରଟିଏ । ମାଆ ଓ ସାନ ଭାଇକୁ ନେଇ ପରିବାର । ବାପା ମରିଯାଇଛନ୍ତି । ବଡ଼ଭାଇ ଅଲଗା ରହୁଛନ୍ତି ନିଜ ପରିବାର ସହ । ମୁଁ ସାଙ୍ଗରେ ଆସୁଛି ବୋଲି ଆଗରୁ ମାଆଙ୍କୁ ଫୋନ୍ କରିଦେଇ ସୂଚନା ଦେଇଥିଲେ । ଆମେ ପହଞ୍ଚିଲା ମାତ୍ରକେ ଗାଁ ସାରା ସବୁ ପୁଅଝିଅ ପହଞ୍ଚିଗଲେ ଆମ ପାଖରେ । ରାଜସ୍ଥାନରେ ଆତିଥ୍ୟପରାୟଣତା ଅତୁଳନୀୟ । ଖେମ୍‌ରାଜଙ୍କ ମାଆ ବିଭିନ୍ନ ପ୍ରକାରର ରାଜସ୍ଥାନୀ ଖାଦ୍ୟ ପରଷିଲେ । ଖେମ୍‌ରାଜଙ୍କ ବନ୍ଧୁ ବାନ୍ଧବୀମାନେ ଆସି ଦେଖାକଲେ ମୋ ସହ କୌତୁହଳର ସହିତ । କେହି କେହି ଗୀତନାଚ କରିବାର ପ୍ରସ୍ତାବ ଦେଲେ - ଘରବାହୁଡାର ଲୋକଗୀତ ଓ ନୃତ୍ୟ । ଖେମ୍‌ରାଜ ମୋତେ ଆଖପାଖର

ଆଖୁଖେତ ସବୁ ଦେଖାଇଲେ ଯେଉଁଠି ଗୋପନରେ ତାଙ୍କର ବାନ୍ଧବୀମାନଙ୍କ ସହ ପ୍ରେମାଳାପ ହୁଏ । ଏଇପରି ଦୁଇ ତିନିଦିନ କଟିଗଲା ଓ 'ଜୋର୍ବା ଦି ଗ୍ରୀକ୍' ଉପନ୍ୟାସରେ ଖେମ୍‌ରାଜ ହେଲେ "ଜୋର୍ବା" ଓ ମୁଁ ହେଲି "ଲେଖକ" । ତା'ପରେ କହିଲେ ଆମେ ଏତେବାଟ ଆସିଲେ । ଏଠାରୁ ମାଣ୍ଡୁ ଗଲେ କେମିତି ହୁଅନ୍ତା ? ମାଣ୍ଡୁର ପ୍ରସିଦ୍ଧ ପ୍ରେମକାହାଣୀ 'ରୂପମତୀ ଓ ବାଜ୍ ବାହାଦୂର'ଙ୍କ କଥା ମୁଁ ଆଗରୁ ପଢ଼ିଥିଲି । ଅଗତ୍ୟା ଏ ପ୍ରସ୍ତାବରେ ମୁଁ ରାଜିହେଲି । ଆମେ ରତ୍‌ଲାମ୍ ଅଭିମୁଖେ ବସ୍ ଧରିଲୁ । ସେଠାରୁ ଗଲୁ ଧାର ଓ ପହଞ୍ଚିଲୁ ମାଣ୍ଡୁ । ପହଞ୍ଚିଲା ବେଳକୁ ଦିନ ରତରତ । ଉପତ୍ୟକା ଓ ପାହାଡ଼ ପର୍ବତ । ଚମତ୍କାର ଦୃଶ୍ୟପଟ । ମାଣ୍ଡୁ ଗୋଟାଏ ପ୍ଲାଟ୍ୟୁ ବା ମାଳଭୂମି ଉପରେ ଅବସ୍ଥିତ । ବସ୍‌ଟି ଉଠାଣି ଗଡ଼ାଣି ରାସ୍ତାରେ ଉଠିଥାଏ । ତା'ପରଦିନ 'ସନ୍‌ସେଟ୍ ପଏଣ୍ଟ' ବା ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖିବା ସ୍ଥାନରେ ଛିଡା ହୋଇ ମୁଁ ନିଜକୁ ଆବିଷ୍କାର କରୁଥିଲି ଆଉଥରେ । ଦୂର ପର୍ବତ ଯେତିକି ସୁନ୍ଦର, ସେତିକି ସୁନ୍ଦର ଉପତ୍ୟକାସବୁ । ମୁଁ ଯଦି କବି ହୋଇଥାଆନ୍ତି, କେତେ କବିତା ଲେଖି ଦେଇଥାଆନ୍ତି । ମୁଁ ଯଦି ଚିତ୍ରକର ହୋଇଥାଆନ୍ତି, ମୋର ଜୀବନର ସର୍ବଶ୍ରେଷ୍ଠ ଚିତ୍ର ଆଙ୍କି ଥାଆନ୍ତି । ଏଇସବୁ ସ୍ଥାନରେ ଓ ମୁହୂର୍ତ୍ତରେ ଜୀବନକୁ କେବଳ ଅନ୍ତରଙ୍ଗ ଭାବେ ଭଲ ପାଇହୁଏ ।

ଖେମ୍‌ରାଜ ଆଗରୁ ମାଣ୍ଡୁ ଆସିଥିଲେ । ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ବିଭିନ୍ନ ଜରାଜୀର୍ଣ୍ଣ ରାଜପ୍ରାସାଦ, ଦୁର୍ଗ, ଘୋଡ଼ାଶାଳ । ଆମକୁ ଜଳଖିଆ ଖାଇ ଚାଲି ଚାଲି ବାହାରିବାକୁ ପଡିଲା । ପ୍ରଥମେ ଆମେ ରୂପମତୀଙ୍କ ନଅରକୁ ବୁଲିବାକୁ ଯାଇଥିଲୁ । ବାଜ୍ ବାହାଦୁର କେମିତି ଲୁଚି ଲୁଚି ତାଙ୍କ ପ୍ରେମିକା ପାଖକୁ ଆସୁଥିଲେ ଓ ଗୀତନାଚର ଆସରରେ ଭାଗ ନେଉଥିଲେ, ତାହା ଏବେ ମଧ୍ୟ ଲୋକମାନେ କୁହାକୁହି ହେଉଛନ୍ତି । ମୁଁ ଓ ଖେମ୍‌ରାଜ ତାହା ଶୁଣିବାକୁ ଆଉଥରେ ଆଗ୍ରହ ଦେଖାଇ ବସିଗଲୁ ଜଣେ କଥାକାର ପାଖରେ । ସାମ୍ନାରେ ବାଓବାଓ ବା ଆଫ୍ରିକାର ତେନ୍ତୁଳି ଗଛ ସବୁ । ଗଣ୍ଡିର ଗୋଲାକାର ଏତେ ବଡ଼ ଯେ ମାପି ହେବ ନାହିଁ । ଗଛରେ ଡାଳ ଓ ପତ୍ର ନାହିଁ କହିଲେ ଚଳେ । ଏଇ ସବୁ ତେନ୍ତୁଳିଗଛ ଆମ ଆଡର ତେନ୍ତୁଳି ଗଛ ଭଳି ନୁହେଁ । ଗୋଟାଏ ଗୋଲାକାର ପେଣ୍ଡୁଭଳି ଫଳ ଓ ତା'ଭିତରେ ଭାଙ୍ଗିଲେ, ତେନ୍ତୁଳି ମଞ୍ଜି ଲୁଚି ରହିଥାଏ । ସେ ତେନ୍ତୁଳି ଓ ଆମ ତେନ୍ତୁଳି ଭିତରେ ବିଶେଷ କିଛି ଫରକ ନଥାଏ । ବେଶ୍ ବିକ୍ରୀ ହୋଇଥାଏ । ପର୍ଯ୍ୟଟକମାନଙ୍କର ଗହଳି ଲାଗିଥାଏ ସବୁ ଦୋକାନରେ । ଆଫ୍ରିକାର ଗୋଟାଏ ଗଛ ଏଠାରେ କେମିତି ପହଞ୍ଚିଲା, ତାହା ଜାଣିବାକୁ ଇତିହାସ ପଢ଼ିବାକୁ ହେବ ନିଶ୍ଚିତ ବୋଲି ମୁଁ ମନେ କରୁଥିଲି । କିନ୍ତୁ କଥାକାର ତାଙ୍କର କାହାଣୀ ଆରମ୍ଭ କରିଲେ ।

ରୂପମତୀ ଓ ବାଜ୍‌ବାହାଦୁରଙ୍କ ପ୍ରେମ କାହାଣୀ ଆରମ୍ଭ ହେବା ଅନେକ ପୂର୍ବରୁ ମାଣ୍ଡୁଠାରେ ଏକାଦଶ ଶତାବ୍ଦୀରେ ଏକ ହିନ୍ଦୁ ସାମ୍ରାଜ୍ୟ ମହାରାଜ ଭୁଜଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିଲା । ସମୁଦ୍ର ପତନଠାରୁ ୬୩୪ ମିଟର ଉଚ୍ଚରେ ପ୍ରାୟ ୨୩ବର୍ଗ କି.ମି. ଅଞ୍ଚଳରେ ମାଣ୍ଡୁର ଅବସ୍ଥିତ । ଚାରିପାଖରେ ଗଭୀର ଖାଇ ଏହାକୁ ଅଗମ୍ୟ କରି ରଖିଥିଲା ।

୧୩୦୪ ମସିହାରେ ଏହା ଘୋରୀ ଏବଂ ଖିଲିଜ୍‌ମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ୧୪୦୮ ମସିହାରେ ଦିଲ୍ଲୀ ଦରବାରରେ ମୋଗଲମାନେ ଶାସନ ଆରମ୍ଭ କରିଲା ପରେ, ମାଲ୍ୱାର ଆଫଗାନ୍ ବୀର ଦିଲାୱାର ଖାନ୍ ମାଣ୍ଡୁକୁ ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ଘୋଷଣା କରିଥିଲେ । ୧୪୩୬ ମସିହାରେ ମାହମ୍ମୁଦ ସାହ ଖିଲ୍‌ଜି ଶାସନ ଗାଦି ଅଧିକାର କରି ପ୍ରାୟ ୩୦ବର୍ଷ କାଳ ଶାସନ କରିଥିଲେ । ଏଇ ସମୟରେ କଳା, ସଂସ୍କୃତି, ଗୀତ ଓ ନୃତ୍ୟର ବିଶେଷ ବିକାଶ ହୋଇଥିଲା ଓ ସବୁଧର୍ମର ଲୋକେ ଏଥିରେ ସାମିଲ ହୋଇଥିଲେ । ଖିଲିଜ୍ ବଂଶରେ କ୍ଷମତା ପାଇଁ ଗୋଟାଏ ପରେ ଗୋଟାଏ ମୃତ୍ୟୁ ଓ ହତ୍ୟା ଲାଗି ରହୁଥିଲା । ଏଇ ସୁଯୋଗରେ ୧୫୨୬ ମସିହାରେ ଗୁଜୁରାଟର ବାହାଦୁର ସାହା ମାଣ୍ଡୁ ଦଖଲ କରିଥିଲେ । ୧୫୩୪ ମସିହାରେ ମୋଗଲ ସମ୍ରାଟ ହୁମାୟୁନ ମାଣ୍ଡୁକୁ ବାହାଦୁର ସାହାଙ୍କ ଠାରୁ ଛଡାଇ ନେଇଥିଲେ । ଏହାପରେ ଇତିହାସ କିଛି ବର୍ଷ ପାଇଁ ଅସ୍ପଷ୍ଟ ହୋଇଛି । ୧୫୫୪ ମସିହାରେ ମାଲିକ୍ ବାୟାଜିଦ୍ ନାମକ ଜଣେ ସଙ୍ଗୀତଜ୍ଞ ମାଣ୍ଡୁର ଶାସନ ଗାଦିରେ ଅବସ୍ଥାନ କରିଥିଲେ ଓ ନିଜକୁ ବାଜ୍ ବାହାଦୁର ବୋଲି ନାମିତ କରିଥିଲେ । ସଂଗୀତ ଥିଲା ତାଙ୍କର ସବୁଠାରୁ ପ୍ରିୟ । ରୁପ୍‌ମତୀ ନାମରେ ଆଉ ଜଣେ ସୁନ୍ଦରୀ ନର୍ତ୍ତକୀଙ୍କ ସହ ତାଙ୍କର ପ୍ରେମ ଆରମ୍ଭ ହୋଇଥିଲା । ଉଭୟେ ସଙ୍ଗୀତ ଓ ନୃତ୍ୟର ପୂଜାରୀ ହିସାବରେ ପରସ୍ପର ଠାରୁ ଅଭିନ୍ନ ଥିଲେ । ଏ ସମୟରେ ଆକବର ମାଣ୍ଡୁ ଆକ୍ରମଣ କରିଥିଲେ ଓ ବାଜ୍ ବାହାଦୁର, ରୁପ୍‌ମତୀଙ୍କୁ ଛାଡି ପଳାୟନ କରିଥିଲେ । ଆକ୍‌ବର ରୁପ୍‌ମତୀଙ୍କ ପ୍ରତି ଆକର୍ଷିତ ହୋଇଥିଲେ । ୧୮୩୬ ମସିହାରେ ମାଣ୍ଡୁକୁ ମରାଠାମାନେ ମୋଗଲମାନଙ୍କ ହାତରୁ ଛଡାଇ ନେଇଥିଲେ । ମରାଠାମାନେ ମାଲ୍‌ୱାର ଶାସନ ମାଣ୍ଡୁରୁ ଧାରକୁ ଉଠାଇନେଲା ପରେ ମାଣ୍ଡୁର ବିଶାଳ ନଅର, ଘରଦ୍ୱାର ଆଦି ସବୁ ଜଙ୍ଗଲରେ ପରିଣତ ହୋଇ ଧ୍ୱଂସାବଶେଷ ଭାବେ ଶୋଭା ପାଇଲା । ବିଭିନ୍ନ ମହଲ ସବୁ ଦେଖିବାକୁ ଗୋଟାଏ ଦିନ ଲାଗିଥିଲା ଆମକୁ । ଜାହାଜ ମହଲ, ତାବେଲୀ ମହଲ, ରୁପମତୀ ମହଲ, ହିନ୍ଦୋଲା ମହଲ ଆଦି ଅନେକ ଦର୍ଶନୀୟ କଳା କୃତି ଗୋଟାଏ ସମୟରେ ଆଖିକୁ ଝଲସାଇ ଦେଉଥିବା କଳ୍ପନା କରି ହେଉଥିଲା । ସେଦିନ ସନ୍ଧ୍ୟାରେ ହୋଟେଲକୁ ଫେରିବା ବାଟରେ ଆଦିବାସୀମାନଙ୍କର ବିବାହ ନୃତ୍ୟରେ ଭାଗ ନେବାକୁ ପଡିଥିଲା । ପ୍ରେମ, ଆକର୍ଷଣ, ବିଚ୍ଛେଦ ଓ ମୃତ୍ୟୁର ଅସଲ ଅର୍ଥ ଖୋଜିବାକୁ ବେଶୀ ସମୟ ଲାଗି ନଥିଲା ।

ଥକି ଯାଇଥିବାରୁ 'ଖେମ୍‌ରାଜ' ଶୀଘ୍ର ରାତ୍ରିରେ ଶୋଇ ପଡିଲା ପରେ ବିଭିନ୍ନ ଯନ୍ତ୍ରଣାରେ ମୁଁ ଛଟପଟ ହେଲି । ମଣିଷ ଭଲ ପାଇବ ଓ ଭଲ ପାଇବାର ଅପୂର୍ବ ଉତ୍ତେଜନାକୁ ଅମର କରିବାର ପ୍ରୟାସ କରିବ । ଏହା ଏକ ସ୍ୱାଭାବିକ କି ଅସ୍ୱାଭାବିକ ପରିପ୍ରକାଶ ଯିଏ ପ୍ରେମରେ ପଡିଛି ସେ ହିଁ କେବଳ ଜାଣି ପାରିବ । ରୁପ୍‌ମତୀ ଓ ବାଜ୍ ବାହାଦୁରଙ୍କ ପ୍ରେମ ଅମର ଓ ଐତିହାସିକ ।

❑❑❑

୪୩

# ଜୀବନ ଓ ସମୁଦ୍ର

ପିଲାଦିନେ ଆଜିକୁ ପ୍ରାୟ ୫୦ ବର୍ଷତଳେ ପୁରୀ ଯାଇ ସମୁଦ୍ର ମୁଁ ଦେଖି ଆଶ୍ଚର୍ଯ୍ୟ ହୋଇଥିଲି । ସମୁଦ୍ରବେଳାରେ କେତେ ସମୟ ଧରି ପଦଚାରଣା କରିଥିଲି । ସମୁଦ୍ର ବାଲିର ଘର କରିଥିବା କଙ୍କଡ଼ାମାନଙ୍କୁ ଧରିବାକୁ ଅନେକ ଚେଷ୍ଟା କରିଥିଲି । ଝାଉଁ ଗଛର ଅରଣ୍ୟ ଅନତି ଦୂରରେ । ଘେରାବାଲି କଥା ମନରେ ଅନେକ ଭୟ ସୃଷ୍ଟି କରିଥିଲା ବୋଲି ମୁଁ ସେ ଭିତରକୁ ପଶି ନଥିଲି । ସମୁଦ୍ର କୂଳରେ ନୋଳିଆମାନେ ସୂର୍ଯ୍ୟୋଦୟ ପୂର୍ବରୁ ମାଛ ଧରା ଡଙ୍ଗାକୁ ନେଇ ଲହଡ଼ିମାନଙ୍କ ସହ ଲଢ଼ିବାର ଦୃଶ୍ୟ ଦେଖିଥିଲି । ସମୁଦ୍ର ଯାତ୍ରୀମାନଙ୍କର ବିଭିନ୍ନ ଅନୁଭୂତିକୁ ନେଇ କାହାଣୀ ଓ କିମ୍ବଦନ୍ତୀ ସବୁ ପଢ଼ିବା ପୂର୍ବରୁ ସମୁଦ୍ର ଯେ ମଣିଷମାନଙ୍କ ପାଇଁ ଏକ ଚମତ୍କାର ଆହ୍ୱାନ ତାହା ମୁଁ ଅନୁଭବ କରିଥିଲି । କଲେଜରେ ପଢ଼ିଲାବେଳେ ଆମେ ଦଳେ ବନ୍ଧୁ ସମୁଦ୍ରକୁ ଅନୁଭବ କରିବା ପାଇଁ ୧୯୭୦ ମସିହାରେ ପହଞ୍ଚିଥିଲୁ କୋଣାର୍କରେ । ସେତେବେଳେ 'ମେରାଇନ୍ ଡ୍ରାଇଭ' କାମ ଆରମ୍ଭ ହେଉଥାଏ । ଜଣେ ଇଞ୍ଜିନିୟରଙ୍କ ସହ ସାକ୍ଷାତ ହେଲା । ଆମେ ସବୁ କହିଲୁ ଯେ ସମୁଦ୍ର କୂଳରେ ଆମେ ଶୋଇବୁ ରାତି ସାରା । ଅନାଇବୁ ଆକାଶକୁ । ଢ଼େଉମାନଙ୍କର ଗର୍ଜନ ଶୁଣିବୁ । ସମୁଦ୍ରକୁ ଆପଣାର କରିବୁ । ଇଞ୍ଜିନିୟର ଜଣକ ଆମ କଥାରେ ଆଶ୍ଚର୍ଯ୍ୟ ହେଲେ ସତ ଆମର ଉନ୍ମାଦନା ଓ ଉତ୍ତେଜନାକୁ ବୁଝିବାକୁ ଚେଷ୍ଟା କରିଥିଲେ । ରାତ୍ରି ଭୋଜନର ଆୟୋଜନ କରିଦେଲେ । ସମୁଦ୍ର କୂଳରେ ଲାଗି କାର୍ଯ୍ୟରତ ଶ୍ରମିକମାନଙ୍କର କ୍ୟାମ୍ପ୍ । ସମୁଦ୍ରର ସଜମାଛ ଶସ୍ତାରେ ମିଳିଗଲା । ରୋଷେଇ ପାଇଁ ବାସନକୁସନ ଆସିଗଲା । ରୋଷେୟା ମଧ୍ୟ ବାହାରି ପଡିଲେ । ଆମେ ସବୁ ପ୍ରସ୍ତୁତ ହେଲୁ ସମୁଦ୍ର କୂଳରେ ଶୋଇବାକୁ । କେତେ କଥା ମନକୁ ଆସୁଥାଏ । ଜୀବନ, ଯୌବନ ଓ ସ୍ୱାଧୀନତାକୁ ମାନ୍ୟତା ଦେଇ ଆମେ ସବୁ ନିଜ ସ୍ଥିତିକୁ ନିରୀକ୍ଷଣ କରିବାକୁ ଚାହୁଁଥିଲୁ । ସମୁଦ୍ରର ଢ଼େଉ ମାତି ଆସୁଛି । ଶୀତଳ ପବନ ବୋହୁଛି । କୃଷ୍ଣପକ୍ଷର ଜହ୍ନ ଫିକା ଦେଖାଯାଉଛି ଓ ସମୁଦ୍ରର ଚିତ୍ର ଝାପ୍‌ସା କରିଦେଇଛି । ଆମେ ସକାଳୁ ଉଠି ଚନ୍ଦ୍ରଭାଗା ନଦୀରେ ଗାଧୋଇବା କଥା । ରାତ୍ରି ଶେଷରେ ପ୍ରଥମ ଆଲୋକରେ ଆମେ ଉଠି ପଡିଲୁ ଓ ଦେଖିଲୁ ଯେ ଲହଡିମାନ ମାଡିଆସି ଆମ ପାଦକୁ ପ୍ରାୟ ସ୍ପର୍ଶ କରିଛି । ସବୁ ଖାଲି ଓଦା ଓଦା । ଦେହରେ ଅନେକ ଅଳସ । ଆମେ କିନ୍ତୁ ଏକ ଚମତ୍କାର ଅନୁଭୂତିରେ ବୁଡି ଯାଉଥିଲୁ । ଯଦି ମୋତେ କିଏ ପଚାରେ ଯେ ମୋ ଜୀବନର କେଉଁ ମୁହୂର୍ତ୍ତରେ ମୁଁ

କଳ୍ପନାତୀତ ଭାବେ ଆତ୍ମବିଭୋର ହୋଇଛି, ସେଇ ମୁହୂର୍ତ୍ତ ଗୁଡ଼ିକ ନିଶ୍ଚୟ ତାଲିକାଭୁକ୍ତ ହେବେ । ସତରେ ମଣିଷ ସର୍ବଦା ଅନ୍ୱେଷଣ କରୁଥିବା ଚିନ୍ତା ଓ ଚେତନା ଗୁଡ଼ିକ କ'ଣ ? ଏଗୁଡ଼ିକ ଜୀବନ, ମୁକ୍ତି ଓ ସ୍ୱାଧୀନତା ଏବଂ ଆନନ୍ଦ ନୁହେଁ ତ ଆଉ କ'ଣ ? ଚନ୍ଦ୍ରଭାଗା ମୁହାଣରେ ଆମେ ବୁଡ ପକାଉ ଥିଲାବେଳେ ଏଇ କଥା ହିଁ ମୁଁ ଆମ ବନ୍ଧୁମାନଙ୍କ ସହ ନଶ୍ଚିତ ଭାବେ ଅନୁଭବ କରିଥିଲି ସେଦିନ ।

ଆମେ ଯେଉଁମାନେ ବିଜ୍ଞାନ ଅନର୍ସ ନେଇଥିଲୁ, ଆମର ବିକଳ୍ପ ଇଂରାଜୀ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥାଏ । ଏଥିରେ ବିଖ୍ୟାତ ଆମେରିକୀୟ ଔପନ୍ୟାସିକ ହେମିଙ୍ଗୱେ(Hemingway)ଙ୍କ ଅନ୍ୟତମ ସର୍ବଶ୍ରେଷ୍ଠ ବହି 'The Oldman And the Sea' ଟି ପଢ଼ିବାକୁ ସୁଯୋଗ ମିଳିଥିଲା । ଏ ବହିଟି ମୁଁ କେତଥର ପଢିଥିବି ତାହାର କଳ୍ପନା ନାହିଁ । ଅନେକ ଲାଇନ୍ ମୁଁ ଅନେକ ସମୟରେ ଉଦ୍ଧାର କରୁଥିଲି କଥା କଥାକେ । '........but man is not made for defeat. A man can be destoryed and not defeated.' ଉକ୍ତିଟି ଆମ ସମସ୍ତଙ୍କ ପାଇଁ ନିରନ୍ତର ପ୍ରେରଣାର ଉତ୍ସ ଥିଲା । ଆଜି ମଧ ସୁଯୋଗ ମିଳିଲେ ଏ ଛୋଟ ବହିଟି ମୁଁ ପଢ଼ିବାକୁ ଋହେଁଛି ଓ ମଣିଷର ଲଢ଼ିବାର ଅଦମ୍ୟ ଶକ୍ତିକୁ କଳ୍ପନା କରିବାକୁ ଋହେଁଛି ।

"The Oldman And the Sea" ବହିଟି ହେମିଙ୍ଗ୍‌ୱେଙ୍କର ଅନ୍ୟତମ ଶ୍ରେଷ୍ଠ କୃତି । ତାଙ୍କୁ ସାହିତ୍ୟ ପାଇଁ ନୋବେଲ୍ ପ୍ରାଇଜ୍ ମିଳିବା ପଛରେ ଏ ଛୋଟ ବହିଟିର ଅନେକ ଭୂମିକା ଥିଲା ବୋଲି ସ୍ୱୀକାର କରାଯାଇଛି । ବହିଟିରେ ସାଣ୍ଟିଆଗୋ ନାମକ ଏକ ମତ୍ସ୍ୟଜୀବୀ ସହ ଅତିକାୟ ମାର୍ଲିନ୍ ମାଛର ସଂଘର୍ଷକୁ ଅତି ଜୀବନ୍ତ ଭାବେ ବର୍ଣ୍ଣନା କରାଯାଇଛି । ୮୪ଦିନ ଧରି ସାଣ୍ଟିଆଗୋ ସମୁଦ୍ରକୁ ମାଛ ଧରିବାକୁ ଯାଇ ନିରାଶ ହୋଇ ଫେରିବାକୁ ପଡିଥିଲା । ଅବଶ୍ୟ ଏହା ପୂର୍ବରୁ ସେ ଏକଦା ୮୭ ଦିନ ଧରି କିଛି ହେଲେ ମାଛ ଧରି ନଥିଲା । ତାର ବିଶ୍ୱାସ ଥିଲା ଯେ ଏଥର ୮୫ ଦିନରେ ସେ ନିଶ୍ଚୟ ଏକ ବଡ଼ ମାଛ ଧରିବ ଓ ପୂର୍ବତନ ରେକର୍ଡ଼ର ପୁନରାବୃତ୍ତି ହେବାକୁ ଦେବ ନାହିଁ । ସତକୁ ସତ ୮୫ ଦିନରେ ସେ ମାର୍ଲିନ୍(Marlin) ମାଛକୁ ଧରିଲା । ମାଛଟି ଅତିକାୟ ଥିଲା ଓ ଦୁଇଦିନ ଦୁଇରାତି ଧରି ସାଣ୍ଟିଆଗୋ ଓ ମାର୍ଲିନ୍ ଭିତରେ ଭୀଷଣ ସଂଘର୍ଷ ହୋଇଥିଲା । କେତେବେଳେ ସାଣ୍ଟିଆଗୋ ମାଛକୁ ଟାଣୁ ଥିଲା ତ କେତେବେଳେ ମାଛ ସାଣ୍ଟିଆଗୋକୁ ଟାଣୁଥିଲା । ଜାଲକୁ ମଜ୍‌ଭୁତ କରିଧରିବା ହେତୁ ତା'ର ହାତ ପାପୁଲି ସବୁ କଟି ଯାଇଥିଲା । ସାଣ୍ଟିଆଗୋ ଥକି ଯାଇଥିଲା ଏଇ ସଂଘର୍ଷରେ । ମାର୍ଲିନ୍ ମାଛ ସହ ସେ କଥାବାର୍ତ୍ତା ପ୍ରାୟ ଆରମ୍ଭ କରିଥିଲା । ଅବଶେଷରେ ମାର୍ଲିନ୍ ମଧ ଥକି ଯାଇଥିଲା ଓ ମାଛ ଡଙ୍ଗା ଋରିପାଖେ ପହଁରିଥିଲା । ଏଇ ସମୟରେ ସାଣ୍ଟିଆଗୋ ତାକୁ ହାର୍‌ପୁନ୍ ମାରି ଶେଷ କରିଥିଲା ଓ ଡଙ୍ଗା ଉପରକୁ ଆଣିବାକୁ ଋହିଁଥିଲା । ମାଛଟି ଅତିକାୟ ହୋଇଥିବାରୁ, ସେ ନିଷ୍ପତ୍ତି ନେଲା ଯେ ମାଛଟିକୁ ଡଙ୍ଗା ପଛରେ ଟାଣି ଟାଣି କୂଳକୁ ନେବ । କିନ୍ତୁ ମାଛର ରକ୍ତରେ ଆକର୍ଷିତ ହୋଇଥିଲେ ସାର୍କ ମାଛମାନେ । ପୁଳାକୁ ପୁଳା ମାଛ ସେମାନେ

ଖାଇବାରେ ଲାଗିଲେ । ସାଣ୍ଟିଆଗୋ କେତୋଟି ସାର୍କ ମାରିଲା ସତ, ଅବଶେଷରେ ମାର୍ଲିନ୍ ମାଛର କଣ୍ଟା କେବଳ ଅବଶିଷ୍ଟାଂଶ ହିସାବରେ ରହିଲା । ସାଣ୍ଟିଆଗୋ କୂଳରେ ପହଞ୍ଚିଲା ବେଳକୁ ଏଇଆ କେବଳ ଦେଖିଲା । ସେ ଥକି ଯାଇଥିଲା ସତ ନିରାଶ ହୋଇନଥିଲା । ସେ ଆହତ ହୋଇଥିଲା ସତ ଆତ୍ମବିଶ୍ୱାସ ହରାଇନଥିଲା । ସେ ତା'ର କୁଡିଆକୁ ଫେରିଗଲା ଓ ଗଭୀର ନିଦ୍ରାରେ ଶୋଇ ଆଫ୍ରିକାର ସିଂହମାନଙ୍କୁ ସ୍ୱପ୍ନରେ ଦେଖୁଥିଲା । ଏତେବଡ଼ ମାଛର କଣ୍ଟା ଦେଖି ଅନ୍ୟ ମସଜୀବୀମାନେ ଆହା ଆହା ଚୁ ଚୁ କରୁଥିଲେ ଓ ଅଠର ଫୁଟର ଲମ୍ବା ମାଛଟି କୌଣସି କାମରେ ଆସିବ ନାହିଁ ଓ ମୂଲ୍ୟହୀନ ବୋଲି କୁହାକୁହି ହେଉଥିଲେ । କିନ୍ତୁ ସାଣ୍ଟିଆଗୋ ସ୍ୱପ୍ନରେ ମସ୍‌ଗୁଲ ହୋଇ ଯାଇଥିଲା । ଚମତ୍କାର ଥିଲା ଶେଷ ବାକ୍ୟ ଗୁଡିକ । ଆମର ଯେଉଁ ବନ୍ଧୁମାନେ ଇଂରାଜୀ ସାହିତ୍ୟର ଛାତ୍ର ଥିଲେ ବହିଟି ପଢ଼ିସାରି ତୁଳନା କରିବସିଥିଲେ । କିଏ କହୁଥିଲା ଯେ ଏ ବହିଟି ଉଇଲିୟମ ଫକ୍‌ନର(William Faukner)ଙ୍କ "The Bear" ଏବଂ ହରମାନ୍ ମେଲଭିଲ୍ (Herman Melville)ଙ୍କ ମବି ଡିକ୍ (Mobe Dick) ସହ ତୁଳନୀୟ । କିଏ କହୁଥିଲା ଯେ ମଣିଷର ପ୍ରକୃତି ସହ କେଉଁ ଆଦିମ ଯୁଗରୁ ଯେଉଁ ପ୍ରଚଣ୍ଡ ସଂଘର୍ଷ ଲାଗି ରହିଛି ତାହାର ଏହା ଏକ ଉଦାହରଣ । ଆଉ କେହି କେହି ସମାଲୋଚକ କହୁଥିଲେ ଯେ ସାଣ୍ଟିଆଗୋ ଠିକ୍ ଯୀଶୁଖ୍ରୀଷ୍ଟଙ୍କ ଭଳି । ସମୁଦ୍ର, ଡଙ୍ଗା, ଜାଲ, ମାଛ ଓ ସମସ୍ତଙ୍କୁ ନେଇ ଏକ ବାର୍ତ୍ତାଳାପ କଲାବେଳେ ଭିନ୍ନ ଭିନ୍ନ ଅର୍ଥ ଅବଶ୍ୟ ଉତ୍‌ପନ୍ନ ହୋଇଥାଏ । କିନ୍ତୁ ସମାଲୋଚକଙ୍କ ତାତ୍ତ୍ୱିକ ଆଲୋଚନାର ଉର୍ଦ୍ଧ୍ୱରେ ମୁଁ ଏ ବହିଟିକୁ ପଢ଼ିଛି ଓ ବୁଝିବାକୁ ଚେଷ୍ଟା କରିଛି । ସମୁଦ୍ରର ବିଶାଳତା ଓ ମହାନତାକୁ ଦେଖିଲେ ମଣିଷ କିଛି ନୁହେଁ । କିନ୍ତୁ ମଣିଷ ସବୁବେଳେ ଚେଷ୍ଟା କରିଛି ସମୁଦ୍ରକୁ ଜୟ କରିବ ବୋଲି । ଏଇଥିପାଇଁ ଦୁଃସାହସିକ ନାବିକମାନଙ୍କର ସଂଘର୍ଷମୟ ଜୀବନ ଆଜି ସମସ୍ତଙ୍କ ପାଇଁ ଉଦାହରଣ ହୋଇଯାଇଛି । ମୁଁ ଯେତେଥର ସମୁଦ୍ର ଯାତ୍ରା କରିଛି ବା ସମୁଦ୍ରକୂଳରେ ନିଜର ଜୀବନଯନ୍ତ୍ରଣାକୁ ଅନ୍ତରଙ୍ଗତାର ସହ ବୁଝିବାକୁ ଚେଷ୍ଟା କରିଛି, ସେତେଥର ସାଣ୍ଟିଆଗୋ ଭଳି ନିଜକୁ ଆଶାର ସ୍ୱପ୍ନ ଭିତରେ ଆବିଷ୍କାର କରିଛି । ମୁଁ ସ୍ୱୀକାର କରିବି ଯେ ମୋର ଜୀବନ ଯେତେବେଳେ ଘୋର ନୈରାଶ୍ୟ ଭିତରେ ବୁଡି ଯାଇଥିଲା ଓ ବଞ୍ଚିବାର ରାସ୍ତା ମିଳୁ ନଥିଲା, 'ଦି ଓଲଡ୍‌ମ୍ୟାନ୍ ଆଣ୍ଡ ଦି ସି' ବହିଟି ଯେମିତି ଆଶାର ଆଲୋକରେ ମୋତେ ଆଲୋକିତ କରିଥିଲା । 'ସାଣ୍ଟିଆଗୋ' ସହ ଯେମିତି ଆମ ସମସ୍ତଙ୍କର ଗୋଟାଏ ପ୍ରକାରର ସାମ୍ୟତା ରହିଛି । ଆମେ ଦେଖିଛେ ଯେ ଜୀବନର ଅନେକ ପ୍ରୟାସ ଓ ସ୍ୱପ୍ନ ସାକାର ହେବା ପରିବର୍ତ୍ତେ ପାଣି ଫୋଟକା ଭଳି ମିଳାଇ ଯାଇଛି, ଯେମିତି ସାଣ୍ଟିଆଗୋର ମାଛଟିକୁ ସାର୍କମାନେ ଖାଇଯାଇଛନ୍ତି । କିନ୍ତୁ ଏଥିରେ ଆମେ ସମସ୍ତେ ଭାଙ୍ଗ ପଡିନାହିଁ ବା ନିଜକୁ ଧ୍ୱଂସ କରିନାହିଁ । ଆମେ ଏଥିରେ ପୁନର୍ବାର ନିଜକୁ ଉଦ୍‌ଜୀବିତ କରିଛୁ ଓ ଲଢ଼ିବାକୁ ଆଉଥରେ ଅଣ୍ଟା ଭିଡିଛୁ । ଏକଥା ସତ୍ୟ ଯେ ପ୍ରତ୍ୟେକ ମୁହୂର୍ତ୍ତରେ ମଣିଷ ପାଇଁ ଦୁଇଟି ରାସ୍ତା ଉନ୍ମୁକ୍ତ ହୋଇଥାଏ । ଗୋଟିଏ ହେଉଛି ପରାଜୟର ଓ ଅନ୍ୟଟି ହେଉଛି

ସହନଶୀଳତାରେ ଭରିଯାଇ ଥିବା ଅନେକ ଆଶା । କେଉଁ ରାସ୍ତାରେ ମଣିଷ ଆଗେଇବ ? ପ୍ରଶ୍ନର ଆମକୁ ସାଣ୍ଟିଆଗୋ ଭଳି ଉତ୍ତର ଦେବାକୁ ହେବ । ସାଣ୍ଟିଆଗୋ ଦେଖାଇ ଦେଇଛି ଯେ ତିନିଥର ମାର୍ଲିନ୍ ମାଛ ସହ ଲଢ଼େଇରେ ତା'ର ହାତ ପାପୁଲି ରକ୍ତାକ୍ତ ହୋଇଛି । ଶରୀର ତା'ର ଯନ୍ତ୍ରଣାରେ ଭରିଯାଇଛି, ମାନସିକତାରେ ତା'ର ଝଡ ସୃଷ୍ଟି ହୋଇଛି । କିଏ ଜିତିବ ? ସାଣ୍ଟିଆଗୋ ନା ମାର୍ଲିନ୍ ମାଛ ? କିଏ କାହାକୁ ମାରିବ ? ମାଛଟି ଅସଲ ଶତ୍ରୁ ଏ ଲଢ଼େଇରେ । ଅବଶେଷରେ ସାଣ୍ଟିଆଗୋ ଜୟଲାଭ କରିଛି । ମାଛଟିକୁ ସାର୍କ ଖାଇଗଲା ପରେ ବି ସେ ଜିତିଛି । ଜୀବନ ଯୁଦ୍ଧରେ ସେ ଜିତିଯାଇ ପ୍ରମାଣ କରିଛି ଯେ ଶାରୀରିକ ଓ ମାନସିକ ଯନ୍ତ୍ରଣାର ସୀମା ସେପଟେ ଏକ ଆଧ୍ୟାତ୍ମିକ ବିଜୟର ଆତ୍ମତୃପ୍ତି ରହିଛି । ସାଣ୍ଟିଆଗୋ ଏଇଥିଇଁ ଆଫ୍ରିକାର ସ୍ୱର୍ଣ୍ଣାଭ ବେଳାଭୂମି ଓ ସିଂହମାନଙ୍କର ସ୍ୱପ୍ନରେ ନିଜକୁ ହଜାଇ ଦେଇଛି ।

ହେମିଙ୍ଗୱେ କ୍ୟୁବାରେ ୧୯୫୧ ମସିହାରେ ସେ ଏ ବହିଟି ଲେଖିଥିଲେ । ଗଭୀର ସମୁଦ୍ରକୁ ମାଛ ଧରିବାକୁ ଯାଉଥିଲେ । ନିଜର ଦୁଃସାହସିକତା ସେ ବାରମ୍ବାର ପ୍ରଦର୍ଶନ କରି ଗୋଟାଏ ଆନନ୍ଦ ପାଉଥିଲେ । ମୁଁ ମଧ୍ୟ ଅନୁଭବ କରିଛି ଯେ ଏଇଭଳି ବଞ୍ଚିବାର ଆନନ୍ଦ ଅଛି । ସମୁଦ୍ର କୂଳରେ ବସବାସ କରୁଥିବା ନୋଳିଆମାନଙ୍କର ଜୀବନ ଠିକ୍ ଏଇଭଳି । ଗଭୀର ସମୁଦ୍ରକୁ ଯାଇ ମାଛ ଧରିବାରେ ଅବଶ୍ୟ ଜୀବନ ଜୀବିକାର ଅର୍ଥ ଭରି ରହିଛି । କିନ୍ତୁ ସବୁବେଳେ ଭରି ରହିଛି ଏକ ଚମତ୍କାର ଆଶା । ମୁଁ ଦେଖିଛି ଯେ ଢେଉମାନଙ୍କର ପ୍ରଚଣ୍ଡ ପ୍ରତିରୋଧ ସତ୍ତ୍ୱେ ନୋଳିଆ ଭାଇମାନେ ଡଙ୍ଗାମାନଙ୍କୁ ଗଭୀର ସମୁଦ୍ରକୁ ନିଅନ୍ତି । ପ୍ରତିଥର ବିରାଟ ଢ଼େଉ ତାଙ୍କୁ କୂଳକୁ ଠେଲୁଥାଏ ଓ ତାହାକୁ ସେ ଖାତିର କରନ୍ତି ନାହିଁ । ଅବଶେଷରେ ନୋଳିଆର ବିଜୟ ହୁଏ । ସେ ଢ଼େଉମାନଙ୍କୁ କାଟି ଗଭୀର ସମୁଦ୍ର ଆଡକୁ ମୁହାଁଇଥାଏ ଓ ଦୂର ଦିଗବଳୟରେ ମିଶିଯାଏ । ମୁଁ ଦେଖିଛି ଯେ ଯେତେବେଳେ ନୋଳିଆ ମାଛ ମାରିବା ଶେଷ କରି ଫେରେ, ଅନେକ ସମୟରେ ଖାଲି ହାତରେ ଆସିଥାଏ । ପ୍ରଚଣ୍ଡ ପରିଶ୍ରମ ସତ୍ତ୍ୱେ ତାହାର ଜାଲରେ କଙ୍କଡାଟିଏ ବି ପଡେ ନାହିଁ । ବେଳେବେଳେ ଅବଶ୍ୟ ଏତେ ମାଛ ଧରା ପଡନ୍ତି ଯେ ସବୁକିଛି କୂଳକୁ ଆଣିବା କଷ୍ଟକର ହୋଇପଡେ । ଆଶା ଓ ନିରାଶାର ଚକ୍ର ଏଇଭଳି ଲାଗି ରହିଥାଏ । ସମୁଦ୍ର ସହ ଓତଃପ୍ରୋତ ଭାବେ ସଂଶ୍ଲିଷ୍ଟ ହୋଇଥିବା ପ୍ରତ୍ୟେକ ନୋଳିଆଙ୍କ ସହ ମୁଁ ବାର୍ତ୍ତାଳାପ କରିବାକୁ ଚେଷ୍ଟା କରିଥାଏ । ସମୁଦ୍ରର ବେଳାଭୂମିରେ ଅନେକ ପ୍ରକାରର ଲୋକ ଅବଶ୍ୟ ଦେଖିବାକୁ ମିଳେ । ସମୁଦ୍ର କୂଳରେ ଜନବସତିର ଆଚାର ବ୍ୟବହାରରେ ଥାଏ ଗୋଟାଏ ପ୍ରକାରର ସ୍ୱତନ୍ତ୍ରତା । ସମୁଦ୍ର ସମସ୍ତଙ୍କର ଜୀବନକୁ ପ୍ରଭାବିତ କରିଥାଏ । ବନ୍ଦର ହେଉ କି ମନ୍ଦିର ହେଇ, ନାବିକ ହେଉ ବା ଗଣିକା ହେଉ, ବଣିକ ହେଉ ବା ତୀର୍ଥଯାତ୍ରୀ ହେଉ, ସମୁଦ୍ର ସମସ୍ତଙ୍କୁ ଆକର୍ଷିତ କରେ ଓ ସମସ୍ତଙ୍କର ଜୀବନକୁ ଗଢ଼େ ଓ ଭାଙ୍ଗେ । ମୁଁ ଜାଣେ ଲେଖି ବସିଲେ ଏସବୁକଥା ସବୁ ଚମତ୍କାର ଉପନ୍ୟାସର ବିଷୟବସ୍ତୁ ହୋଇଯିବ । ମୁଁ କିନ୍ତୁ ସମୁଦ୍ର ପାଖକୁ ଆସିଥାଏ ଏକ ଭିନ୍ନ ଉଦ୍ଦେଶ୍ୟରେ । ଅଶାନ୍ତ ଓ

ବିଶୃଙ୍ଖଳିତ ପୌରୁଷ ଅଭନକ ରହିଁଥାଏ ଶାନ୍ତ ହୋଇଥିବାକୁ ଓ ମହାନ୍ ସଙ୍ଗୀତଜ୍ଞ ବିଥୋଭେନ୍ (Beethoven)ଙ୍କ ପାଷ୍ଟୋରାଲ୍ (Pastoral) ସିମ୍ଫୋନୀ ଭଳି । ଲହଡିଟି ଆସୁଛି ଧୀର ମନ୍ଥର ଗତିରେ । କୂଳରେ ବାଡେଇ ହେଉଛି ଓ ପୁଣି ପଛକୁ ଫେରି ଯାଉଛି ଆଉଥରେ ଆସିବା ପାଇଁ । ଜୁଆର ଓ ଭଟ୍ଟା ଠିକ୍ ଆଶା ଓ ନିରାଶା ଭଳି । ଏକ ନିର୍ଦ୍ଦିଷ୍ଟ ଢ଼ଙ୍ଗରେ ଆସୁଥିବେ, ଯାଉଥିବେ ଓ ଆମକୁ ବଞ୍ଚିବାର ମହନୀୟତାରେ ପରିପୂର୍ଣ୍ଣ କରୁଥିବେ ।

❑ ❑ ❑

## ୪୪

# ସମୁଦ୍ର, ନିର୍ବାସନ ଓ କବିତା

ଜଣେ ବନ୍ଧୁ ଏକଦା ଗୋଟିଏ ଜଟିଳ ପ୍ରଶ୍ନ ପଚାରି ମୋତେ ଅବାକ କରି ଦେଇଥିଲେ । ମୁଁ କାହିଁକି ସମୁଦ୍ରକୁ ଏତେ ଭଲପାଏ ? ମୁଁ ତ କବି ବା ଚିତ୍ରକର ନୁହେଁ । ମୁଁ ବି ଜଣେ ସମୁଦ୍ରଯାତ୍ରୀ ନୁହେଁ ବା ନାବିକ ନୁହେଁ । ମୁଁ ଜଣେ ଭୂଗୋଳବିତ୍ ବା ଆବିଷ୍କାରକ ନୁହେଁ । ତଥାପି ସମୁଦ୍ର କାହିଁକି ଏତେ ଆପଣାର ଲାଗେ ? ମୁଁ କିବା ଉତ୍ତର ଦେବି ଏ ପ୍ରଶ୍ନର ? ମୁଁ କହିବାକୁ ଦ୍ୱିଧା ପ୍ରକାଶକରେ ଯେ ଗୋଟାଏ ବର୍ଷଧରି ମୁଁ ସମୁଦ୍ରକୁ ଅତି ନିକଟରୁ ଦେଖିଛି । ପ୍ରତି ମୁହୂର୍ତ୍ତରେ ଅବାରିତ ଭାବେ ସୃଷ୍ଟି ଓ ବିଲୟର ଝଲକ ଦେଇ ଥିବା ସମୁଦ୍ର କେତେ ଯେ ଆପଣାର ତାହା ମୁଁ ବିଭିନ୍ନ ସମୁଦ୍ର ଓ ମହାସମୁଦ୍ରର କୂଳରେ କିଛି ସମୟ ଅତିବାହିତ କରି ଅନୁଭବ କରିଛି । ଅନୁଭବ କରିଛି ଉର୍ମିମାଳା, ଜଳ ଓ ବାଲୁକାମାନଙ୍କର ଅଦ୍ଭୁତ ମିଳନକୁ । ଉପରେ ଅନନ୍ତ ନୀଳ ଆକାଶ ଓ ତା'ଭିତରେ ଡେଣା ଉଡାଇ ଉଡୁଥିବା ସି'ଗଲ୍ । ତଳେ ଅଙ୍କାବଙ୍କା ବେଳାଭୂମି । ଯେଉଁଠି ଜନ କୋଳାହଳ ନାହିଁ ଓ ଘୋର ନିର୍ଜନତା ବ୍ୟାପୀ ଯାଇଛି, ସେଇଠି ଦଣ୍ଡକ ପାଇଁ ବସି ପଡିଲେ ଜଣେ ନିର୍ବାସିତର ବିଳାପ ଶୁଣିପାରିବ ଅଥବା "ଜୋନାଥନ୍ ଲିଭିଙ୍ଗଷ୍ଟୋନ୍ ସି'ଗଲ" ଭଳି ଉର୍ଦ୍ଧ୍ୱମୁଖୀ ହେବ । ଦୂରରୁ ସୂର୍ଯ୍ୟୋଦୟର କିରଣରେ ଉଦ୍‌ଭାସିତ ହେବ ବା ସୂର୍ଯ୍ୟାସ୍ତର ଆଲୋକ ସହ ଅସ୍ତମିତ ହୋଇଯିବ । ମୁଁ ଗୋଟାଏ ବର୍ଷ ଏଇଭଳି ଆଶା ଓ ନିରାଶାର ଏକ ସଂଘର୍ଷ ଭିତରେ ପଡି ଯାଇଥିଲି । ମୁଁ ଆତ୍ମଗୋପନ କରିବାକୁ ଚାହୁଁଥିଲି ଜୀବନ ଓ ଯୌବନର ଯୁଦ୍ଧରେ ପରାସ୍ତ ସୈନିକର ଗ୍ଲାନିରେ ମର୍ମାହତ ହୋଇ । ଜଣେ ଯଦି ବୌଦ୍ଧିକ ସ୍ତରରେ ମତିଭ୍ରମ ହୋଇଯିବ ଅଥବା ଆବେଗ ସ୍ତରରେ ଆଲୋଡିତ ହୋଇ ମରୀଚିକାକୁ ଭଲ ପାଇବ, ତା'ହେଲେ ତା'ପାଇଁ ରାସ୍ତା କ'ଣ ? ସେ ଜୀବନକୁ ଶେଷ କରିବାକୁ ଚାହିଁବ କିନ୍ତୁ ଏଥିପାଇଁ ସାହସ ସଞ୍ଚୟ କରିପାରିବ ନାହିଁ । ସେ ଆଧାତ୍ମିକତାର ପାଦଦେଶରେ ଛିଡା ହୋଇ ସାହାରା ଖୋଜିବ କିନ୍ତୁ ତାହା ପାଇବ ନାହିଁ । ସେ ବ୍ୟଥାତୁର ପ୍ରେମିକ ଭଳି କବିତା ଲେଖିବାକୁ ଚାହିଁବ କିନ୍ତୁ ଭାଷା ପାଇବ ନାହିଁ । ସେ ଏ ପୃଥିବୀର ଅଗଣିତ ଜନସମୁଦ୍ର ଭିତରେ ହଜି ଯିବାକୁ ଚାହିଁବ କିନ୍ତୁ ଏକାନ୍ତ ନିଜସ୍ୱତାକୁ ସମ୍ଭବ କରାଇବାକୁ ଦେବ ନାହିଁ । ଏଇଥିପାଇଁ ଏଇ ମଣିଷଙ୍କ ପାଇଁ ଏକମାତ୍ର ରାସ୍ତା

ହେଉଛି ଆତ୍ମଗୋପନ କରିବା ଅଥବା ନିଜ ପୃଥିବୀରୁ ନିଜକୁ ନିର୍ବାସିତ କରିବା । ଏଇ ସମୟମାନଙ୍କରେ ସମୁଦ୍ର ହେଉଛି ଏକମାତ୍ର ସାହା ଭରସା, ଯେଉଁଠି ନିଜକୁ ପୁନଃଆବିଷ୍କାର କରିହେବ ଏକ ନୂତନ ଢ଼ଙ୍ଗରେ ଓ ବଞ୍ଚିବାର ପ୍ରେରଣା ମିଳିଯିବ । ଏଇଆ ସମ୍ଭବତଃ ମୋ ଭଳି ଅନେକଙ୍କ ଜୀବନରେ ଘଟିଥିବ ନିଶ୍ଚିତ । ସମୁଦ୍ରକୁ ଯିବା ବାଟରେ କେଉଁ ହତଭାଗ୍ୟଟିଏ ରାସ୍ତା କଡର ନର୍ଦ୍ଦମା ପାଖରେ ପଡିଥିବ । ଗୋଦର ଗୋଡ଼ ଓ ସେଥିରେ ଘାଆ ହୋଇ ପୋକ ସାଲୁବାଲୁ ହେଉଥିବ । ତାହାର ମାଆ ଆସୁଥିବ ଓ ଖାଇବା ପାଖରେ ଥୋଇଦେଇ କହୁଥିବ ଯେ କେଉଁ ଜୀବନରେ କି ପାପ ସେ କରିଥିଲା ଯେ ଏଇ ଦଶା ଭୋଗିବାକୁ ପଡୁଛି ତାହାକୁ । ବଞ୍ଚିବାର ତୀବ୍ର ଇଛା କାହାର ନାହିଁ ? ମୁଁ ନିଜକୁ ବାରମ୍ବାର ପଋରିଥାଏ । ସମୁଦ୍ର ଯିବା ରାସ୍ତାରେ ଭେଟ ହୋଇ ଯାଏ ଜଣେ ସ୍କୁଲ ଛାତ୍ରୀ ସହ । ମୁହଁରେ ସଲ୍ଲଜ ହସ । ଶରୀରରେ ଫାଜଲାମୀର ଆଭାସ । ସିଏ ଯେମିତି ସମୁଦ୍ର ଯିବା ରାସ୍ତାରୁ ପଥହୁଡି ଯିବାକୁ ବାରମ୍ବାର ଆହ୍ୱାନ ଦେଇଥାଏ । ମୁଁ ଭାବେ ବିଭ୍ରାନ୍ତ ହେବାର ଏହା ଅନ୍ୟ ଏକ ଆକର୍ଷଣ । ସମୁଦ୍ର କୂଳରେ ଅନେକ ଜରାଜୀର୍ଣ୍ଣ ଅତିକାୟ ଘର । ତା'ଭିତରେ ହିପିମାନଙ୍କର ଅବାଧ ଚଳପ୍ରଚଳ । ସେମାନେ କ'ଣ ଖୋଜୁଥାଆନ୍ତି ସବୁବେଳେ । ମୁଁ ଭାବେ ସମୁଦ୍ରର ଦୃଶ୍ୟ ଅସମ୍ପୂର୍ଣ୍ଣ ଏମାନେ ଯଦି ନଥାନ୍ତେ । କିନ୍ତୁ ଚରମ ନିର୍ଜନତା ମୋତେ 'ଭଲ ଲାଗେ ବୋଲି ମୁଁ ସହରର ଶେଷ ବସତି ଅତିକ୍ରମ କରି ଦୂର ଚକ୍ରବାଳ ଆଡକୁ ମୁହାଁଇଥାଏ । ସେଇଠି ନିଜ ସହ କଥାବାର୍ତ୍ତା କରିହୁଏ ଓ ସମୁଦ୍ର ସହ ନିଜକୁ ଏକାକାର କରିହୁଏ । ଢ଼େଉମାନଙ୍କୁ ସ୍ପର୍ଶ କରିହୁଏ । ସି'ଗଲମାନଙ୍କର ବସା ଠାବ କରିହୁଏ । ନୀଳ ସମୁଦ୍ରର ରଙ୍ଗ ବୈଭବକୁ ମାନସପଟରେ ଆଙ୍କି ହୁଏ । ମୁଁ ସତରେ କବି ପାଲଟି ଯାଏ । ମୁଁ ଚିତ୍ରକର ହୋଇଯାଏ । ମୁଁ ଭାବୁକ ଓ ପ୍ରେମିକ ବୋଲି ନିଜକୁ ଘୋଷଣା କରିଥାଏ । ମୁଁ ଏକ ଅଭିନବ ମଣିଷରେ ରୂପାନ୍ତରିତ ହୋଇଯାଏ । ମୁଁ ନିର୍ବାସିତର ବିଳାପ ଶୁଣିପାରେ ନାହିଁ । ମୁଁ ଏକ ସ୍ୱେଚ୍ଛାକୃତ ଆତ୍ମ ନିର୍ବାସନରୁ ସ୍ୱତଃ ଆତ୍ମପ୍ରକାଶ କରିଥାଏ ।

ସମୁଦ୍ରରୁ ଯେତେଦୂରରେ ଥିଲେ ମଧ୍ୟ ତାହାକୁ ଭଲ ପାଇହୁଏ । ଏକଥା ସତ କି ନୁହେଁ ତାହା ପରୀକ୍ଷା କରିବା ପାଇଁ ଜଣେ ସମୁଦ୍ର ଉପରେ ଲେଖାଯାଇଥିବା ସାହିତ୍ୟ ପଢ଼ିବାକୁ ଆଗ୍ରହ କରିଥାଏ । ମୁଁ ଦୃଢ଼ଭାବେ କହିବାକୁ ଋହେଁ ଯେ ସମୁଦ୍ରକୁ ଭଲ ପାଇ କବିତା ଲେଖିଥିବା କବିମାନଙ୍କ ଭିତରେ ଚିଲ୍ଲୀର ମହାନ୍ କବି ପାବ୍ଲୋ ନେରୁଦା ସର୍ବାଗ୍ରେ ନିଷ୍ଚିତ ରହିବେ । ମୋର ଦୂରଗାମୀ ଅନ୍ୱେଷଣ ଏଇ କବିଙ୍କ ଚମତ୍କାର କବିତାରେ ଠାବ ପାଏ । ଅଶୀଦଶକରେ ନେରୁଦାଙ୍କ କବିତା ଗୁଡିକ ସହ ପରିଚିତ ହେଲା । ଜଣେ ବନ୍ଧୁ ନେରୁଦାଙ୍କ ଏକ କବିତା ସଙ୍କଳନ ଉପହାର ଦେଇଥିଲେ ଯାହାର ଗୋଟାଏ ପୃଷ୍ଠାରେ ଥାଏ ସ୍ପେନିସ୍ ଭାଷାରେ ମୂଳ କବିତା ଓ ଅନ୍ୟ ପୃଷ୍ଠାରେ ଥାଏ ଇଂରେଜୀର ଅନୁବାଦ । ନେରୁଦା ଯେ ବିଂଶ ଶତାବ୍ଦୀର ଶ୍ରେଷ୍ଠକବି, ଏହା ସାରାପୃଥିବୀ ସ୍ୱୀକାର କରିଛି । ନେରୁଦା

ବିପ୍ଳବର କବି । ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିଥିବା କବି । ନେରୁଦା ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟର କବି ଓ ଉପାସକ । ଅଶୀଦଶକରେ ଚିଲ୍ଲୀର ଜଣେ ମାନବାଧିକାର ପାଇଁ ଲଢୁଥିବା ବନ୍ଧୁ ହୋସେ ମୋର ସହଧ୍ୟାୟୀ ଥିଲେ ହଲାଣ୍ଡରେ । ସେ ଅନେକ ସମୟରେ ନେରୁଦାଙ୍କ ସ୍ପେନିସ୍ ଭାଷାର କବିତା ଆବୃତ୍ତି କରି ଆମକୁ ଶୁଣାଉଥିଲେ । ଅବଶ୍ୟ ଏ ଭାଷା ମୁଁ ବୁଝୁ ନଥିଲି । କିନ୍ତୁ କବିତାର ଛନ୍ଦ ଓ କବିଙ୍କ ଅନ୍ତରଙ୍ଗ ଆବେଗ ଅନୁଭବ କରି ହେଉଥିଲା । ମୁଁ ନେରୁଦାଙ୍କ ସମସ୍ତ କବିତା ଓ ଆତ୍ମଜୀବନୀ ପଢ଼ିବାକୁ ସୁଯୋଗ ପାଇଛି । ଥରେ ନୁହେଁ ଅନେକ ଥର । ସବୁଠାରୁ ଭଲ ଲାଗିଛି ସମୁଦ୍ର ଉପରେ ଲେଖିଥିବା ତାଙ୍କର କବିତା । ୨୦୦୪ ମସିହାରେ ନେରୁଦାଙ୍କ ଶତବାର୍ଷିକ ପୃଥିବୀସାରା ପାଳିତ ହୋଇଥିଲା । ଏଇ ଅବସରରେ ବିଭିନ୍ନ ଆଗ୍ରହୀ ଗୋଷ୍ଠୀ ପକ୍ଷରୁ ତାଙ୍କର ସାହିତ୍ୟିକ କୃତିମାନଙ୍କର ସଂକଳନ ପ୍ରକାଶିତ ହୋଇଥିଲା । ମୋର ଝିଅ ଏଇ ଶତବାର୍ଷିକ ପ୍ରକାଶନରୁ "On the Blue Shore of Silence" ବହିଟି ଚୟନ କରି ଉପହାର ଦେଇଛି । ସମୁଦ୍ରକୁ ନେରୁଦା ଖୁବ୍ ଭଲ ପାଉଥିଲେ । ତାଙ୍କର ଚିଲ୍ଲୀର ଇସ୍‌ଲା ନେଗ୍ରା (Isla Negra ) ଘର ସମୁଦ୍ରକୁ ଲାଗି । ଝିଡିକି ପାଖେ ବସିଲେ ସମୁଦ୍ରକୁ ଦେଖି ହୁଏ ଓ ଅକ୍ଳେଶରେ ଛୁଇଁ ହୁଏ । ଏଘର ଭିତରେ ବିଭିନ୍ନ ସମୁଦ୍ର ଯାତ୍ରାର ଅନେକ ସ୍ମାରକୀ ଭରି ଯାଇଛି । ସମୁଦ୍ରର ଉଚ୍ଚ ଜୁଆରରେ ପ୍ରତିଫଳିତ ଆଲୋକ ଦ୍ୱାରା ତାଙ୍କ ଘରଟି ଚମତ୍କାର ଆଲୋକିତ ହୁଏ । ତାଙ୍କ ଜୀବନର ଏକ ମୁଖ୍ୟ ମେଟାଫର୍ ବା ରୂପକ ଅଳଙ୍କାର ହେଉଛି ସମୁଦ୍ର । ଜୀବନଯାତ୍ରାର ଅଙ୍କାବଙ୍କା ରାସ୍ତାର ଦିଗଦର୍ଶକ । ଏଇଠି ଅଛି ଭୟ ଓ ଆଶ୍ଚର୍ଯ୍ୟର ସାମଗ୍ରୀ । ଅଛି ସୌନ୍ଦର୍ଯ୍ୟ ଓ ଆତଙ୍କ । ସମୁଦ୍ରକୁ ସେ 'ଢେଉର ବିଶ୍ୱବିଦ୍ୟାଳୟ' ବା University of Waves ବୋଲି ଆଖ୍ୟାୟିତ କରିଛନ୍ତି ଓ ସେଥିରେ ସେ ଆନନ୍ଦର ସହ ବିଚରଣ କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । ସମୁଦ୍ର ସବୁ ପ୍ରେରଣାର ଉତ୍ସ ବୋଲି ସେ ଦୃଢ଼ଭାବେ କହିଛନ୍ତି ନିଜ ଅନୁଭୂତିକୁ ଆଧାର କରି । ତାଙ୍କୁ ନିମ୍ନରେ ଉଦ୍ଧାର କରିବା ମୁଁ ନିତାନ୍ତ ଆବଶ୍ୟକ ମନେ କରୁଛି ।

" I need the sea because it teaches me.
I don't know if I learn music or awareness,
if it is a single wave or its vast existence
or only its harsh voice or its shining
suggestion of fishes and ships.
The fact is that until I fall asleep,
in some magnetic way I move in
the university of the waves."

( The Sea : Pablo Neruda)

"Let us look for secret things
somewhere in the world,
on the blue shore of silence
and where the storm has passed,
rampaging like a train,
There the faint thing are left,
coins of time and water,
debris, celestial ash,
and the irreplaceable rupture
of sharing in the labour
of solitude and the sand

(Forget about me, Pablo Neruda)

ସତୁରୀ ଦଶକରେ ମୋର ଆତ୍ମଗୋପନ ଓ ନିର୍ବାସନ ପାଇଁ ଦାୟୀ ମୁଁ ନିଜେ । କିନ୍ତୁ ସେଇଭଳି ଆତ୍ମଗୋପନ ଓ ନିର୍ବାସନର ଯନ୍ତ୍ରଣା ମୁଁ ଭୋଗି ନଥିଲେ, ଜଣେ ଅଜଣା ପଥର ପଥଚାରୀ ଓ ଘୋର ବନାନୀର ବନଚାରୀ ହୋଇନଥାନ୍ତି । ସତରେ କ'ଣ ମୁଁ ଅନୁତପ୍ତ ମୋର ବ୍ୟର୍ଥ ପ୍ରେମ ଓ ଅହେତୁକ ଆବେଗ ପାଇଁ ? ଆଜି ଯଦି ସୁଯୋଗ ମିଳନ୍ତା ମୁଁ ପୁଣିଥରେ ନିଜକୁ ଆତ୍ମଗୋପନ କରନ୍ତି ଓ ଜଣେ ନିର୍ବାସିତର ସଂଳାପ ରଚନା କରନ୍ତି ସମୁଦ୍ର ବେଳାଭୂମିରେ । ମୁଁ ନେରୁଦାଙ୍କ ପଦାଙ୍କ ଅନୁସରଣ କରନ୍ତି । ମୁଁ କବିତା ନ ଲେଖି ପାରିଲେ ବି କାବ୍ୟିକ ପୃଥିବୀ ଓ ପ୍ରକୃତିକୁ ଅନ୍ତଃସ୍ଥ କରିପାରନ୍ତି ।

□ □ □

## ୪୫

# ସମୁଦ୍ର, ଲୟବିଲୟ ଓ ସଚେତନତାର ସ୍ରୋତ

ସେ ଦିନ କେଉଁ ମାସ ଓ କେଉଁ ତାରିଖ ମୋର ମନେ ନାହିଁ । ମୋର ବନ୍ଧୁମାନେ ଟ୍ରେନ୍ ଧରି ମଧ୍ୟ ରାତ୍ରିରେ ପହଞ୍ଚିଲେ ସେ ସହରରେ ଯେଉଁଠି ମୁଁ ଆତ୍ମଗୋପନ କରିଥାଏ । ସେମାନେ ଜାଣିଥିଲେ ମୋର ସ୍ଥିତିବାଦୀ ଜୀବନ ବିଷୟରେ ଓ କେଉଁ ଗଳିର କେଉଁ ଘରେ ମୁଁ ରହୁଥିବି ସେମାନେ ତାହାର ଚିତ୍ର ଆଙ୍କି ପାରିଥିଲେ । ଯେଉଁ ଯୁବକଟି ଅସ୍ତିତ୍ୱବାଦ କ'ଣ ଦସ୍ତୋଭସ୍କି, କାଫ୍‌କା, କାମ୍ୟୁ ଓ ସାର୍ତ୍ର ପଢ଼ି ଜାଣିଛି ଓ ଅଙ୍ଗେନିଭାଇଛି ତା'ର ସାରାଜୀବନର ଅଙ୍କାବଙ୍କା ରାସ୍ତା ଯେମିତି ସେ ନିଜେ ନିର୍ଦ୍ଧାରଣ କରିଛି । ଆତ୍ମ ଯନ୍ତ୍ରଣାକୁ ସେ ଆଦରି ବସିଛି । ଘଣ୍ଟା ଘଣ୍ଟା ଧରି ଆତ୍ମନିରୀକ୍ଷଣ କରିବାକୁ ସେ ବେଶୀ ପସନ୍ଦ କରିଛି । ସେ ଭଲ ପାଇବାର ଉଲ୍ଲାସ ଓ ଭଲ ନ ପାଇପାରିବାର ନର୍କ ଯନ୍ତ୍ରଣାକୁ ଆପଣାର କରିଛି । ଏଇଥିପାଇଁ ସମୁଦ୍ର ଯେମିତି ଏକ ସୁନ୍ଦର ପରିବେଶ ସୃଷ୍ଟି କରିଛି ଓ ଭାବପ୍ରବଣତାର ଅନେକ ଖୋରାକ ଯୋଗାଇଛି । ବନ୍ଧୁମାନେ ପ୍ରସ୍ତାବ ଦେଲେ ଯେ ରାତ୍ରି ତ ଶେଷ ହୋଇନାହିଁ । ସମୁଦ୍ର ତ ଏବେ ନିରୋଳା ନିଛାଟିଆ ଥିବ । ସେଠାକୁ ଗଲେ କେମିତି ହୁଅନ୍ତା ? ଏକାନ୍ତରେ ନିଜ ସହ କଥାବର୍ତ୍ତା କରାଯାଇ ପାରନ୍ତା । ଅଧା ଆଲୁଅ ଓ ଅଧା ଅନ୍ଧାରରେ ନିଜକୁ ଆଉଥରେ ଆବିଷ୍କାର କରାଯାଇ ପାରନ୍ତା । କବିତା ରଚନା କରାଯାଇ ପାରନ୍ତା ମନେ ମନେ । ଗଳ୍ପର ନାୟକ ନାୟିକାମାନଙ୍କୁ ସୃଷ୍ଟି କରାଯାଇ ପାରନ୍ତା । ସଙ୍ଗୀତର ଅଫୁରନ୍ତ ମୂର୍ଚ୍ଛନାରେ ଢ଼େଉମାନଙ୍କର ସ୍ପର୍ଶ ଆଆନ୍ତା । ଏଇଥିପାଇଁ ଆମେ ବିନା ଦ୍ୱିଧାରେ ଏକମତ ହେଲୁ ଯେ ରାତି ଯେତେ ହୋଇଥାଉ ପଛକେ ଆମେ ସମୁଦ୍ର କୂଳକୁ ଯିବା ଓ ସେଠାରେ ଥକି ନ ଗଲା ପର୍ଯ୍ୟନ୍ତ ନୀରବରେ ବସି ରହିବା । କିଛି ବାଟ ଚାଲିଲା ପରେ ସମୁଦ୍ରର ଗର୍ଜନ ଶୁଭିଲା ରାତ୍ରିର ନିସ୍ତବ୍‌ଧତାକୁ ଭଙ୍ଗ କରି । ଆମର ମନ ଖୁବ୍ ଉଚ୍ଚାଟ ହେଲା । ଆମର ଜଣେ ବନ୍ଧୁ ଇଂରେଜୀ ସାହିତ୍ୟର ଛାତ୍ର ଥିଲେ । ଆମର ଚିନ୍ତା ଓ ଚେତନାକୁ ଲକ୍ଷ୍ୟ କରି ସେ ବିଶିଷ୍ଟ ଔପନ୍ୟାସିକ ଜେମ୍‌ସ ଜୟେସଙ୍କ ୟୁଲିସେସ୍ (Ulysses) ଉପନ୍ୟାସରେ ଥିବା ସଚେତନତାର ସ୍ରୋତ ବା

Streams of Consciousness କଥା କହିବାକୁ ଆରମ୍ଭ କରିଲେ । ଚିନ୍ତା ଓ ଚେତନାରେ କେବେହେଲେ କମା, ପୂର୍ଣ୍ଣଛେଦ ରହେ ନାହିଁ । ଏଇ ଉଜାଣି ଯମୁନା କେବେହେଲେ ବାଡ଼ ବନ୍ଧ ମାନେ ନାହିଁ । ବନ୍ଧୁ ଜଣକ ଆମ ସମସ୍ତଙ୍କ ଜୀବନକୁ ବିଶ୍ଳେଷଣ କରିବାକୁ ଯାଇ କହିଲେ ଯେ ଆମେ ସମସ୍ତେ ଜଣେ ଜଣେ ୟୁଲିସେସ୍ ଓ ଜୀବନକୁ ଗୋଟାଏ ଆଡ୍‌ଭେଞ୍ଚର ହିସାବରେ ନେଉଛେ । ସେଇଥିପାଇଁ ଆମେ ସମସ୍ତେ ଭ୍ରମରେ ପଡିଯାଇଛେ । ଆଉ ଜଣେ ବନ୍ଧୁ ମନୋଜ ଦାସଙ୍କ ଗପ ପଢ଼ିବାକୁ ପସନ୍ଦ କରୁଥିଲେ ଓ 'ସମୁଦ୍ରର କ୍ଷୁଧା' ଗପଟିର ସାରାଂଶ ଆମକୁ ଶୁଣାଉଥିଲେ । ଆଉ ଜଣେ ବନ୍ଧୁ ରିଡରର୍ସ ଡାଇଜେଷ୍ଟରେ ଜୋନାଥନ୍ ଲିଭିଙ୍ଗଷ୍ଟୋନ୍ ସିଗଲ୍ କଥା ପଢ଼ି ତାହାକୁ ଠାବ କରିବାକୁ ଚାହିଁଥିଲେ । ଆଉ ଜଣେ ବନ୍ଧୁ କହିଲେ ଯେ ତାଙ୍କର ଏକ ଆଦିମ ସ୍ୱପ୍ନ ରହିଛି ଯେ ମନଭରି ସମୁଦ୍ର ସ୍ନାନ କରିବେ ଓ କୌଣସି ନିୟମ ମାନିବେ ନାହିଁ । ସମୁଦ୍ରକୁ ଭଲ ପାଇବାର ଅନ୍ୟ ଏକ ବାଟ ହେଉଛି ସମୁଦ୍ର ସ୍ନାନ । ଜୋର୍ବା ଦି ଗ୍ରୀକ୍ ଏଇଭଳି ସ୍ନାନ କରୁଥିଲା ବୋଧେ । କୌଣସି ବାଧା ବନ୍ଧନ ନଥିଲା ।

ଆଉ ଜଣେ ବନ୍ଧୁ ଗୋପୀ ମହାନ୍ତିଙ୍କ ଲୟ ବିଲୟ ଉପନ୍ୟାସ ପଢ଼ି ସମୁଦ୍ରକୁ ବୁଝିବାକୁ ଚାହିଁଥିଲେ । ଉପନ୍ୟାସରୁ କେତୋଟି ଲାଇନ୍ ମନେ ପକାଇ ଆମକୁ ଶୁଣାଇବାକୁ ଚେଷ୍ଟା କରୁଥିଲେ । ଉପନ୍ୟାସରେ ସଚେତନତାର ସ୍ରୋତର ଝଲକ । "......... ଏଇଠି ସେ ଓ ସମୁଦ୍ର ଏକୁଟିଆ, ଗୋଟିଏ ଆଉ ଗୋଟିକର । କେତେବେଳେ ଏ ସମୁଦ୍ର ତାରି, ଏବଂ ତା'ର ଚେତନା ଭିତରେ ଖେଳ ଲାଗିଛି, ସେ ତା'କୁ ଆଖିରେ ଦେଖୁ ନାହିଁ, ମମତାରେ ଗୋଟା ସୁଦ୍ଧା ଘେନି ଯାଇଛି ଆଉ ନିଜେ ସେ ନିଜ ଅନ୍ତରର ପ୍ରତିଧ୍ୱନି ଶୁଣୁଛି, ବିକଶି ଉଠୁଛି ଅସଂଖ୍ୟ ନୂଆ ନୂଆ ରୂପରେ । ଆଉ କେତେବେଳେ ଆପଣାର ସବୁ ସତ୍ତା ଭୁଲି ଓଟାରି ହୋଇ ସେ ଚାଲିଯାଉଛି ଏଇ ସମୁଦ୍ରର ହୋଇଁ କାହିଁ ଦୂରକୁ ଦୂରକୁ, ସେଠି କିଛି ନାହିଁ ଖାଲି ସମୁଦ୍ର । ନିଛାଟିଆ । ଆଉ କୌଣସି ମଣିଷକୁ ସେ ଦେଖୁ ନାହିଁ, ଅନୁଭବ କରୁନାହିଁ, ଖାଲି ସେ ଆଉ ସମୁଦ୍ର ।" ମୁଁ କହିଲି ସବୁ ଚେତନା ଅଥବା ଭାବପ୍ରବଣତାକୁ ଏକାକାର କରି ଆମେ ସମୁଦ୍ର ବେଳାଭୂମିରେ ନୀରବରେ କିଛି ସମୟ ବସିବା ଓ ନିଜର ଜୀବନ ଓ ଯୌବନକୁ ସମୀକ୍ଷା କରିବା । ଯଦି କିଛି ଆଡ୍‌ଭେଞ୍ଚର ଆମେ ନିଜସ୍ୱ ଢ଼ଙ୍ଗରେ କରିଥାଉ ତାହାର ଏକାନ୍ତ ଅନୁଭବକୁ ପ୍ରକାଶ କରିବା । ସବୁ ବନ୍ଧୁମାନେ ମୋ ପ୍ରସ୍ତାବରେ ସହମତ ହୋଇଗଲେ ଓ ସମୁଦ୍ର କୂଳରେ ଆମେ ନୀରବରେ ବସି ରହିବା ଓ ଆପଣା ଆପଣାର କଳ୍ପନାର ପୃଥିବୀରେ ହଜି ଯିବାକୁ ଉଚିତ୍ ମନେ କରିଥିଲୁ ସେଇ ସମୟରେ । ରାତ୍ରିର ଶେଷ ପ୍ରହର ପର୍ଯ୍ୟନ୍ତ ଆମେ ସେଠାରେ ଓଦା ବାଲିରେ ବସି ରହିଥିଲୁ । ଜଣେ ବନ୍ଧୁ ଅବଶେଷରେ ପ୍ରସ୍ତାବ ଦେଲେ ଯେ କିଛି ସମୟ ବିଶ୍ରାମ ନେଇ ପୁଣି ସମୁଦ୍ର କୂଳକୁ ଫେରିବାକୁ ହେବ ଏବଂ ସୂର୍ଯ୍ୟୋଦୟ ବେଳାରେ ସି'ଗଲ୍‌ମାନଙ୍କୁ ଦେଖିବାକୁ ହେବ । ସମୁଦ୍ର ସ୍ନାନ ମଧ୍ୟ କରିବାକୁ ହେବ । ଶାମୁକାମାନଙ୍କୁ

ସଂଗ୍ରହ କରିବାକୁ ହେବ । ପୁଣିଥରେ ନୀରବତାର ପୃଥିବୀକୁ ଫେରିବାକୁ ହେବ ଅଥବା ନିଜ ବିଷୟରେ କାହାଣୀ ଲେଖିବାକୁ ହେବ ।

ସତ କଥା କହିବାକୁ ଗଲେ ସମୁଦ୍ର ଜଣେ ପରିବ୍ରାଜକ ପାଇଁ ଆଣି ଦିଏ ଚିନ୍ତା ଓ ଚେତନାର ଅପୂର୍ବ ସମ୍ଭାର । ଏସବୁ କେତେ ନିରାଟ ସତ୍ୟ ତାହା ଜାଣିହୁଏ ବିଶ୍ୱ ସାହିତ୍ୟରୁ, କବିତା, ଉପନ୍ୟାସ ଓ ଭ୍ରମଣ କାହାଣୀମାନଙ୍କରୁ ଅଥବା ସମୁଦ୍ର ଯାତ୍ରାର ଦୁଃସାହାସିକ ଆଡ୍‌ଭେଞ୍ଚରମାନଙ୍କରୁ । ମୁଁ ବିଖ୍ୟାତ ଓଡ଼ିଆ ଔପନ୍ୟାସିକ ଗୋପୀ ମହାନ୍ତିଙ୍କ ଲୟବିଲୟ ଉପନ୍ୟାସଟି ପଢ଼ିବାକୁ କେତେଥର ସୁଯୋଗ ପାଇଛି । ଓଡ଼ିଶାର ଉପକୂଳ ହେଉଛି ୫୦୦କି.ମି.ରୁ ଊର୍ଦ୍ଧ୍ୱ ଅଥଚ ଓଡ଼ିଆ ସାହିତ୍ୟରେ ସମୃଦ୍ଧ ସମୁଦ୍ର ବର୍ଣ୍ଣନା ଯଥେଷ୍ଟ ଅଛି କି ନାହିଁ ନିଶ୍ଚିତ ଭାବେ କହିବା ସମ୍ଭବ ନୁହେଁ । ତେବେ "ଲୟବିଲୟ" ଉପନ୍ୟାସ ମୁଁ ସ୍କୁଲ ଜୀବନରେ ପଢ଼ିବାକୁ ଚେଷ୍ଟା କରିଥିଲି । ଅବଶ୍ୟ ବୁଝିବା ସେତେବେଳେ ସମ୍ଭବ ହୋଇନଥିଲା । ସମୁଦ୍ରକୁ ଭଲ ପାଇବା ପରେ ଲୟବିଲୟ ଉପନ୍ୟାସଟି ଖୁବ୍ ସହଜ ଜଣାପଡିଲା । ଗୋପୀ ମହାନ୍ତି ଏ ଉପନ୍ୟାସରେ ସମୁଦ୍ରର ବର୍ଣ୍ଣନା କରିଛନ୍ତି ଚମତ୍କାର ଶୈଳୀରେ ।

"ଆଗରେ ସମୁଦ୍ର ନାଚୁଛି, ଗୀତ ବୋଲୁଛି, ଛାଇ ଫୁଟୋଉଛି, ପହିଜ ଦେଖାଉଛି, ଆଗରେ ଲାଗି ରହିଛି ଜୀବନର ଖେଳ, ଗତି ଓ ଆଉ ବର୍ଣ୍ଣ । ଢ଼େଉ ପରେ ଢ଼େଉ ମାଡି ଆସୁଛି କୂଳ ଆଡକୁ, ମୁହୂର୍ତ୍ତେ ବି ସ୍ଥିର ନାହିଁ ।"

ସମୁଦ୍ରର ଆକର୍ଷଣକୁ ଭୁଲି ହେବ ନାହିଁ ଜୀବନ ସାରା । ଏଇଥିପାଇଁ ଆମେ ବନ୍ଧୁମାନେ ସମୁଦ୍ର ପାଖକୁ ବାରମ୍ବାର ଆସିଥାଉ ଓ ଆତ୍ମକଥନ ରଚନା କରିଥାଉ । ଅନେକ ସମୟରେ ଜହ୍ନ ରାତିରେ ବସିବାକୁ ସ୍ୱପ୍ନ ଦେଖୁ । ଢ଼େଉ ଉପରେ ଆଲୋକର ଚମତ୍କାର ପ୍ରତିଫଳନ ଦେଖି ଅଭିଭୂତ ହେଉ । ସମୁଦ୍ରର ଡାକ ଶୁଣୁ । ଜୀବନ ଦର୍ଶନର ଜଟିଳତା ବୁଝିବାକୁ ଚେଷ୍ଟା କରିଥାଉ । ଜନ୍ମ, ମୃତ୍ୟୁ ଯେମିତି ଲୟବିଲୟର ଆଲେଖ୍ୟ । ମୁଁ ବାରମ୍ବାର ସ୍ୱୀକାର କରିଛି ଯେ ସମୁଦ୍ରକୁ ରାତ୍ରିର ଗଭୀରତା ବଢିଲେ ନିକଟରୁ ଦେଖି ଓ ଅନୁଭବ କରି, ସମୁଦ୍ର କୂଳରେ ଦୀର୍ଘ ବାଟ ଚାଲି ଚାଲି ଓ ଢ଼େଉମାନଙ୍କୁ ଛୁଇଁ ଛୁଇଁ ମୁଁ ଜୀବନର ସତ୍ତାକୁ ପ୍ରଖର ଭାବେ ଅନୁଭବ କରିଛି ଓ ବଞ୍ଚିବାର ପୁଲକରେ ପୁଲକିତ ହୋଇଛି । ଏକଦା ସକାଳର ସୂର୍ଯ୍ୟୋଦୟ ବେଳେ ଜଣେ ଜାପାନୀ ପରିବ୍ରାଜକଙ୍କ ସହ ଦେଖା ହେଲା ଓ ସେ ଆଇ ଚିଂ (I ching) ଅଭ୍ୟାସ କରୁଥିଲେ । ଓଦା ବାଲିରେ ସେ ନୃତ୍ୟ କରୁଥିଲେ ଲାଲ ସୂର୍ଯ୍ୟକୁ ଦେଖି ଓ ଉପାସନାର ଏହା ଅନ୍ୟ ଏକ ପ୍ରକାଶ ବୋଲି ମୁଁ ଜାଣିପାରୁଥିଲି । କିଛି ସମୟ ପରେ ତାଙ୍କର ନୃତ୍ୟ ଶେଷ ହେଲା ଓ ମୋ ତରଫରୁ କଥୋପକଥନ ଆରମ୍ଭ ହେଲା । ସେ ସାରା ପୃଥିବୀ ଘୁରି ବୁଲୁଛନ୍ତି ଓ ସମୁଦ୍ର ତଟର ପ୍ରସିଦ୍ଧ ସ୍ଥାନମାନଙ୍କରେ କିଛି ଦିନ କାଟୁଛନ୍ତି । ଜାପାନ ତାଙ୍କୁ ଆଉ ଭଲ ଲାଗୁ ନାହିଁ ଓ ସେ ଶାନ୍ତି ପାଉନାହାନ୍ତି । କିନ୍ତୁ ଆଇ ଚିଂ ଓ ଜେନ୍ ଉପାସନା କରିବା ଜାଣନ୍ତି ଓ

ଏହାଦ୍ୱାରା ସେ ଅସମ୍ଭବ ମାତ୍ରାର ଶାନ୍ତି ପାଉଛନ୍ତି । ସୂର୍ଯ୍ୟର ଦେଶ ଜାପାନ୍‌ରେ ସୂର୍ଯ୍ୟ ଯେମିତି ଅସ୍ତମିତ ହୋଇଯାଇଛି । ଭାରତୀୟ ଯୋଗ ଉପାସନାରୁ I ching ଏବଂ Zen ର ଉତ୍ପତ୍ତି । ଏଇଥିପାଇଁ ସେ ଭାରତକୁ ଆସିଛନ୍ତି । ସେ କେତେଦିନ ରହିବେ ବୋଲି ମୁଁ ପଚାରିଥିଲି । ସେ କିନ୍ତୁ ନିରୁତ୍ତର ଥିଲେ । ସମୁଦ୍ର କୂଳରେ ସେ ଅନେକ ସମୟ ଧରି ଆଇ ଚିଂରେ ନିମଗ୍ନ ରହୁ ଥିବାର ମୁଁ ଲକ୍ଷ୍ୟ କରୁଥିଲି । ମୁଁ ବି ଧ୍ୟାନରତ ହୋଇ କିଛି ସମୟ ବସିବାକୁ ଚେଷ୍ଟା କରିଥିଲି ତାଙ୍କୁ ଅନୁସରଣ କରି । ସମୁଦ୍ର ଭଳି କେବେ କେମିତି ଶାନ୍ତ ହୋଇଯିବାକୁ ଚେଷ୍ଟା କରୁଥିଲି । ସମୁଦ୍ର କ'ଣ କେବେ ଶାନ୍ତ ହୁଏ ସବୁ ଉଦ୍‌ବେଳନ ସତ୍ତ୍ୱେ ? ଅନୁଭବ କରିପାରିଲେ ଏହାର ରହସ୍ୟ ଭେଦ କରିହୁଏ । ସବୁ ଆଧ୍ୟାତ୍ମିକ ମଣିଷଙ୍କ ଗୋଟାଏ ଆଶା-ସେମାନେ ଶାନ୍ତ ଓ ନୀରବ ହୋଇଯିବେ । ଜୀବନ ଯନ୍ତ୍ରଣାରୁ ମୁକ୍ତ ହେବେ । ଆଶା ନିରାଶାର ପରିଧିକୁ ଅତିକ୍ରମ କରିବେ । ସମୁଦ୍ର ସତରେ କ'ଣ ଶିଖାଏ ? ଯିଏ ସମୁଦ୍ରରେ ଢେ଼ଉ କାଟି ପହଁରିବାକୁ ଚାହେଁ, ସେ ଢେ଼ଉ ସହ ସମତାଳ ରଖିବାକୁ ବାଧ୍ୟ ହୁଏ । ଢେ଼ଉକୁ ପ୍ରତିରୋଧ କରିବା ମୂର୍ଖାମୀ ଛଡା ଆଉ କିଛି ନୁହେଁ । ଆଇ ଚିଂର ମୂଳରେ ଏଇ ତତ୍ତ୍ୱଟି ନିଷ୍ଠିତ ଭାବେ ରହିଛି । ଢେ଼ଉ ସର୍ବୋଚ୍ଚ ସୀମାକୁ ଉଠି ଭାଙ୍ଗି ଥାଏ । ପୁଣି ସେଠାରୁ ଉଠି ଆଉ ଥରେ ଏକ ବିରାଟ ଢେଉ ହିସାବରେ ମୁଣ୍ଡ ଟେକେ ।

ମୁଁ ସମୁଦ୍ରକୁ ସାକ୍ଷୀ କରି ଆତ୍ମଗୋପନ କରିଥିଲି କି ନିଜର ପ୍ରକୃତ ଆତ୍ମପ୍ରକାଶ ପାଇଁ ସୁଯୋଗ ସୃଷ୍ଟି କରିଥିଲି ତାହା ଏବେ ମଧ୍ୟ ଅସ୍ପଷ୍ଟ । କିନ୍ତୁ ସମୁଦ୍ର ପାଖକୁ ଯେତେଥର ଗଲେ ବି, ଯେପରି ଅନେକ କିଛି ଅନାବିଷ୍କୃତ ହୋଇ ରହିଛି ତାହା ହୃଦ୍‌ବୋଧ କରିବାକୁ ବେଶି ସମୟ ଲାଗେ ନାହିଁ । ସଚେତନତାର ସ୍ରୋତ ଅବାରିତ ଭାବେ ବୋହୁଥାଏ ।

❑ ❑ ❑

୪୬

# ସମୁଦ୍ର ଓ ରାଚେଲ୍ କାର୍ସନ୍

ସମୁଦ୍ରର ବର୍ଣ୍ଣନା ଅଭୂତପୂର୍ବ । ଯେଉଁମାନେ ସମୁଦ୍ରର ଦୃଶ୍ୟ ଦେଖି ବିହ୍ବଳ ବା ଭୟଭୀତ ହୋଇଛନ୍ତି, ଯେଉଁମାନେ ସୂର୍ଯ୍ୟସ୍ନାତ ସମୁଦ୍ର ଭିତରେ ଜଳକ୍ରୀଡା କରିଛନ୍ତି ଅଥବା ଯେଉଁମାନେ ଝଡର ଝଙ୍କାର ଏବଂ ଉତ୍ତାଳ ତରଙ୍ଗରେ ଆଲୋଡିତ ହୋଇଛନ୍ତି, ସେମାନେ ଯେଭଳି ନିଜକୁ ପରିପ୍ରକାଶ କରିଛନ୍ତି ଜାଣିଲେ ଅବାକ୍ ଲାଗେ । ସମୁଦ୍ର ଉପରେ ଅନେକ ପୁସ୍ତକ ରଚନା କରାଯାଇଛି । କିନ୍ତୁ ମୁଁ ପଢ଼ିଥିବା ପୁସ୍ତକମାନଙ୍କର ତାଲିକାରେ ଶ୍ରୀମତୀ ରାଚେଲ୍ କାର୍ସନ୍‌ଙ୍କ 'ଦି ସି' (The Sea) ବହିଟି ଅନେକ ଉଚ୍ଚରେ ରହିବ । ରାଚେଲ୍ କାର୍ସନ୍ ଅବଶ୍ୟ 'ଦି ସାଇଲେଣ୍ଟ୍ ସ୍ପ୍ରିଙ୍ଗ' (The Silent Spring) ନାମକ ବହି ଲେଖି ଇତିହାସରେ ନିଜର ନାମକୁ ଅମର କରିଛନ୍ତି । ବିଷାକ୍ତ କୀଟନାଶକ ଔଷଧର ବ୍ୟବହାର ଦ୍ୱାରା କିପରି ଭୟାଭୟ ପରିଣତି ହୋଇପାରେ ଓ ପ୍ରଦୂଷଣ କିପରି ମଣିଷ ଓ ପ୍ରକୃତିଦତ୍ତ ପରିବେଶକୁ ନଷ୍ଟ କରିପାରେ, ତାହାର ଏକ ଗବେଷଣାମୂଳକ ପୁସ୍ତକ ପ୍ରଥମ ଥର ପାଇଁ ଲେଖିଥିଲେ ରାଚେଲ କାର୍ସନ୍ । ସାରା ପୃଥିବୀର ଚିନ୍ତାଧାରାକୁ ପ୍ରଭାବିତ କରିଥିବା ଯେଉଁ କେତୋଟି ପୁସ୍ତକକୁ ଯଦି ନାମିତ କରାଯାଏ, ତା'ଭିତରେ ଏହା ନିଶ୍ଚିତ ସ୍ଥାନ ପାଇବ । ମୁଁ ଅଶୀଦଶକରେ ଏ ବହିଟି ପଢ଼ି ପ୍ରଦୂଷଣ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଅର୍ଜନ କରିଥିଲି । ଏବେ ମଧ୍ୟ ଏ ବହିଟି ବିଶ୍ୱର ଲୋକପ୍ରିୟ ପୁସ୍ତକ ଭିତରୁ ଗୋଟିଏ । କିନ୍ତୁ 'ଦି ସି' ବହିଟି ମଧ୍ୟ ରାଚେଲ୍ କାର୍ସନ୍‌ଙ୍କ ଅନ୍ୟତମ ଶ୍ରେଷ୍ଠକୃତି ଯାହା ପ୍ରକୃତରେ ତିନୋଟି ପୁସ୍ତିକାର ସମାହାର । ପ୍ରଥମଟି ହେଉଛି 'ଦି ସି ଆରାଉଣ୍ଡ ଅସ' (The Sea Around Us ) । ଦ୍ୱିତୀୟଟି ହେଉଛି 'ଅଣ୍ଡର ଦି ସି ୱିଣ୍ଡ' ( Under the Sea Wind) ଏବଂ ତୃତୀୟଟି ହେଉଛି 'ଦି ଏଜ୍ ଅଫ ଦି ସି' (The Edge of the Sea) । ରାଚେଲ୍ କାର୍ସନଙ୍କ ଲେଖାରେ 'ଜିନିୟସ୍' ବା ଅସାଧାରଣ ପ୍ରତିଭାର ପ୍ରତିଫଳନ ଦେଖାଯାଇଛି । ଜୀବନର ଅନେକ ବର୍ଷ ପର୍ଯ୍ୟନ୍ତ ସେ ସମୁଦ୍ର ଦେଖି ନଥିଲେ ଅଥଚ ପ୍ରଥମ ଦେଖାରେ ସମୁଦ୍ରର ବାସ୍ନା, ତରଙ୍ଗମାନଙ୍କର ସଙ୍ଗୀତ, ସାମୁଦ୍ରିକ ଝଡର ତୀବ୍ରତା ଓ ଫେନାୟିତ ସମୁଦ୍ର ଜଳର ଛିଟା ଦ୍ୱାରା ସେ ଅଭିଭୂତ ହୋଇ ପଡିଥିଲେ । ସେ ଜଣେ ପେଶାଦାର ବୈଜ୍ଞାନିକ ଓ ଗବେଷକ ଥିଲେ ସତ କିନ୍ତୁ ଅସଲରେ ଜଣେ କବି ଥିଲେ

ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସମୁଦ୍ର ଉପରେ ତାଙ୍କର ବର୍ଣ୍ଣନାଶୈଳୀରେ କାବ୍ୟିକ ଛଟା ଅଛି ବୋଲି ଯେକେହି ପାଠକ ଅନୁଭବ କରିବ । ଏ ପୁସ୍ତକଟି ଦେଖିଲା ମାତ୍ରକେ ମୁଁ ତା'କୁ କିଣିଥିଲି ଓ ଅନେକ ବନ୍ଧୁଙ୍କୁ ପଢ଼ିବାକୁ ଦେଇଥିଲି । ସମୁଦ୍ରର ଦୃଶ୍ୟ ଦେଖିଲା ମାତ୍ରକେ ରାଚେଲ୍ କାର୍ସନ୍‌ଙ୍କ କଥା ବାରମ୍ବାର ମୋ ମନକୁ ଆସିଥାଏ ।

ସମୁଦ୍ରକୁ ଯିଏ ଭଲପାଏ, ସାମୁଦ୍ରିକ ଜୀବଜନ୍ତୁଙ୍କୁ ଯିଏ ପ୍ରାଣୀଜଗତରେ ସ୍ୱତନ୍ତ୍ର ସ୍ଥାନ ଦିଏ, ଯିଏ ପ୍ରବାଳମାନଙ୍କ ଅସ୍ତିତ୍ୱରେ ଏକ ଚମତ୍କାର ବର୍ଣ୍ଣ ବିନ୍ୟାସ ଦେଖେ, ଯିଏ ଜଳକନ୍ୟା ବା ମରମେଡ୍‌ମାନଙ୍କୁ ନେଇ ପ୍ରେମକାହାଣୀ ରଚନା କରେ ଅଥବା ଯିଏ ସମୁଦ୍ର ସହ ସବୁବେଳେ ଏକାକାର ହୋଇଯିବାକୁ ଚାହେଁ, ସିଏ ବି ସମୁଦ୍ର କିପରି ମଣିଷଦ୍ୱାରା ପ୍ରଦୂଷିତ ଓ ଧ୍ୱସ୍ତବିଧ୍ୱସ୍ତ ହୋଇଛି ଜାଣି ଦୁଃଖରେ ମ୍ରିୟମାଣ ହୋଇପଡେ । ଯେଉଁଠି ଦେଖିବ, ଅସନା ଓ ଆବର୍ଜନାରେ ସମୁଦ୍ରକୂଳ ଭରିଯାଇଛି । ବନ୍ଦରମାନଙ୍କରେ ମାଇଲ ମାଇଲ ଧରି ପ୍ଲାଷ୍ଟିକ ବୋତଲ ଓ ଅନ୍ୟାନ୍ୟ ସାମଗ୍ରୀ ଭାସୁଛି । ଉପରେ ତେଲର ଏକ ଆସ୍ତରଣ । ଚାରିଆଡେ ତୀବ୍ର ପଚାଗନ୍ଧ । ସହରର ସମସ୍ତ ନର୍ଦ୍ଦମା ହିଁ ସମୁଦ୍ରରେ ପଶୁଛି । ସମୁଦ୍ରକୁ ଆକ୍ରମଣ କରିବାକୁ ମଣିଷ ଯେମିତି ଅହର୍ନିଶ ଚେଷ୍ଟା କରୁଛି । ସମୁଦ୍ରରୁ ଛୋଟବଡ଼ ମାଛ ଓ ଅନ୍ୟାନ୍ୟ ସାମୁଦ୍ରିକ ଜୀବ ଅପର୍ଯ୍ୟାପ୍ତ ପରିମାଣରେ ଧରିବାକୁ ଯାଇ, ମଣିଷ ଅନେକ କିସମର ସାମୁଦ୍ରିକ ଜୈବ ବିବିଧତାକୁ ଧ୍ୱଂସ କରୁଛି । ପରମାଣୁ ଆବର୍ଜନାକୁ ବର୍ଜ୍ୟବସ୍ତୁ ହିସାବରେ ଗଭୀର ସମୁଦ୍ରରେ ପକାଇଛି । ସମୁଦ୍ର ଭିତରୁ ଖଣିଜଦ୍ରବ୍ୟ ଓ ପେଟ୍ରୋଲିୟମ୍‌ତୈଳ ଉତ୍ତୋଳନ କରିବାକୁ ଅଭିଯାନ ଚଳାଇଛି । ଉତ୍ତରମେରୁ ଠାରୁ ଦକ୍ଷିଣମେରୁ ପର୍ଯ୍ୟନ୍ତ ସମୁଦ୍ରକୁ ଜିତିବାକୁ ଅଣ୍ଟାଭିଡି ମଣିଷ ଗର୍ବରେ ଫାଟି ପଡୁଛି । ଏଇ ଅଭିଯାନର କୁପରିଣତି ବିଷୟରେ ପ୍ରସିଦ୍ଧ ଫରାସୀ ଔପନ୍ୟାସିକ ଜ୍ୟୁଲ୍‌ସ ଭର୍ଣ୍ଣ ( Jules Verne) ତାଙ୍କର ବହି 'ଟ୍ୱେଣ୍ଟି ଥାଉଜେଣ୍ଡ ଲିଗ୍‌ସ ଅଣ୍ଡର ଦି ସି' (Twenty thousand Leagues under the Sea)ରେ ନାୟକ କ୍ୟାପ୍‌ଟେନ୍ ନିମୋଙ୍କ ଜରିଆରେ ସତର୍କବାଣୀ ଶୁଣାଇଛନ୍ତି । ସମୁଦ୍ର ମଣିଷକୁ ଅନେକ ଜିନିଷ ଯୋଗାଇ ଆସୁଛି । ଜଣେ ଚାହିଁଲେ ସମୁଦ୍ରରୁ ମିଳିଥିବା ସାମଗ୍ରୀରୁ ସ୍ୱାବଲମ୍ବୀ ହୋଇପାରିବ । ଏହା କେବଳ ଜ୍ୟୁଲ୍‌ସ ଭର୍ଣ୍ଣଙ୍କ କଳ୍ପନା ନୁହେଁ, ଏହା ନିରାଟ ସତ ! କିନ୍ତୁ ସମୁଦ୍ରର ଅସଦୁପଯୋଗ ଅନବରତ ଲାଗି ରହିଛି ।

ରାଚେଲ୍ କାର୍ସନ୍ ଅଶାନ୍ତ ସମୁଦ୍ର ବିଷୟରେ ବର୍ଣ୍ଣନା କରିଛନ୍ତି । ଇଂଲଣ୍ଡ, ଉତ୍ତମାଂଶା ଅନ୍ତରୀପ ଠାରୁ କାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ସେ ଉଠୁଥିବା ଢ଼େଉ ଓ ଅଜାଡି ଦେଉଥିବା ବିଭିନ୍ନ ସମୁଦ୍ର ଓ ମହାସମୁଦ୍ରର ପାଣିକୁ ବୁଝିବା ପାଇଁ ଚେଷ୍ଟା କରିଛନ୍ତି । ପାଣିପାଗର ତଥ୍ୟ ସଂଗ୍ରହ କରିଛନ୍ତି । ସାମୁଦ୍ରିକ ଝଡ ସୃଷ୍ଟି ହୁଏ କେଉଁଠୁ ? ଏତେ ଉଚ୍ଚା ଉଚ୍ଚା ଢ଼େଉ କିପରି ଆସି କୂଳରେ ପିଟି ହୁଏ ? ସେ ସବୁ ଜାଣିବା ପାଇଁ ବିଜ୍ଞାନ ଧୀରେ ଧୀରେ ବିକଶିତ ହୋଇଛି । ଅବଶ୍ୟ ଉପଗ୍ରହରୁ ଛବି ତୋଳିବା ଓ ସାମୁଦ୍ରିକ ତୋଫାନମାନଙ୍କୁ

ନିରୀକ୍ଷଣ କରିବା ଏବେ ସହଜ ହୋଇଛି । କିନ୍ତୁ ଏକଦା, ଏସବୁକୁ ଜାଣିବା କଷ୍ଟକର ବ୍ୟାପାର ହେଉଥିଲା । ଲୋକେ ସତର୍କ ହୋଇପାରୁନଥିଲେ । ମହାବାତ୍ୟା ଆଦି ଆସିଲେ ଜନଜୀବନ ବହୁ ପରିମାଣରେ ନଷ୍ଟ ହେଉଥିଲା । ଏ ପୃଥିବୀରେ ଯେ ପର୍ଯ୍ୟନ୍ତ ପବନ ବୋହୁଥିବ, ଝଡ଼ ତୋଫାନ ମୁଣ୍ଡ ଟେକୁଥିବେ । ସମୁଦ୍ରରେ ପାଣି ଥିଲେ, ମହାବାତ୍ୟା ନିଶ୍ଚିତ ସୃଷ୍ଟି ହେବ । ସମୁଦ୍ରର ଅତଳ ଗଭୀରରେ କେବେ କେମିତି ଭୂମିକମ୍ପ ହେଲେ ସୁନାମୀ ନିଶ୍ଚିତ ସୃଷ୍ଟି ହେବ କିନ୍ତୁ ଅଧିକାଂଶ ସାମୁଦ୍ରିକ ଝଡ ପାଣି ଓ ପବନ ଦ୍ୱାରା ସୃଷ୍ଟି ବୋଲି ରାଚେଲ୍ କାର୍ସନ୍ ବିଶ୍ଳେଷଣ କରିଛନ୍ତି । ଗଭୀର ସମୁଦ୍ରରେ କେତେ ପ୍ରକାରର ଢ଼େଉ ଉଠେ ତାହା କଳ୍ପନା କରିବା ସମ୍ଭବ ନୁହେଁ । କେତେକ ଦିଗଭ୍ରଷ୍ଟ ହୋଇଗଲା ବେଳେ ଆଉ କେତେକ ଭୂମି ପ୍ଲାବିତ ହୋଇଯାଏ । ସମୁଦ୍ରର ଦୃଶ୍ୟ ଯେଉଁମାନେ ନିୟମିତ ଦେଖୁଥାଆନ୍ତି, ଅବାକ୍ ହୋଇଯାଆନ୍ତି ଢ଼େଉମାନଙ୍କର ଦୃଶ୍ୟରାଜିରେ ବିବିଧତା ଦେଖି । ସମୁଦ୍ରରେ ଯାତ୍ରା କରୁଥିବା ନାବିକମାନେ ବେଳେବେଳେ ଶହେ ଫୁଟରୁ ଉର୍ଦ୍ଧ୍ୱ ଉଚ୍ଚତାର ଢ଼େଉ ଦେଖିଛନ୍ତି ବୋଲି ବର୍ଣ୍ଣନା କରିଛନ୍ତି । ସମୁଦ୍ରକୂଳରେ ଥିବା ବତୀ ଘର ଏବଂ ଅନେକ ଅବଜରଭେଟୋରୀ ବା ତଥ୍ୟ ସଂଗ୍ରହ କେନ୍ଦ୍ରମାନଙ୍କରେ ଦୁଇଶହରୁ ତିନିଶହ ଫୁଟ ଉଚ୍ଚର ଢ଼େଉ ଆସି କୂଳରେ ପିଟି ହେବା ଲକ୍ଷ୍ୟ କରିଛନ୍ତି । ସାମୁଦ୍ରିକ ଝଡ଼, ମହାବାତ୍ୟା ଓ ସୁନାମୀର ଇତିହାସ ନିୟମିତ ଭାବେ ଲିପିବଦ୍ଧ କରିବାକୁ ଭୂଗୋଳବିତ୍ ଓ ବୈଜ୍ଞାନିକମାନେ ଚେଷ୍ଟା କରିଛନ୍ତି । ଶ୍ରୀକୃଷ୍ଣଙ୍କ ଦ୍ୱାରକା ନଗରୀ କୁଆଡେ ସମୁଦ୍ର ଗର୍ଭରେ ଏଇଭଳି ଲୀନ ହୋଇ ଯାଇଥିଲା ବୋଲି ପୁରାଣରେ ଲେଖାଯାଇଛି । ୧୭୩୭ ମସିହାରେ ବଙ୍ଗୋପସାଗରରେ ଏକ ମହାବାତ୍ୟା ସୃଷ୍ଟି ହୋଇଥିଲା ଓ ଏହା ତିନିଲକ୍ଷ ଲୋକଙ୍କୁ ମୃତ୍ୟୁ ମଧକୁ ଠେଲି ଦେଇଥିଲା ବୋଲି ଇତିହାସରେ ଲିପିବଦ୍ଧ ହୋଇଛି । ଢ଼େଉ, ପବନ ଓ ସାମୁଦ୍ରିକ ଝଡ ଏବେ ମଧ ରହସ୍ୟମୟ ହୋଇ ରହିଛି ।

ରାଚେଲ୍ କାର୍ସନ୍ ଫ୍ଲୋରିଡା ଉପକୂଳରେ କୋରାଲ୍ ବା ପ୍ରବାଳର ପାହାଡ ସମୁଦ୍ର ଭିତରେ କିପରି ଜନ୍ମ ନେଇଛି ଓ କିପରି କାୟାବିସ୍ତାର କରିଛି ତାହା ସବିଶେଷ ବର୍ଣ୍ଣନା କରିଛନ୍ତି । ମୁଁ ଆଣ୍ଡାମାନ ଉପସାଗରରେ ପ୍ରବାଳ ଦ୍ୱୀପ ଦେଖି ଅବାକ୍ ହୋଇଯାଇଛି । ସେଠାରେ ମୋର ବନ୍ଧୁଜଣକ ଆଗରୁ ଏପରି ଡଙ୍ଗାର ବ୍ୟବସ୍ଥା କରିଥିଲେ ଯାହାର ନିମ୍ନ ଭାଗରେ କାଚଖଞ୍ଜା ଯାଇଛି ଓ ପାଣିର ନିମ୍ନଭାଗରେ କ'ଣ ଅଛି ତାହା ଅକ୍ଳେଶରେ ଦେଖିହେବ । ପ୍ରବାଳ ଦ୍ୱୀପର ଅବସ୍ଥିତି ବହୁତ ଦୂରରେ । ହେନ୍ତାଳ ବଣ ବା ମ୍ୟାଙ୍ଗ୍ରୋଭ ସବୁ ଅତିକ୍ରମ କରିବାକୁ ହେବ କେତେ ଘଣ୍ଟା । ଦ୍ୱୀପର ଅନତି ଦୂରରେ ଦେଖାଯିବ ଏକ ଚମତ୍କାର ନୀଳବର୍ଣ୍ଣର ସମୁଦ୍ର । ଆଲୁଅରେ ଝଲସି ଉଠୁଥିବ । ଆମର ଡଙ୍ଗାଟି ସେଇ ନୀଳାଭ ସମୁଦ୍ର ଉପରେ ଯିବାବେଳେ କାଚ ଦେଇ ତଳେ ରଙ୍ଗ ବେରଙ୍ଗର ପ୍ରବାଳ ସବୁ ଦେଖିହେଲା । ବିଭିନ୍ନ ଆକାର ପ୍ରକାରର । ଅଭୁତପୂର୍ବ ସେ ଦୃଶ୍ୟ । କେତେ ପ୍ରଜାତିର ଓ ରଙ୍ଗର ମାଛ ଖେଳୁଥାନ୍ତି । ପ୍ରବାଳମାନେ ଜୀବନ୍ତ ଓ କାୟାବିସ୍ତାର

କରିବାରେ ଅବିରତ ଚେଷ୍ଟା କରୁଥାଆନ୍ତି । ପ୍ରବାଳ ଦ୍ୱୀପର କୂଳରେ ମୃତ ପ୍ରବାଳମାନଙ୍କର ସ୍ତୁପ । ଏଇ ଦୃଶ୍ୟ ମୁଁ ଫିଲିପାଇନ୍‌ସର ମେରାଣ୍ଡୁକି ଦ୍ୱୀପ ପାଖରେ ଦେଖିଥିଲି । ଏକ ତାମ୍ର ଖଣି ଦ୍ୱାରା ପ୍ରଦୂଷିତ ହୋଇ ପ୍ରବାଳମାନେ ମୃତ ପ୍ରାୟ ଥିଲେ । ଏବେ ପରିବେଶବିତ୍‌ମାନଙ୍କର ଉଦ୍ୟମରେ ପୁଣି ନୂତନ ହୋଇ ଗଢ଼ି ଉଠିଛି ପ୍ରବାଳ ଦ୍ୱୀପ । ହେନ୍ତାଳ ବଣ ଓ ପ୍ରବାଳ ଦ୍ୱୀପ ସବୁ ସମୁଦ୍ରର ଅବଦାନ ମଣିଷ ପ୍ରତି । ଖାଲି ସୌନ୍ଦର୍ଯ୍ୟରେ ନୁହେଁ, ଜୈବବିବିଧତାରେ, ପରିବେଶ ସଂରକ୍ଷଣରେ ମଧ୍ୟ । ପ୍ରବାଳମାନଙ୍କର ସଂଖ୍ୟା ଅନେକ ଓ ଆକାର ପ୍ରକାର ମଧ୍ୟ ଅନେକ । ସେମାନଙ୍କର ରୂପ ଓ ଗଠନରେ ଅସାମାନ୍ୟ ସୌନ୍ଦର୍ଯ୍ୟ ରହିଛି । ପ୍ରବାଳ ଭିତରେ ଅନେକ ପ୍ରକାର ଜଳଜୀବ ବସା ବାନ୍ଧିଥାଆନ୍ତି । ପ୍ରବାଳକୁ ଭକ୍ଷଣ କରନ୍ତି ତାରକା ମାଛ ବା ଷ୍ଟାରଫିସ୍ ମାନେ । ଚୂନର ପ୍ରାଚୀର ତିଆରି ହୁଏ ପ୍ରବାଳ ମରିଗଲା ପରେ । ଜୀବନ ଓ ମୃତ୍ୟୁର ଚକ୍ର ଅନବରତ ଚାଲିଥାଏ ପ୍ରବାଳ ଦ୍ୱୀପରେ । ରାଚେଲ୍ କାର୍ସନ୍ ପ୍ରବାଳ ସହ ସଂହତି ଓ ସହାବସ୍ଥାନ କରିଥିବା ସମସ୍ତ ପ୍ରକାର ସାମୁଦ୍ରିକ ଜୀବମାନଙ୍କର ବିଷୟରେ ଚମତ୍କାର ବର୍ଣ୍ଣନା କରିଛନ୍ତି । ଏସବୁ ଉପଭୋଗ କରିବାକୁ ହେଲେ ଡଙ୍ଗାରେ ନବସି ଅଗଭୀର ସମୁଦ୍ର ଭିତରେ ମୁଖା ପିନ୍ଧି ସନ୍ତରଣ କରିବାର ଅଛି । ସମୁଦ୍ରଘୋଡା ବି କୁଆଡେ ଦେଖିବାର ସୁଯୋଗ ଅଛି ବୋଲି ସେ କହିଛନ୍ତି । ସମୁଦ୍ର ଘୋଡାର ଜୀବନ ଓ ପ୍ରଜନନକୁ ନେଇ ଅନେକ ରହସ୍ୟ ଏବେ ଲୋକଲୋଚନକୁ ଆସିଛି । ପ୍ରବାଳ ଦ୍ୱୀପ ଯେମିତି ଆକର୍ଷଣୀୟ, ହେନ୍ତାଳବଣ ସେମିତି ରହସ୍ୟମୟ ବୋଲି ରାଚେଲ କାର୍ସନ୍ ବର୍ଣ୍ଣନା କରିଛନ୍ତି । ହେନ୍ତାଳବଣ ସବୁ ଅନେକ କାରଣ ହେତୁ ଧ୍ୱଂସ ପାଇଛି ସତ, ପୁଣି ତା'ର ନୂତନ ସୃଷ୍ଟି ପାଇଁ ସବୁପ୍ରକାର ଚେଷ୍ଟା ଚାଲିଛି । ଫିଲିପାଇନ୍‌ସ୍, ସୁନ୍ଦରବନ ଓ ଆମର ଭିତର କନିକାରେ ଏ ପ୍ରକାର ଚେଷ୍ଟା ମୁଁ ଦେଖିଛି । ଓଡ଼ିଶାର ବିଶାଳ ହେନ୍ତାଳବଣ ଧ୍ୱଂସ ପାଉଛି କ୍ରମାଗତ ଭାବେ । ଏବେ ଏହାର ସଂରକ୍ଷଣ ଓ ବିସ୍ତାର ପାଇଁ ମଧ୍ୟ ପ୍ରୟାସ ଜାରି ରହିଛି । ଶତାବ୍ଦୀ ଶତାବ୍ଦୀ ଧରି ବଞ୍ଚି ରହିଥିବା ପ୍ରବାଳ ଓ ହେନ୍ତାଳବଣର ଭବିଷ୍ୟତ ଅନ୍ଧକାରମୟ ବୋଲି ରାଚେଲ କାର୍ସନ୍ ସତର୍କ ବାଣୀ ଶୁଣାଇଛନ୍ତି । କିନ୍ତୁ ମଣିଷ ଅପେକ୍ଷା ସମୁଦ୍ର ଏହାର ଅସଲ ସଂରକ୍ଷଣ କରିପାରିବ ବୋଲି ସେ ଆଶା ଶୁଣାଉଛନ୍ତି ।

ସମୁଦ୍ର ଓ ମଣିଷ ଯେମିତି ସବୁବେଳେ ଅବିଚ୍ଛିନ୍ନ-ଏକଥା ରାଚେଲ୍ କାର୍ସନ୍ ଦୃଢ଼ ଭାବେ କହିଛନ୍ତି । ସମୁଦ୍ର କୂଳରେ ବସିଲେ ଅତୀତ ଓ ଭବିଷ୍ୟତର ପ୍ରତିଧ୍ୱନି ଶୁଣିହୁଏ । ସମୟର ସ୍ରୋତକୁ ଚିହ୍ନି ହୁଏ । ସମୁଦ୍ର ସ୍ରୋତ ସହ ଜୀବନ ସ୍ରୋତ ଯେମିତି ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ । ସମୁଦ୍ର ବେଳାଭୂମି ଅବିରତ ବଦଳୁ ଥାଏ ଯେମିତି ଜୀବନର ବିନ୍ୟାସର ପରିବର୍ତ୍ତନ ସଦାସର୍ବଦା ଲାଗି ରହିଥାଏ । ସମୁଦ୍ର ନୂତନ ଉପକୂଳ ସୃଷ୍ଟି କରୁଥାଏ, ସବୁବେଳେ ଯେଉଁଠି ଅନେକ ଜୀବ ବସା ବାନ୍ଧନ୍ତି । ଛୋଟ ବଡ଼ ଅନେକ ସାମୁଦ୍ରିକ

ଜୀବଙ୍କର ଅସ୍ତିତ୍ୱ ପଛରେ ଏକ ମହାଜାଗତିକ ଶକ୍ତିର ଆଭାସ ରହିଛି । ରହିଛି ସଜୀବ ପୃଥିବୀର ରହସ୍ୟ । ସୃଷ୍ଟି ଏବଂ ବିଲୟର ନୃତ୍ୟ କିପରି ଅହରହ ସମସ୍ତଙ୍କୁ ଆକର୍ଷିତ କରିଛି ତାହା ସମୁଦ୍ର ବେଳାଭୂମିରେ ଦଣ୍ଡକ ପାଇଁ ବସିପଡିଲେ ଜଣାପଡିବ । ବୈଜ୍ଞାନିକ ଓ ସମ୍ବେଦନଶୀଳ ପରିବେଶବିତ୍ ଶ୍ରୀମତୀ ରାଚେଲ୍ କାର୍ସନ୍ ଏହା ତାଙ୍କର ଅଦ୍ୱିତୀୟ ଲେଖନୀରେ ଆମ ସମସ୍ତଙ୍କ ପାଇଁ ଉପସ୍ଥାପନା କରିଛନ୍ତି ।

□□□

## ୪୭

# ଜଣେ ସହଯାତ୍ରୀଙ୍କ ବିଷୟରେ

ଏ ଯାତ୍ରାର ଶେଷ ନାହିଁ । କେବେ ନଥିଲା କି ଭବିଷ୍ୟତରେ ବି ହେବ ନାହିଁ । ମଣିଷ ଆଉ ଗୋଟିଏ ମଣିଷକୁ ଖୋଜି ଖୋଜି ଆବିଷ୍କାର କରିବ ଏବଂ ଆଉ ଏକ ସମାଜର ଛନ୍ଦ ଏବଂ ଚିତ୍ର ବିନ୍ୟାସକୁ ବୁଝିବ ଓ ସମସ୍ତଙ୍କୁ ଆପଣାର କରିବ, ଏହା ଯୁଗଯୁଗ ଧରି ଚାଲି ଆସିଛି । ଏଇଥିପାଇଁ ପରିବ୍ରାଜକର ଆତ୍ମଲିପି ସବୁବେଳେ ଜୀବନ୍ତ ଓ ପ୍ରାଣସ୍ପର୍ଶୀ ହୋଇଯାଇଛି । ଜଣେ ପରିବ୍ରାଜକର ଯାତ୍ରାପଥ ଅନୁସରଣ କରି କେତେ ଯେ ଅନ୍ୟ ପରିବ୍ରାଜକମାନେ ଅନୁଭୂତିକୁ ଅଙ୍ଗେ ଲିଭାଇବାକୁ ଚେଷ୍ଟା କରୁଛନ୍ତି ତାହା କଳ୍ପନା କରିବା ସମ୍ଭବ ନୁହେଁ । ଅବଶ୍ୟ ଏଇ ଯାତ୍ରା ସବୁବେଳେ ଏକ ଆହ୍ୱାନ ହୋଇ ଯାଇଥାଏ । ମୋତେ ଯଦି ସୁଯୋଗ ମିଳନ୍ତା ମୁଁ କେଉଁମାନଙ୍କର ମହାନ୍ ଯାତ୍ରାକୁ ଅନୁସରଣ କରନ୍ତି, ତାହାର ଏକ ତାଲିକା କରନ୍ତି । ଯଦିଓ ଏ ଜୀବନରେ ସେ ସବୁ ସମ୍ଭବ ହେବନାହିଁ, ତେବେ ଅନ୍ୟ କେତେକ ଜୀବନକାଳ ବି କାଟିବାକୁ ମୁଁ ପ୍ରସ୍ତୁତ ଅଛି ବୋଲି ଧରି ନେଇଛି । ମୁଁ ହୁଏନ୍‌ସାଂ ବା ମାର୍କୋପୋଲୋ କ'ଣ ହେବାକୁ ଋହିଁଛି ? ମୁଁ ଜଣେ କ'ଣ ସ୍କଲାର ଜିପ୍‌ସୀ (Scholar Gypsy) ହେବାକୁ ମନସ୍ଥ କରିଛି ? ଅଥବା ଶଙ୍କରାଚାର୍ଯ୍ୟଙ୍କ ଭଳି ଆଧାତ୍ମିକ ଅଭିଯାନରେ ବାହାରି ପଡିଛି ? ଆଦିବାସୀମାନଙ୍କର ଦୂରଦୂରାନ୍ତରରେ ଓ ଅପହଞ୍ଚ ଅଞ୍ଚଳରେ ଥିବା ଗାଁମାନଙ୍କୁ ଯିବା ଯେମିତି ମୋ ପାଇଁ ଏକ ଦୁଃସାହସିକ, ବୌଦ୍ଧିକ ଓ ଆଧାତ୍ମିକ ଯାତ୍ରା ହୋଇଯାଇଛି । ମୋ ଦୃଷ୍ଟିରେ ସବୁଠାରୁ ଏଇଭଳି ଯାତ୍ରା କରିଥିବା ମହାନ୍ ମଣିଷମାନଙ୍କର ତାଲିକା କରାଗଲେ, ସେଥିରେ ଆଗ ଧାଡିରେ ରହିବେ ଭେରିଅର୍ ଏଲ୍‌ୱିନ୍(Verrier Elwin) । ଭାରତର ଆଦିମ ଅଧିବାସୀମାନଙ୍କ ଗହଣରେ ସେ ରହି ଯେଉଁ ପୁସ୍ତକମାନ ଲେଖିଛନ୍ତି, ତାହା କେବଳ ନୃତତ୍ତ୍ୱ ସହ ସଂଶ୍ଳିଷ୍ଟ ନୁହେଁ, ତାହା ଆଦିବାସୀଙ୍କର ସାହିତ୍ୟ, ସଂସ୍କୃତି, ଧର୍ମ ଓ ପରିବେଶ ଉପରେ ଅତି ଅନ୍ତରଙ୍ଗ ଭାବେ ଆଧାରିତ । ସେ ମଧ ଭାରତର ଅସଂଖ୍ୟ ଆଦିବାସୀ ଜାତି ବଣ୍ଡା, ଗଣ୍ଡ, ମାରିଆ, ମୁରି ଗଣ୍ଡ ଏବଂ ବିରହୋରମାନଙ୍କ ଭିତରେ ରହି ସେମାନଙ୍କର ଜୀବନଧାରାକୁ ଲିପିବଦ୍ଧ କରିବାକୁ ପ୍ରୟାସ କରିଛନ୍ତି । ତାଙ୍କର ଲେଖନୀରୁ ସୃଷ୍ଟି ହୋଇଛି ଅନେକ ପୁସ୍ତକ । ଏଥିରେ ରହିଛି କାବ୍ୟିକ ଛଟା ଓ ବିଭିନ୍ନ ବର୍ଣ୍ଣନାର ରଙ୍ଗବିଭବ । "ଦି ୱାର୍ଲ୍ଡ ଅଫ

ଭେରିଅର ଏଲ୍‌ୱିନ୍" (The World of Verrier Elwin) ଏ ଲେଖାମାନଙ୍କର ଏକ ସଂକ୍ଷିପ୍ତ ସମାହାର । ଯେଉଁ ଆଦିବାସୀମାନଙ୍କ ସହ ସେ ସାମିଲ୍ ହୋଇଛନ୍ତି, ତାଙ୍କ ଜୀବନ କଥା କେବଳ ନୁହେଁ, ଲୋକ କଥା ଓ ଲୋକ ଗୀତ ମଧ୍ୟ ସଂଗ୍ରହ କରିବା ସଙ୍ଗେ ସେମାନଙ୍କର ଇଂରେଜୀ ଅନୁବାଦ ମଧ୍ୟ କରିଛନ୍ତି । ପୃଥିବୀର ପିଲାଦିନ (When the World was Young), ଓଡ଼ିଶାର ଲୋକଙ୍କ କଥା (Folk Tales of Orissa), ଛତିଶଗଡ଼ର ଲୋକଗୀତ (Folk Songs of Chhatisgarh ) ଆଦି ପୁସ୍ତକ ବିଶ୍ୱ ସାହିତ୍ୟରେ ଅଦ୍ୱିତୀୟ ସ୍ଥାନ ଅଧିକାର କରିଛି ।

ଓଡ଼ିଶାର ସୀମାନ୍ତରେ ଛତିଶଗଡ଼ । ସତୁରୀ ଦଶକରେ ଛତିଶଗଡ଼ ଅଞ୍ଚଳକୁ ମୁଁ ପ୍ରଥମେ ବୁଲିବାକୁ ଯାଇଥିଲି ଓ ସେ ଅଞ୍ଚଳର ଜୀବନର ମାନ, ସାଧାରଣ ଲୋକଙ୍କ ଚାଲିଚଳନ, ଭାଷା, ଗୀତ ଓ ନୃତ୍ୟ ଆଦି ସହ ପରିଚିତ ହୋଇଥିଲି । ଛତିଶଗଡ଼ ଭାଷାର ସ୍ୱାତନ୍ତ୍ର୍ୟ ରହିଛି । ମୋର ମନେ ଅଛି ଯେ ପିଲାଦିନେ ତାଳଚେରର କୋଇଲାଖଣିରେ କାମ କରୁଥିବା ବିଳାସପୁର ଅଞ୍ଚଳର ମହିଳାମାନେ ଗୀତ, ନାଚ କରନ୍ତି ଆସି ଆମ ସହରରେ । ସେମାନଙ୍କର ବେଶ ଓ ନୃତ୍ୟର ଢ଼ଙ୍ଗରେ ଥାଏ ଛନ୍ଦ । ଗୀତ ସବୁ ଲୋକକଥା ଓ କାହାଣୀରେ ପରିପୂର୍ଣ୍ଣ ବୋଲି ମୁଁ ଜାଣିବାକୁ ପାଇଥିଲି । ଏଣୁ ଛତିଶଗଡ଼ ଅଞ୍ଚଳରେ ସେସବୁ ସହ ପରିଚିତ ହେବାକୁ ଆଗ୍ରହ ଜନ୍ମିବା ସ୍ୱାଭାବିକ । ଛତିଶଗଡ଼ର ଇତିହାସର ପୃଷ୍ଠା ଉନ୍ମୋଚନ କରିଲେ ସେଥିରେ ରାମାୟଣ ଓ ମହାଭାରତ ଭଳି ପୁରାଣର ସତ୍ତା ମିଳିଥାଏ । କିନ୍ତୁ ୪ର୍ଥ ଶତାବ୍ଦୀରୁ ଲିଖିତ ଇତିହାସକୁ ପଢ଼ିଲେ ଏହା ଦକ୍ଷିଣ କୋଶଳ ଗୋଷ୍ଠୀ ନାମରେ ପରିଚିତ ବୋଲି ଜଣାପଡିଥାଏ । ୧୭୫୮ ମସିହାରେ ଏ ଅଞ୍ଚଳ ମରାଠା ମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ମରାଠା ମାନଙ୍କ ଲୁଣ୍ଠନ ଓ ଅତ୍ୟାଚାରର ସୀମା ଟପିଥିଲା । ଗଣ୍ଡ ଆଦିବାସୀମାନେ ଅତିଷ୍ଠ ହୋଇ ମରାଠାମାନଙ୍କର ଘୋର ବିରୋଧ କରିଥିଲେ । କେଉଁଠି କେଉଁଠି ଯୁଦ୍ଧ ମଧ୍ୟ ହୋଇଥିଲା । ୧୮୧୮ ମସିହାରେ ଛତିଶଗଡ଼ ଅଞ୍ଚଳ ବ୍ରିଟିଶ ଶାସନର ଅଧୀନକୁ ଆସିଥିଲା । ରାୟପୁର ବ୍ରିଟିଶ ଶାସନର ମୁଖ୍ୟକେନ୍ଦ୍ର ହୋଇଥିଲା । ବ୍ରିଟିଶ ଶାସକମାନେ ଜମିଜମା ଓ ପ୍ରଶାସନ ବିଷୟରେ କିଛି କିଛି ସଂସ୍କାର ଆଣିଥିଲେ । କିନ୍ତୁ ଆଦିବାସୀମାନଙ୍କର ବିଦ୍ରୋହ ସବୁବେଳେ ଲାଗିରହିଥିଲା ଓ ବସ୍ତର ଅଞ୍ଚଳ ଏହାର ମୁଖ୍ୟକେନ୍ଦ୍ର ଥିଲା । ବୀର ନାରାୟଣ ସିଂ ଏ ବିଦ୍ରୋହରେ ପ୍ରଥମ ଶହୀଦ୍ ହୋଇ ଇତିହାସ ସୃଷ୍ଟି କରିଥିଲେ । ବିଭିନ୍ନ ସମୟରେ ଯେଉଁ ବିଦ୍ରୋହ ସୃଷ୍ଟି ହୋଇଥିଲା, ତାହା ଭିତରେ ଦୀର୍ଘତମ ଥିଲା ମାରିଆ ବିଦ୍ରୋହ ଯାହା ୧୮୪୬ ମସିହାରୁ ୧୮୬୩ ମସିହା ପର୍ଯ୍ୟନ୍ତ ଲାଗିଥିଲା । ୧୮୫୬ରୁ ୧୮୫୭ ମସିହା ପର୍ଯ୍ୟନ୍ତ ବିଦ୍ରୋହ ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅଂଶ ବିଶେଷ ଥିଲା । ୩୬ଟି ଗଡ଼ ବା ଦୁର୍ଗକୁ ନେଇ ଛତିଶଗଡ଼ ରୂପ ନେଇଥିଲା ଓ ମଝିରେ ବୋହୁଥିଲା ଶିବନାଥ ନଦୀ । ଏଇସବୁ ଦୁର୍ଗମାନଙ୍କରେ ଭରି ରହିଥିଲେ ଅନେକ ଜାତିର ଆଦିବାସୀ ଯେଉଁମାନଙ୍କ ଭିତରେ ମୁଖ୍ୟ ଥିଲେ ଗଣ୍ଡ, ଅବୁଜ

ମାରିଆ, ମୁରିଆ, ନାଗେଶିଆ, ପାହାଡି ବୋଲୁଆ । ଛୋଟ ନାଗପୁର ଅଞ୍ଚଳରୁ ଓରାଓଁ, ମାଝୀ ଓ ବିରହୋରମାନେ ମଧ୍ୟ ଏ ଅଞ୍ଚଳକୁ ଆସିଥିଲେ ଅନେକ ବର୍ଷରୁ । ବଣଜଙ୍ଗଲ, ନଦୀ ନାଳ, ପାହାଡ଼ ପର୍ବତ ଓ ବିଭିନ୍ନ ପଶୁପକ୍ଷୀ ମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଛତିଶଗଡ଼ ଯେ ଅତୁଳନୀୟ ଶୋଭାର ଭଣ୍ଡାର, ଏହାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଋରିଆଡେ ଶାଳ, ମହୁଲର ଜଙ୍ଗଲ । ଆଉ ମଧ୍ୟ ଅଛି ଋର, କେନ୍ଦୁ, ଆମ୍ବ, ହରିଡ଼ା, ବାହାଡ଼ା, ଅଁଳା ଆଦି ଅନେକ କିସମର ଗଛମାନ । ଏଇଥିପାଇଁ ଛତିଶଗଡ଼ରେ ଆଦିବାସୀ ନିଜକୁ କେବେହେଲେ ଗରିବ ମନେ କରେ ନାହିଁ । ଯଦିଓ ଅନେକ ଯୁଗରୁ ସାହୁକାର ଓ ମହାଜନମାନେ ଏ ଅଞ୍ଚଳକୁ ପ୍ରବେଶ କରିଛନ୍ତି, ତଥାପି ଆଦିବାସୀ ଜଙ୍ଗଲଜାତ ଦ୍ରବ୍ୟମାନଙ୍କ ବିକାକିଣାରୁ କିଛି କିଛି ଆୟ କରି ଆସିଛି । ବାହାରର ସଭ୍ୟତା ଅବଶ୍ୟ ଏ ଅଞ୍ଚଳରେ ପଶିଆସିଛି ସତ, ଏ ଅଞ୍ଚଳର ସଂସ୍କୃତି, ନୃତ୍ୟ, ଗୀତ, କଥା ଓ କାହାଣୀ ଆଜି ପର୍ଯ୍ୟନ୍ତ ଜୀବିତ ରହିଛି ।

ଭେରିଅର ଏଲ୍ୱିନ୍ ପ୍ରଥମେ ଛତିଶଗଡ଼କୁ ଆସିଛନ୍ତି ୧୯୩୨ ମସିହାରେ ଓ ଘଞ୍ଚ ଜଙ୍ଗଲରେ ରହି କିଛି ଦିନ କାଟିଛନ୍ତି । ତା'ପରେ ଅନେକବାର ଏ ଅଞ୍ଚଳକୁ ଆସିଛନ୍ତି । ପାଦରେ ଋଲି ଋଲି ବିଭିନ୍ନ ଅଞ୍ଚଳକୁ ଯାଇଛନ୍ତି । ସାଙ୍ଗରେ ଅଛନ୍ତି ସୁନ୍ଦର ଲାଲ୍ ଯିଏ ସ୍ଥାନୀୟ ଭାଷା ଜାଣିଛନ୍ତି ଓ ଭୂଗୋଳ ମଧ୍ୟ । ଏଇଥିପାଇଁ ଛତିଶଗଡ଼ର ଲୋକଗୀତ ସବୁ ସଂଗ୍ରହ କରିବା ବିଶେଷ ସହଜ ହୋଇଛି । ଛତିଶଗଡ଼ ଯାତ୍ରାରେ ଅନେକ ସମୟରେ ସାଥୀ ହୋଇଛନ୍ତି ଶାମ୍ରାଓ ହିଭାଲେ ଏବଂ ଶ୍ରୀମତୀ ଏଲ୍ୱିନ୍ । ଲୋକଗୀତମାନଙ୍କ ସହ ପରିଚିତ ହୋଉଛନ୍ତି ଏମାନଙ୍କ ଦ୍ୱାରା । ଭେରିଅର୍ ଏଲ୍ୱିନ୍ ଯେଉଁ ଲୋକଗୀତ ଗୁଡିକୁ ସଂଗ୍ରହ କରିଛନ୍ତି ସେଥିରେ ଅଛି ପିଲାଟିଏ ଜନ୍ମହେବା ବେଳର ଗୀତ, ଭଲ ପାଇବାର ଗୀତ, ସ୍ୱପ୍ନ ଦେଖିବାର ଗୀତ । ଲୋକଗୀତମାନଙ୍କରେ ସ୍ଥାନ ପାଇଛି ମେଘ ଓ ପୃଥିବୀର କଥା ଓ ପ୍ରେମର କାହାଣୀ । ଅବଶ୍ୟ ଅଛି ବିବାହ ଓ ଗୃହସ୍ଥ ଜୀବନର କାହାଣୀ । ଲୋକଗୀତ ମାନଙ୍କରେ ସ୍ଥାନ ପାଇଛି ଶିକାର କାହାଣୀ ଓ ପଶୁପକ୍ଷୀଙ୍କ କୋଳାହଳ । ଆହୁରି ମଧ୍ୟ ରହିଛି ଦୁଃଖ ଦରଦର ଗୀତ ସବୁ । ଜଣେ ଯଦି ପ୍ରକୃତରେ କବି ହୋଇ ନଥିବ, ଏ ଲୋକଗୀତମାନଙ୍କ ଭିତରେ ଯେଉଁ ଛନ୍ଦ ଓ ସଂଗୀତ ଅଛି, ଲୋକ କଥାମାନଙ୍କର ଆଭାସ ରହିଛି ତାହାକୁ କବିତାରେ ରୂପାନ୍ତର କରିବା ଅସମ୍ଭବ । ଏଇଥିପାଇଁ ଭେରିଅର୍ ଏଲ୍ୱିନ୍‌କୁ ଜଣେ କବି ହିସାବରେ ଗ୍ରହଣ କରିବା ଆଦୌ ଅଯୌକ୍ତିକ ନୁହେଁ । ତାଙ୍କର ଏ ଲୋକଗୀତ ସଞ୍ଚୟନରୁ କିୟଦଂଶ ଉଦ୍ଧାର କରିବାର ଆବଶ୍ୟକତା ମୁଁ ନିଶ୍ଚୟ ଅନୁଭବ କରୁଛି ।

"I went to the Garden
To find my desire
I reached

The Mango grove
I Wondered
Among the tall Bamboos
To find my desire
I went to the garden (Assignation)
"Sweet – Smelling earth
Where grows grows quickly
Beneath storm and cloud
I drove my plough
The rain came in torrents
My earth was fertile
My plough was strong
Is there any beauty
To compare with the ripe harvest? (The Earth)

ସେ ଦିନ ବିରହୋରମାନଙ୍କ ଗାଁରେ କିଛି ସମୟ କାଟିବାକୁ ସୁଯୋଗ ମିଳିଥିଲା । ଏମାନେ ଯାଯାବର ଭଳି ଜୀବନ କାଟୁଥିଲେ ଓ ମାଙ୍କଡ ଖାଇବା ପାଇଁ ଜଙ୍ଗଲରେ ଜାଲ ବିଛାଉଥିଲେ । ମଣିଷ ସଭ୍ୟତା ଠାରୁ ଦୂରରେ ରହି ସେମାନେ ବଣମଣିଷ ହୋଇ ରହିବାକୁ ବେଶି ଭଲ ପାଉଥିଲେ । ଛତିଶଗଡ଼, ଝାଡଖଣ୍ଡ ଓ ଓଡ଼ିଶାର ସୀମାକୁ ଲାଗି ଏମାନଙ୍କର ପୃଥିବୀ । ଏମାନଙ୍କର ଲୋକଗୀତ ଓ ନୃତ୍ୟରେ ରହିଥାଏ ନୂତନତ୍ୱ । ଭେରିଅର୍ ଏଲ୍‌ଡ୍ୱିନ୍‌ଙ୍କ ଲୋକଗୀତ ସଞ୍ଚୟନ ସବୁ ମୋର ମନେ ପଡୁଥିଲା ଏମାନଙ୍କୁ ଦେଖି । ମୁଁ ଜାଣେ ଏମାନେ ଧୀରେ ଧୀରେ ବଦଳୁଛନ୍ତି । ବଣ ମଣିଷ ଭଳି ବଣରେ ନବୁଲି ଗାଁ ସବୁ ବସାଉଛନ୍ତି । ଜମିରେ ଚାଷ କରିବା ପାଇଁ ଚାହୁଁଛନ୍ତି । ମାଙ୍କଡ ଆଉ ଧରିବାକୁ ମନ ବଳାଉ ନାହାନ୍ତି । କିନ୍ତୁ ଲୋକଗୀତ ସବୁ ଏବେ ମଧ ବଞ୍ଚି ରହିଛି ଏମାନଙ୍କ ଭିତରେ ଓ ଶାଳ ଏବଂ ମହୁଲ ଗଛ, ଆକାଶ ଓ ମେଘ, ନାନା ପ୍ରକାରର ଫୁଲ ଓ ଫଳ ଆଣି ଦେଇଛି ନୂତନ ଅର୍ଥ, ନୂଆ ନୂଆ ସୁଆଦ ।

❑ ❑ ❑

## ୪୮

# ଆଉ ଜଣେ ସହଯାତ୍ରୀଙ୍କ ବିଷୟରେ...

ଆଗକୁ ଆଗକୁ ଚାଲୁଥିବା ମଣିଷର ଲକ୍ଷ୍ୟ କ'ଣ ? ଏ ସବୁ ବିଷୟରେ ଅନେକ ଜ୍ଞାନୀ, ମୁନି, ଦାର୍ଶନିକ ଓ ଧର୍ମଯାଜକ ନାନାମତ ପୋଷଣ କରିଛନ୍ତି ବୋଲି ବିଭିନ୍ନ ଧର୍ମଶାସ୍ତ୍ର ଓ ଦର୍ଶନ ପୁସ୍ତକରେ ଉଲ୍ଲେଖିତ ହୋଇଛି । କିଏ ମହାନିର୍ବାଣ କଥା କହିଛି ତ ଆଉ କିଏ ଆନନ୍ଦପ୍ରାପ୍ତିର କଥା କହିଛି । ଆଉ କିଏ ଆଧ୍ୟାତ୍ମିକ ଅନ୍ତଃଦୃଷ୍ଟି କଥା କହିଛି ତ ଆଉ କିଏ ଦୈହିକ ଚେତନା କଥା କହିଛି । କିନ୍ତୁ ସବୁ ଶରୀର ଓ ମନର କଥା ନିଶ୍ଚିତ । ଏ ଭିତରେ ଯେମିତି ଏକ ଅଭିନବ ଦ୍ୱୈତବାଦ ସମ୍ପର୍କ ସ୍ଥାପନ କରିଛି । ପର୍ବତାରୋହଣ ସମୟରେ ଏଇ ଦ୍ୱୈତବାଦର ଯେମିତି ସମାପ୍ତି ହୋଇଯାଏ । ଶରୀର ଓ ମନ ଏକାକାର ହୋଇ ଏକ ନବଚେତନା ସୃଷ୍ଟି ହୁଏ । ପର୍ବତର ଶିଖରରେ ପହଞ୍ଚିଲା ପରେ ଯେମିତି ଏଇ ନବଚେତନା ଏକ ଆଧ୍ୟାତ୍ମିକ ରୂପ ନେଇଥାଏ । କିନ୍ତୁ ପର୍ବତାରୋହଣ କରୁଥିବା ମଣିଷମାନେ ଯଦି ଏକାଠି ହୁଅନ୍ତି, ସେମାନଙ୍କର ମଣିଷ ସୁଲଭ ଦୁର୍ବଳତା ପୁଣିଥରେ ଜନ୍ମନିଏ । ଏଇକଥା ଜର୍ମାନୀର ଅନ୍ୟତମ ଶ୍ରେଷ୍ଠ ଔପନ୍ୟାସିକ ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ଦି ମ୍ୟାଜିକ୍ ମାଉଣ୍ଟେନ୍' (The Magic Mountain)ରେ ବର୍ଣ୍ଣନା କରିଛନ୍ତି । ମଣିଷ କଦାପି ଭଗବାନ ହୁଏ ନାହିଁ ବା ପଶୁ ହୁଏନାହିଁ । ମଣିଷ ତାହାର ମଣିଷ ପଣିଆ ନେଇ ନିଜର ଜୀବନଟି କାଟି ଦେଇଥାଏ । କିନ୍ତୁ ବେଳେବେଳେ ସାକ୍ଷାତ ହୋଇଯାଏ କେତେଜଣ ମଣିଷଙ୍କ ସହ ଯେଉଁମାନେ ଶରୀର, ମନ ଓ ଆଧ୍ୟାତ୍ମିକତାର ପ୍ରହେଳିକାମାନଙ୍କୁ ବୁଝିବାକୁ ଚେଷ୍ଟା କରୁଛନ୍ତି । ସାରା ପୃଥିବୀ ବିଭିନ୍ନ ମତବାଦରେ ଭରିଯାଇଛି ସତ ତଥାପି ଅନେକ ପ୍ରଶ୍ନର ଉତ୍ତର ଏ ପର୍ଯ୍ୟନ୍ତ ମଣିଷକୁ ମିଳିନାହିଁ । ଉତ୍ତର ଅପେକ୍ଷାରେ ଥିବା ଏଇ ମଣିଷମାନଙ୍କ ସହ ବାର୍ତ୍ତାଳାପ କରିବାକୁ ସୁଯୋଗ ଖୋଜିବାକୁ ପଡେ । ସହଯାତ୍ରୀମାନଙ୍କ ସହ ଏଇ ବାର୍ତ୍ତାଳାପ ଦିଗଭ୍ରଷ୍ଟ ଯାତ୍ରୀଙ୍କୁ ଅସଲବାଟକୁ ଫେରାଇଆଣେ ।

ପ୍ରଫେସର୍ ଭଗବତ ପ୍ରସାଦ ରଥଙ୍କୁ ପ୍ରଥମ ସାକ୍ଷାତରୁ ହିଁ ଜଣେ ଦୀର୍ଘପଥର ସହଯାତ୍ରୀ ବୋଲି ମୁଁ ଧରି ନେଇଛି । ରାଜନୀତିରୁ ଅଧ୍ୟାପନା ଓ ତତ୍‌ସଂଲଗ୍ନ ବୌଦ୍ଧିକ ଅନୁସନ୍ଧିତ୍ସା ଯେମିତି ତାଙ୍କର ଅବାରିତ ରହିଛି । ୧୯୮୦ ମସିହାରେ ତାଙ୍କ ସହ ପ୍ରଥମ ପରିଚୟ । ଜଣେ ସଂଗ୍ରାମୀ ହିସାବରେ ସେ ଆଜି ସାରା ଭାରତରେ ପରିଚିତ । ମୁଁ

ଧରିନେଇଛି ଯେ ସେ ମୋ ଭଳି ଜଣେ ଦୂରଗାମୀ ଯାତ୍ରୀ । ଅଟକି ନାହାନ୍ତି କେବେହେଲେ । ବାହ୍ୟ ଆକର୍ଷଣରେ ପ୍ରଲୋଭିତ ହୋଇନାହାନ୍ତି । ସମ୍ମାନ ଓ ଲୋକପ୍ରିୟତା ଅର୍ଜନ କରିବାକୁ କେବେହେଲେ ଚେଷ୍ଟା କରିନାହାନ୍ତି । ନିଜ ସ୍ଥାନ ଛାଡି ଅନ୍ୟତ୍ର ପଳାୟନ କରିନାହାନ୍ତି ସୁଖ ସ୍ୱାଛନ୍ଦ୍ୟ ଓ ସୁରକ୍ଷା ପାଇଁ । ରାୟଗଡ଼ା ଭଳି ଛୋଟ ସହର ଭିତରେ ରହି ମଧ୍ୟ, ସେ ଯେମିତି ଅନନ୍ତ ପୃଥିବୀ ଓ ବିଶାଳ ଜ୍ଞାନଭଣ୍ଡାରକୁ ଆପଣାର କରିବାକୁ ଚାହିଁଛନ୍ତି । ଛୋଟ ଘରଟିଏ । ଠିକ୍ ଆଶ୍ରମ ଭଳି । ଘରିପାଖେ ବିଭିନ୍ନ ଫଳଫୁଲ ବଗିଚା । ବିରାଟ ଲାଇବ୍ରେରୀ । ପଢ଼ିବା, ଲେଖିବା ଓ ବୌଦ୍ଧିକତାର ସନ୍ଧାନରେ ନିଜକୁ ଗୋଟାପଣେ ଉତ୍ସର୍ଗ କରିବାର ବାତାବରଣ । କେବେକେମିତି ସମୟ ଦେଖି ମୁଁ ଅଟକି ଯାଏ ତାଙ୍କ ପାଖରେ ଓ ଲାଇବ୍ରେରୀ ଆଡକୁ ଆଖି ପକାଏ । କୌଣସି ଲେଖକଙ୍କ ବିଷୟରେ ସୂଚନା ବା ପୁସ୍ତକର ଆବଶ୍ୟକତା ପଡିଲେ ସେ ଆଗେଇ ଆସନ୍ତି ସାହାଯ୍ୟ କରିବାକୁ । ବହି ପାଖରେ ଥିଲେ ମୁକ୍ତହସ୍ତରେ ଦେଇ ଦିଅନ୍ତି । ନଚେତ୍ ବହିର ରେଫରେନ୍ସ ଦିଅନ୍ତି । ବହିଟି ପଢ଼ିଥିଲେ ତା'ଉପରେ ଆଲୋଚନା କରି ଦିଗଦର୍ଶନ ଦିଅନ୍ତି । ବାମପନ୍ଥୀ ମତବାଦ ହେଉ ବା ଦକ୍ଷିଣପନ୍ଥୀ ଭାବଧାରା ହେଉ, ସେ ଯେମିତି ସବୁକିଛି ଏକ ନିର୍ଦ୍ଦିଷ୍ଟ ବୌଦ୍ଧିକ ଦୃଷ୍ଟିକୋଣରୁ ବିଚାର କରନ୍ତି । ମୁଁ ଅବାକ୍ ହୁଏ ଯେ ତାଙ୍କ ଭଳି ଜଣେ ମଣିଷ କାହିଁକି ମୁଖ୍ୟସ୍ରୋତକୁ ଆସୁନାହାନ୍ତି ଓ ନିଜର ଚିନ୍ତାଧାରା ସାଧାରଣ ଜନତାଙ୍କ ସମ୍ମୁଖରେ ପ୍ରକଟ କରୁନାହାନ୍ତି । ସେ ଚାହିଁଲେ ଅନେକଙ୍କୁ ପ୍ରେରଣା ଦେଇପାରନ୍ତେ । ସେ ଏବେ ବିଶେଷ ଲେଖାଲେଖି କରୁନାହାନ୍ତି । ଏହା ପୂର୍ବରୁ ଗାନ୍ଧୀବାଦୀ ପତ୍ରିକା 'ଦି ଭିଜିଲ' (The Vigil)ର ସେ ସମ୍ପାଦକ ଥିଲେ । କେତେକ ଗାନ୍ଧୀବାଦୀଙ୍କ ସହ ମତାନୈକ୍ୟ ହେବାରୁ ଏବେ ସମ୍ପାଦନା କାର୍ଯ୍ୟ ଆଉ କରୁନାହାନ୍ତି । କେବେ କେମିତି 'The Radical Humanist' ପତ୍ରିକାରେ ଲେଖାଲେଖି କରୁଛନ୍ତି ଓ ଉଚ୍ଚପ୍ରଶଂସାର ଅଧିକାରୀ ହୋଇଛନ୍ତି । ତାଙ୍କ ଦ୍ୱାରା ଲିଖିତ ଦୁଇଟି ଇଂରାଜୀ ପ୍ରବନ୍ଧ ମୋର ଏ ଭିତରେ ହସ୍ତଗତ ହୋଇଛି । ପ୍ରଥମଟି ହେଉଛି 'ରାସନାଲିଜିମ୍ ଆଣ୍ଡ ମୋରାଲିଟି ଇନ୍ ହିଷ୍ଟୋରି ଆଣ୍ଡ ହ୍ୟୁମାନ ସାଇକ୍' (Rationalism and Morality In History and Human Psyche), ଦ୍ୱିତୀୟଟି ହେଉଛି 'ୟୁନିଭର୍ସାଲ ଭାଲ୍ୟୁଜ୍ ଫର୍ ଏ ବେଟର୍ ୱାର୍ଲ୍ଡ' (Universal Values for a Better World) । ଏ ପ୍ରବନ୍ଧମାନଙ୍କ ଉପରେ ସବିଶେଷ ଆଲୋଚନା କରିବାର ସମୟ ଉପସ୍ଥିତ ହୋଇଛି । ସେ କହିବାକୁ ଚାହିଁଛନ୍ତି ଯେ ଧର୍ମ, ପାପପୁଣ୍ୟ, ଭଗବାନ ଏବଂ ସଇତାନ ଆଦି ଆମେ ବ୍ୟବହାର କରୁଥିବା ଶବ୍ଦ ଗୁଡିକ ସୃଷ୍ଟି ହେବା ପୂର୍ବରୁ ଭାରତରେ ଏକ ସଭ୍ୟତା ବିରାଜମାନ କରୁଥିଲା । ଅର୍ଥାତ୍ ବେଦ ରଚନା ପୂର୍ବର ଏବଂ ଆର୍ଯ୍ୟମାନେ ଆର୍ଯ୍ୟାବର୍ତ୍ତ ସ୍ଥାପିତ କରିବା ପୂର୍ବରୁ ଭାରତୀୟ ସଭ୍ୟତା ଏକ ଅହିଂସ ସମାଜ ଓ ଦର୍ଶନ ଉପରେ ପର୍ଯ୍ୟବସିତ ହୋଇଥିଲା । ଏହାକୁ ଲୋକାୟତ ଦର୍ଶନ କୁହାଯାଏ । ଏଇ ଦର୍ଶନ ଏକ ନିର୍ଦ୍ଦିଷ୍ଟ ଯୁକ୍ତିବାଦୀ ଦର୍ଶନ ବା ରାସ୍‌ନାଲିଜିମ୍ (Rational-

ism) ଉପରେ ଆଧାରିତ ଏବଂ ଖ୍ୟାତନାମା ଦାର୍ଶନିକ ଚର୍ବାକଙ୍କ ଦ୍ୱାରା ପ୍ରସାରିତ । ପରବର୍ତ୍ତୀ ସମୟରେ କୌଟିଲ୍ୟ ଲୋକାୟତ, ସାଂଖ୍ୟ ଏବଂ ଯୋଗର ସମନ୍ୱୟରେ ଜନ୍ମଲାଭ କରିଥିବା 'ଅନ୍ୱିକ୍ଷିକି'ର ଅବଧାରଣା କରିଛନ୍ତି । ପ୍ରଫେସର୍ ଡି.ପି. ଚଟ୍ଟୋପାଧ୍ୟାୟ 'ଲୋକାୟତ' ଉପରେ ଆଲୋକପାତ କରି ଏକ ବିରାଟ ପୁସ୍ତକ ରଚନା କରିଛନ୍ତି । ମୋଟାମୋଟି କହିବାକୁ ହେଲେ ମଣିଷ ଯୁକ୍ତିବାଦୀ ହେବ ଏବଂ ସବୁ ବିଷୟ ଓ ଚିନ୍ତାଧାରାକୁ ଏଇ ଦୃଷ୍ଟିରେ ଗ୍ରହଣ କରିବାକୁ ହେବ ବୋଲି ଅନେକ ସମୟରେ ଆହ୍ୱାନ ଆସିଛି । ଏଇଥିପାଇଁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ପାଇଁ ଯାହାକିଛି ଯୁକ୍ତିର ଆବଶ୍ୟକ ତାହା ସୃଷ୍ଟି କରିବାକୁ ହେବ । ଯେତେପ୍ରକାରର ରୀତିନୀତି, ବିଶ୍ୱାସ ଓ ଅନ୍ଧବିଶ୍ୱାସ, ଶକ୍ତି ଓ ଆଧ୍ୟାତ୍ମିକଶକ୍ତିର ପରିକଳ୍ପନା କରାଯାଇଛି ତାହା ମିଥ୍ୟା ବୋଲି ପ୍ରମାଣିତ ହେବ । ଏଇସବୁ ସୁଖ ଏବଂ ଆନନ୍ଦର ପଥ ମଧ୍ୟ ନିର୍ଦ୍ଧାରଣ କରିବ । ଚର୍ବାକ ତାଙ୍କର ସମସାମୟିକ ବ୍ରାହ୍ମଣ ଗୋଷ୍ଠୀ ଏବଂ ସେମାନଙ୍କର ଧର୍ମତତ୍ତ୍ୱକୁ ବିରୋଧ କରୁଥିବାରୁ ହତ୍ୟାର ଶିକାର ହୋଇଥିଲେ । ତାଙ୍କ ସମର୍ଥିତ 'ଯୁକ୍ତିବାଦ'କୁ ବିରୋଧ କରାଯାଇଥିଲା ସାମଗ୍ରିକ ଭାବେ ଓ ହିଂସା ଓ ଲୋଭର ସଭ୍ୟତା ଏବଂ ଏହାକୁ ପ୍ରତିନିଧିତ୍ୱ କରିଥିବା ସମାଜ ପୁଣିଥରେ ଏ ଦେଶରେ ମୁଣ୍ଡ ଟେକିଥିଲା । ସୁଖ ପରିବର୍ତ୍ତିତ ଦୁଃଖ ପୁଣି ସମାଜରେ ସ୍ଥାନ ପାଇଥିଲା । ସାଧାରଣ ମଣିଷ ଦୁଃଖ, ହିଂସା ଓ ଲୋଭ ଭିତରେ ବୁଡି ରହିଲା । ଆଜିର ହିଂସା, ଲୋଭ, ଘୃଣା ଓ ବିଭିନ୍ନ ବୈଷମ୍ୟ ଏସବୁର ପରିପ୍ରକାଶ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏଇଥିପାଇଁ ଅନ୍ୱିକ୍ଷିକି ସଂସ୍କୃତି ଅହିଂସ ଓ ସୁଖମୟ ସମାଜ ପ୍ରତିଷ୍ଠା ପାଇଁ ଏକମାତ୍ର ରାସ୍ତା ବୋଲି ପ୍ରଫେସର ରଥ ମତାମତ ଦେଇଛନ୍ତି । ମଣିଷ ସାଧୁ ବା ସଇତାନ ହେବ ଏହା ଉପରେ ନିର୍ଭର କରୁଛି । ଆଧୁନିକ ବିଜ୍ଞାନରେ ମସ୍ତିଷ୍କ ବିଜ୍ଞାନ ଉପରେ ଗବେଷଣା ଚାଲିଛି । ସମୟ ଆସିବ ମସ୍ତିଷ୍କକୁ ନିୟନ୍ତ୍ରଣ କରି ଏକ ସୁଖ ଏବଂ ଆନନ୍ଦମୟ ସମାଜର ପୁନଃ ପ୍ରତିଷ୍ଠା ହେବ । ଏକଥା ପ୍ରଫେସର ରଥ କଳ୍ପନା କରିଛନ୍ତି । ଏହା ଦ୍ୱାବିଂଶ ଶତାବ୍ଦୀରେ ସମ୍ଭବ ହେବ ଯେତେବେଳେ ମଣିଷ ଜ୍ଞାନ ଓ ପ୍ରଜ୍ଞାନ ଭିତରେ ଥିବା ପାର୍ଥକ୍ୟକୁ ଦୂର କରିପାରିବ ।

ଦ୍ୱିତୀୟ ପ୍ରବନ୍ଧରେ ପ୍ରଫେସର ରଥ ସାମ୍ପ୍ରତିକ ସମାଜର ହିଂସା, ଧର୍ଷଣ, ପାରିବେଶିକ ଅବକ୍ଷୟ, କ୍ଷୁଧା ଓ ଦେଶଦେଶ ଭିତରେ ଯୁଦ୍ଧର ଭୟାଭୟ ପରିଣତିକୁ ଉପଲବ୍ଧି କରି ମଣିଷର ବର୍ତ୍ତମାନ ପାଗଳାମୀ ସମ୍ପର୍କରେ ସୂଚନା ଦେଇଛନ୍ତି । ମଣିଷର ମଣିଷ ପଣିଆକୁ ମୂଲ୍ୟାୟନ କରିବା ପାଇଁ ଆବଶ୍ୟକ ହେଉଛି ତାହାର ଶରୀର ଓ ମନ । ଏସବୁର ରହସ୍ୟ ବୁଝିଲେ ଯାଇ ପ୍ରାପ୍ତି ହୁଏ ଆନନ୍ଦ । ଏଇ ଆନନ୍ଦ ସପକ୍ଷରେ ତିନୋଟି ଦର୍ଶନ (ଲୋକାୟତ, ସାଂଖ୍ୟ, ଯୋଗ), ମହାଭାରତ ଓ ଗୀତା ଭଳି ପୁସ୍ତକ ଏବଂ ବୌଦ୍ଧଧର୍ମ ଓ ଜୈନଧର୍ମ ଅନେକ ଆଲୋଚନା କରିଛନ୍ତି । କିନ୍ତୁ ଆଧୁନିକ ସଭ୍ୟତା ହିଂସା ଏବଂ ଲୋଭ ଉପରେ ପର୍ଯ୍ୟବସିତ । ଏଇଥି ପାଇଁ ଯଦି କେହି ଯୁଦ୍ଧ ବଦଳରେ ଶାନ୍ତିର

ପ୍ରସ୍ତାବ ଦେଉଛି, ତେବେ ତାହା ସ୍ୱୀକାର ଯୋଗ୍ୟ ନୁହେଁ ବୋଲି ଉଚ୍ଚସ୍ୱରରେ ଘୋଷଣା କରାଯାଉଛି । ଫରାସୀ ବିପ୍ଳବ, ଆମେରିକାର ସ୍ୱାଧୀନତା ପାଇଁ ବିପ୍ଳବ, ଋଷିଆ ବିପ୍ଳବ ଏବଂ ଚୀନ୍ ବିପ୍ଳବ ନୂତନ ସମାଜ ସୃଷ୍ଟି କରିଛି ସତ, ତାହା କିନ୍ତୁ ହିଂସା ଓ ଘୃଣା ଉପରେ ଆଧାରିତ ଥିଲାବେଳେ ଭାରତରେ ସ୍ୱାଧୀନତା ସଂଗ୍ରାମ ଓ ଗାନ୍ଧୀଙ୍କ ସତ୍ୟାଗ୍ରହ ଆଦିରେ ଅହିଂସା ଓ ଅସହଯୋଗର ମୂଲ୍ୟବୋଧ ରହିଆସିଅଛି । ମଣିଷର ଦୃଷ୍ଟିକୋଣ ଏସବୁ ଦେଖି ଶୁଣି ମାର୍ଜିତ ହେଉଛି । ଅହିଂସା, ଅପରିଗ୍ରହ ଏବଂ ସୁଖକୁ ମଣିଷ ବର୍ତ୍ତମାନ ସମୟରେ ଅତି ନିବିଡ଼ତାର ସହ ଖୋଜୁଛି । ଆଉ ଖୋଜୁଛି ମୁକ୍ତି, ସମତା ଓ ସତ୍ୟ । ଏସବୁର ସନ୍ଧାନରେ ମଣିଷ ନିଜକୁ ଉତ୍ସର୍ଗ କରିଛି । ତେଣୁ ଧର୍ମର ସଜ୍ଞା ବଦଳିବାର ଅଛି ଓ ତଥାକଥିତ ସଭ୍ୟତାର ଅସ୍ତିତ୍ୱ ସମ୍ପର୍କରେ ଯେଉଁ ଭ୍ରମ ରହିଛି ତାହା ମଧ୍ୟ ଦୂର ହେବାର ଅଛି ।

ଦୁଇଟି ପ୍ରବନ୍ଧ ପଢ଼ିଲା ପରେ ମନେ ହୁଏ ଯେ, ପ୍ରଫେସର ଭଗବତ ପ୍ରସାଦ ରଥ ଆମର ସମସାମୟିକ ଚିନ୍ତାଧାରା ଠାରୁ ଅନେକ ଆଗରେ ଅଛନ୍ତି । ସେ ଆପଣାର ରାସ୍ତାରେ ଖୋଜୁଛନ୍ତି ନୂତନ ଚିନ୍ତନ ଓ ବଞ୍ଚିବାର ନୂତନ ସଂଯୋଜନା । ଆସ୍ଥାସୂଚକ ଚିନ୍ତାଧାରାର ଉତ୍ସ ଓ ପ୍ରବାହକୁ ଅନୁଭବ କରୁଛନ୍ତି । ଲେଖିବାକୁ ଋହିଁଛନ୍ତି ରସେଲ୍ ଏବଂ ଆଇନ୍‌ଷ୍ଟାଇନ୍, ଫ୍ରୟେଡ୍ ଏବଂ ଲରେନ୍‌ଜ, ବୁଦ୍ଧ ଓ ଗାନ୍ଧୀ, ହେଗେଲ ଓ ମାର୍କ୍ସ, ଗୀତା ଓ ମହାଭାରତ, ଋର୍ବାକ ଓ କୌଟିଲ୍ୟଙ୍କ କଥା । ଲେଖିଛନ୍ତି ମନସ୍ତତ୍ତ୍ୱ ଓ ମସ୍ତିଷ୍କ ବିଜ୍ଞାନ କଥା । ଅବୋଧତାର କୁହେଳିକାକୁ ଅତିକ୍ରମ କରି ସାରିଲା ପରେ ସ୍ୱଚ୍ଛତା ଆସିବ ନିଶ୍ଚିତ । ଏଇ ସ୍ୱଚ୍ଛତା ପାଇଁ ସତେଯେମିତି ଆମ ଭଳି ସବୁ ପଥିକ ଗୋଟାଏ ଗୋଟାଏ ଅମଡ଼ା ବାଟରେ ଋଲିଛନ୍ତି ।

❑ ❑ ❑

## ୪୯

# ଏ ଯାତ୍ରା ଶେଷ ହୋଇ ନାହିଁ......

ଜଣେ ବନ୍ଧୁ ଏଇ ସ୍ତମ୍ଭ ନିୟମିତ ପଢ଼ି କହୁଥିଲେ ଯେ ଏହା ଆତ୍ମକଥା ନୁହେଁ, ଏକ ବୌଦ୍ଧିକ କାହାଣୀ । ସୋମଦେବଙ୍କ "କଥା ସରିତ ସାଗର" ନୁହେଁ, କି ଏକ ହଜାର ଏକ ରାତ୍ରିର ଆରବୀୟ କାହାଣୀ ନୁହେଁ । ଆଉ ଜଣେ ବନ୍ଧୁ ମନ୍ତବ୍ୟ ଦେଉଥିଲେ ଯେ ଏ ସ୍ତମ୍ଭର ଲେଖାଗୁଡ଼ିକ ସହଜରେ ବୋଧଗମ୍ୟ ନୁହେଁ । କାହା ପାଇଁ ଏହା ଲେଖା ଯାଉଛି ? ଆଉ ଜଣେ ବନ୍ଧୁ କହିଥିଲେ ଯେ ଯଦି ଏହା ଏକ ଆଧ୍ୟାତ୍ମିକ ଯାତ୍ରାର ଅନୁଭୂତି ଆଧାରିତ, ତେବେ ତାହାର ସବୁ ଦିଗ ଏଥିରେ ବର୍ଣ୍ଣିତ ହୋଇନାହିଁ । ମୁଁ ପୁଣିଥରେ ଆତ୍ମାବଲୋକନ କରୁଥିଲି । ସତରେତ, ଆଧ୍ୟାତ୍ମିକ ପୁରୁଷ ହୋଇ ଏ ପୃଥିବୀରେ ଜନ୍ମ ନେଇଥିବା ଯେଉଁ କେତେଜଣଙ୍କୁ ମୁଁ ଜାଣେ ସେମାନଙ୍କ ଭିତରେ ଅଛନ୍ତି ରାମକୃଷ୍ଣ ପରମ ହଂସ, ସ୍ୱାମୀ ଯୋଗାନନ୍ଦ, ସିରିଡି ସତ୍ୟସାଇବାବା ଆଦି ଅନେକ । ସେମାନଙ୍କ ଉପରେ ଲିଖିତ କେତେକ ବହି ମୁଁ ନିଶ୍ଚିତ ପଢ଼ିଛି ଓ ଅଭିଭୂତ ହୋଇଛି । ଖ୍ରୀଷ୍ଟୋଫର ଇସରଉଡ୍‌ଙ୍କ ଲିଖିତ 'ରାମକୃଷ୍ଣ ଆଣ୍ଡ ହିଜ୍ ଡିସାଇପଲ୍‌ସ' (Rama Krishna and His Disciples), ସ୍ୱାମୀ ଯୋଗାନନ୍ଦଙ୍କ ଲିଖିତ 'ଅଟୋବାଇଓଗ୍ରାଫୀ ଅଫ୍ ଏ ଯୋଗୀ' (Autobiography of a Yogi) ଆଦି ବହିଗୁଡ଼ିକ ମୋର ପୁସ୍ତକାଳୟରେ ସବୁଦିନ ପାଇଁ ସ୍ଥାନ ପାଇଛି । ଏବେକାର ଗୁରୁ ଓ ମହର୍ଷିମାନଙ୍କର ପ୍ରବଚନର ସଙ୍କଳନକୁ ନେଇ ସୃଷ୍ଟି କରାଯାଇଥିବା ପୁସ୍ତକ, ଟେପ୍, ସିଡି ଆଦି ମଧ୍ୟ ମୁଁ ସଂଗ୍ରହ କରିବାର ପ୍ରୟାସ କରିଛି । ଜଣେ ବନ୍ଧୁ ତନ୍ତ୍ର ସମ୍ପର୍କରେ କିଛି ପଢ଼ିଛି ଏବଂ ଜାଣିଛି କି ବୋଲି ପ୍ରଶ୍ନ କରିଥିଲେ ଏବଂ 'ଅଘୋର' ବିଷୟରେ ଅଧିକ ଜ୍ଞାନ ସଂଗ୍ରହ ପାଇଁ ଉପଦେଶ ଦେଇଥିଲେ । ରବର୍ଟ ସ୍ୱୋବୋଡ଼ା (Robert E. Svoboda)ଙ୍କ ଲିଖିତ ତିନୋଟି 'ଅଘୋର' ବହି ମୁଁ ଏ ଭିତରେ କିଣି ସାରିଛି । କୁଣ୍ଡଳିନୀ ଯୋଗ କ'ଣ ଜାଣିବାକୁ ମୁଁ ଖୁବ୍ ଆଗ୍ରହୀ କିନ୍ତୁ, ଏସବୁର ଅସଲ ଅର୍ଥ ଏବଂ ଅନୁଭୂତି ଜାଣିବାକୁ ଏ ଜୀବନରେ ସୁଯୋଗ ମିଳିବ କି ନାହିଁ ମୋର ସନ୍ଦେହ ଅଛି । ଏସବୁ କଥା ବିଚାରକୁ ନେଲେ ଏ ଜୀବନ ଯାତ୍ରାର ଯେମିତି ଶେଷ ନାହିଁ !

କିନ୍ତୁ, ସତରେ ଜଣେ ପରିବ୍ରାଜକ କ'ଣ ଦିଗଭ୍ରଷ୍ଟ ହୋଇଯାଏ ? ଚୁମ୍ବକ କଣ୍ଟା ସବୁବେଳେ ଉତ୍ତର ଦିଗକୁ ମୁହଁ କରିଥାଏ । ଯେତେ ଅସ୍ଥିର ହେଲେ ବି ତାହା ଅବଶେଷରେ

ଉତ୍ତର ଦିଗ ନିର୍ଦ୍ଧାରଣ କରିଥାଏ । ମୋର ମନେହୁଏ ଯେ ସବୁଯାତ୍ରାର ଦିଗ ଗୋଟିଏ । ମୁଁ ଜାଣେ ମୁଁ କେବଳ ମୋ ପାଇଁ ବଞ୍ଚିଛି - ଆଉ କାହା ପାଇଁ ନୁହେଁ । ମୋର ଏ ଯାତ୍ରା ଏକ ସ୍ୱାର୍ଥପର ଯାତ୍ରା । ମୁଁ ଯଦି ଜ୍ଞାନ ଆହରଣ କରୁଛି କେବଳ ମୋ ପାଇଁ । ମୁଁ ଯଦି ସ୍ନେହ ଓ ବନ୍ଧୁତ୍ୱ ଲୋଡିଛି ମୋ ନିଜସ୍ୱ ଆନନ୍ଦ ପାଇଁ । ଯଦି ଚରମ ଆଧ୍ୟାତ୍ମିକତା ସହ ମୁଁ କେବେ ତଲ୍ଲୀନ ହୋଇଯାଏ, ତେବେ ସେଥିରେ ନିଶ୍ଚିତ ରହିବ ଏକାନ୍ତ ଓ ଆତ୍ମିକ ସଦିଚ୍ଛା । ଯଦି ମୋର ମୃତ୍ୟୁ ସହ ଭେଟ ହୋଇଯାଏ, ତେବେ ସେଥିରେ ରହିବ ପଥଭ୍ରାନ୍ତ ପରିବ୍ରାଜକର ଶେଷକଥା । ମୁଁ ଜାଣେ, ମୁଁ ଏକମାତ୍ର ପରିବ୍ରାଜକ ନୁହେଁ ଯିଏ କି, ଏ ପୃଥିବୀରେ ଯାତ୍ରା ଆରମ୍ଭ କରିଛି । ଅନେକ ସହଯାତ୍ରୀ ମିଳିଯାଇଛନ୍ତି ଲକ୍ଷ୍ୟ ଅଲକ୍ଷ୍ୟରେ, ଜାଣ ଅଜାଣତରେ । ମୁଁ ସେମାନଙ୍କ ସହ ସାମିଲ ହେବାକୁ କେବେକେବେ ଚେଷ୍ଟା କରିଛି । ଯେଉଁମାନେ ଅଛନ୍ତି ଆଗରେ, ଅନେକ ଆଗରେ, ସେମାନଙ୍କ ନିକଟସ୍ଥ ହେବାକୁ ଯେମିତି ଅନେକ ଥର ଜନ୍ମନେବାକୁ ହେବ ଅଥବା ସେମାନଙ୍କର ଶିଷ୍ୟ ହେବାକୁ ପଡିବ । ମୁଁ ଗୋଟିଏ କଥାରେ ସ୍ଥିର ନିଶ୍ଚିତ । ଜଣଙ୍କର ଗୁଣାତ୍ମକ ଜୀବନ ପାଇଁ ଆବଶ୍ୟକତା ରହିଛି ବିଜ୍ଞାନ ଓ ଦର୍ଶନ, ସଂଗୀତ ଓ କଳା, ଧ୍ୟାନ ଓ ଆଧ୍ୟାତ୍ମିକତା । ଜଣେ ବ୍ୟକ୍ତିର ଜୀବନ କାଳ ଭିତରେ ପ୍ରତ୍ୟେକଟି ଉପାଦାନ ବିକଶିତ ହେଉଛି ଓ ନୂତନ ଦିଗନ୍ତ ଉନ୍ମୋଚିତ ହେଉଛି । ଏହାକୁ କେନ୍ଦ୍ରବିନ୍ଦୁ କରି ନିଜର ଜୀବନକୁ କିପରି ମହନୀୟ କରିବ ତାହା ସବୁବେଳେ ଏକ ଆହ୍ୱାନ ହୋଇଯାଇଛି । ପ୍ରତ୍ୟେକ ଉପାଦାନ ଉପରେ ରଚିତ ପୁସ୍ତକ ପଢ଼ିଦେଲେ ଯେ ଜଣକର ଜୀବନ ସାର୍ଥକ ହେବ, ଏହା ଭାବିବା ମୂର୍ଖାମୀ । ଏଥିପାଇଁ ସବୁବେଳେ ଧର୍ମ ଓ ଦର୍ଶନରେ ଗୁରୁମାନଙ୍କ କଥା ପରିକଳ୍ପନା କରାଯାଇଛି । ଭାଗବତରେ କପୋତ ପକ୍ଷୀ ଠାରୁ ଆରମ୍ଭ କରି ଅଜଗର ସାପ ପର୍ଯ୍ୟନ୍ତ, ବ୍ୟାଧ ଠାରୁ ଆରମ୍ଭ କରି ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ଗୁରୁମାନଙ୍କର ବର୍ଣ୍ଣନା କରାଯାଇଛି । ସତରେ ଲମ୍ବା ଓ ଅସରନ୍ତି ଯାତ୍ରାର ଅସଲ ମାର୍ମିକ ଅନୁଚିନ୍ତା ହେଉଛି ଏ ଗୁରୁମାନଙ୍କୁ ଆବିଷ୍କାର କରିବା ଓ ସମ୍ବନ୍ଧ ରଚିବା । ଏଇ ଦୃଷ୍ଟିରେ ବିଚାର କରିଲେ, ମୋର ଯାତ୍ରା ନିରର୍ଥକ ଓ ଦିଗହୀନ ହୋଇନାହିଁ । ଗୁରୁମାନଙ୍କ ସହ ଦେଖାସାକ୍ଷାତ ଓ ବେଳେବେଳେ ନୀରବ ଓ ନୀରବଚ୍ଛିନ୍ନ ସମ୍ପର୍କ ସୃଷ୍ଟି କରିଛି ଅଭିନବ ଉତ୍ସାହ ଉଦ୍ଦୀପନା । କାମୁକତା ଓ ଅବିମୃଶ୍ୟକାରିତାକୁ ଅତିକ୍ରମ କରିବାର ପ୍ରଶ୍ନ ଉଠିଲା ମାତ୍ରକେ ଜଣେ ବନ୍ଧୁ ସନ୍ଥ ଓ କବି ତୁଳସୀ ଦାସଙ୍କ କାହାଣୀ ଶୁଣାଉଥିଲେ । ସ୍ତ୍ରୀ ସହିତ ସମ୍ଭୋଗରେ ରାତି କଟାଉଥିବା ତୁଳସୀ ଦାସଙ୍କ ସ୍ତ୍ରୀ କୁଆଡେ ଦିନେ, ଦୁଇଦିନ ପାଇଁ ବାପଘରକୁ ଯାଇଥିଲାବେଳେ ସେ ବିରହର ଜ୍ୱାଳା ସମ୍ଭାଳି ପାରି ନଥିଲେ । ଏଥିପାଇଁ ବର୍ଷଣ ମୁଖର ରାତ୍ରିରେ ଏକ ଶବକୁ ଆଶ୍ରୟ କରି ପୂର୍ଣ୍ଣଗର୍ଭା ନଦୀ ଅତିକ୍ରମ କରିଥିଲେ ଓ ଏକ ସାପକୁ ଶିଡି କରି ସ୍ତ୍ରୀଙ୍କ କୋଠରି ଭିତରେ ନୀରବରେ ପ୍ରବେଶ କରିଥିଲେ । ତୁଳସୀ ଦାସଙ୍କ ସ୍ତ୍ରୀ ଏଥିରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ତାଙ୍କର ଦୋଷ ଦୁର୍ବଳତା, କାମାତୁର ବ୍ୟକ୍ତିତ୍ୱ ଉପରେ କଟାକ୍ଷପାତ

କରିଥିଲେ । ଏଥିରେ ତୁଳସୀ ଦାସଙ୍କ ଚେତନା ଜାଗରିତ ହୋଇଥିଲା ଓ ସେ ତାଙ୍କର ଦୈହିକ ଓ ପାଶବିକ ଶକ୍ତିକୁ ରଚନାତ୍ମକ ଶକ୍ତିରେ ପରିଣତ କରିଥିଲେ । ଏଥିରୁ ସୃଷ୍ଟି ହୋଇଥିବା ତୁଳସୀ ଦାସଙ୍କ ରାମାୟଣ, ଯାହା ଆଜି ଘରେ ଘରେ ଲୋକପ୍ରିୟ ହୋଇ ସ୍ଥାନ ପାଇଛି । ଜଣେ ଚେତନଶୀଳ ସ୍ତ୍ରୀ ଯେ ପ୍ରକୃତରେ ଅସଲ ଗୁରୁ, ଅନେକ କ୍ଷେତ୍ରରେ ତାହାର ନିଦର୍ଶନ ରହିଛି । ମୁଁ ଭାବୁଛି ମୋର ଯାତ୍ରା ଭିତରେ କେତେବାର ଏହା ମୁଁ ତୀବ୍ର ଭାବେ ଅନୁଭବ କରିଛି ।

ଯାତ୍ରା ଏକ ଉତ୍ସର୍ଗୀକୃତ ଓ ନିଷ୍ପାପର ଅନୁସନ୍ଧିତ୍ସା । ଖୋଜି ପାଇବାର ଆନନ୍ଦର ଏକ ଜ୍ୱଳନ୍ତ ଉଦାହରଣ । ସୋମଦେବଙ୍କ 'କଥା ସରିତ ସାଗର'ରେ ବାରମ୍ବାର ଉଲ୍ଲେଖ କରାଯାଇଛି ଯେ ଶିବ ହୁଅନ୍ତୁ ବା ଦୁର୍ଗା ହୁଅନ୍ତୁ, ଭଗବାନଙ୍କ ଆରାଧନା କରି ନିଜକୁ ବଳିଦେଲା ବେଳେ ଭଗବାନ ଉପସ୍ଥିତ ହୋଇଛନ୍ତି । ରାମକୃଷ୍ଣ ପରମହଂସଙ୍କ ଜୀବନରେ ଏଇଆ ଘଟିଥିଲା ବୋଲି ତାଙ୍କ ଜୀବନୀରେ ଲେଖାଯାଇଛି । ମା'କାଳୀଙ୍କୁ ତପସ୍ୟା କରି ସେ ଅନ୍ତିମ ଲକ୍ଷ୍ୟ ନେଇ ଖଣ୍ଡାରେ ନିଜ ବେକକୁ ହାଣିବାକୁ ଉଦ୍ୟମ କରିଲା ବେଳେ କାଳୀ କୁଆଡେ ନିଜେ ସଶରୀରରେ ଉଭା ହୋଇଥିଲେ ଓ ରାମକୃଷ୍ଣ ପରମହଂସ ଦିବ୍ୟଜ୍ଞାନ ଲାଭ କରିଥିଲେ । ଯାତ୍ରାରେ ପୂଜା ଆରାଧନା ଓ ତପସ୍ୟା ଏକ ବ୍ୟକ୍ତିଗତ । ଜଣେ ଏହା ନକରି ମଧ ଉତ୍ସର୍ଗୀକୃତ ଭାବେ ଯାତ୍ରା କରିଲେ ତାକୁ ପରମ ଦିବ୍ୟ ଜ୍ଞାନ ପ୍ରାପ୍ତହେବ ବୋଲି ଅନେକ ମୁନିଋଷି କହିଛନ୍ତି । ଯାତ୍ରା ସବୁବେଳେ ଆଗକୁ ଓ ଆହୁରି ଆଗକୁ । ପଛକୁ ଫେରିବାର ଅବକାଶ ନାହିଁ, କି ଅଭିପ୍ରାୟ ନାହିଁ ଯାତ୍ରୀର ।

ଯାତ୍ରା ଶେଷ ହୁଏ ନାହିଁ, କାରଣ ଏଥି ସହିତ ସଂଶ୍ଳିଷ୍ଟ ରୋମାଞ୍ଚ ଓ ଦର୍ଶନର ମଧ ଶେଷ ନାହିଁ । ରୋମାଞ୍ଚକୁ ଦୈହିକ ଅର୍ଥରେ ନିଆଯିବା ଠିକ୍ ହେବ ନାହିଁ, କି ଦର୍ଶନକୁ ବୌଦ୍ଧିକ ସୀମାଭିତରେ ବାନ୍ଧି ହେବ ନାହିଁ । ରୋମାଞ୍ଚକର ଯାତ୍ରା ପାଇଁ ଦୁଃସାହସିକ ମଣିଷ ଲମ୍ଫ ଦେଇଛି । ଦର୍ଶନର ଅସଲ ତତ୍ତ୍ୱ ବୁଝିବାକୁ ମଣିଷ ଅଧୟନ କରିଛି କିମ୍ବା ଗୁରୁମାନଙ୍କର ପ୍ରବଚନ ଶୁଣିଛି । ମୁଁ ଭାବୁଛି ସବୁଯାତ୍ରାର ଅସଲ ଉଦ୍ଦେଶ୍ୟ ହେଉଛି ଅଜ୍ଞାନର ଅମାଅନ୍ଧକାର ଅତିକ୍ରମ କରି ଆଲୋକାଭିମୁଖୀ ହେବା । ମୁଁ ଭାବୁଛି ଆଲୋକର ସମୀପବର୍ତ୍ତୀ ହୋଇ ଆଲୋକିତ ହେବାର ପୁଲକ ହିଁ ଯାତ୍ରାର ଏକମାତ୍ର ଉଦ୍ଦେଶ୍ୟ । ଏହାକୁ କିଏ କେମିତି ଅର୍ଥକରି ବୁଝିଛି ତାହା ଅବଶ୍ୟ ବିବଦମାନ । ମୁଁ ଜଣେ ଭାରତୀୟ । ଏଣୁ ଜନ୍ମ ଦିନଠାରୁ ମୋ ଉପରେ ଭାରତୀୟ ଧର୍ମ, ଦର୍ଶନ, ସଂସ୍କୃତି ଓ ପରମ୍ପରାର ପ୍ରଭାବ ପଡ଼ିଆସିଛି । ଜୀବନ ଓ ମୃତ୍ୟୁକୁ ଚିରାଚରିତ ଢ଼ଙ୍ଗରେ ନ ଦେଖି ଏକ ଭିନ୍ନ ଦୃଷ୍ଟିରେ ଦେଖିବା ଏତେ ସହଜ କଥା ନୁହେଁ । ମନ୍ଦିରକୁ ଯାଇ ପୂଜା ଅର୍ଚ୍ଚନା କରିବ କି ଦେବାଳୟ ଠାରୁ ଦୂରରେ ରହି ନାସ୍ତିକ ହେବ, ଏ ସ୍ୱାଧୀନତା ପ୍ରତ୍ୟେକ ଭାରତୀୟର ରହିଛି । ଜଣେ ସାଲିସ୍ ପନ୍ଥୀ ହେବ କି ବିଦ୍ରୋହୀ ହେବ ଏହା ବିଚାର କରିବା ମଧ ବ୍ୟକ୍ତିବିଶେଷ ଉପରେ ନିର୍ଭର କରୁଛି । ଜଣେ କବି ହେବ କି କବିତା ଅନୁରାଗୀ ହେବ

ତାହା ମଧ୍ୟ ବିଶେଷ ରୁଚି ଉପରେ ନିର୍ଭର କରୁଛି । ସମସ୍ତେ କ'ଣ ସତରେ ଶ୍ରୀମଦ୍ ଭଗବତ୍ ଗୀତାର ବର୍ଣ୍ଣିତ କର୍ମଯୋଗ, ଭକ୍ତିଯୋଗ, ରାଜଯୋଗ, ଧ୍ୟାନଯୋଗ ଆଦିର ପୂଜାରୀ ହୋଇ ନିଜର ଜୀବନ ଯାପନ କରିବେ ? ଏସବୁ ନାଁରେ ସମସ୍ତେ ଯେମିତି ଆପଣା ଆପଣାର ଅସ୍ତିତ୍ୱ ଜାହିର କରିବାରେ ଲାଗିଛନ୍ତି । ପାପ ଓ ପୂଣ୍ୟର ଅଧିକାରୀ ହେଉଥିବା ମଣିଷମାନେ ଯେମିତି ପୂନର୍ଜନ୍ମର ପ୍ରାୟଶ୍ଚିତ କରୁଛନ୍ତି ବୋଲି ବିଶ୍ୱାସ ଜନ୍ମାଇବା ପାଇଁ ଅନେକ ଧର୍ମଶାସ୍ତ୍ର ରଚନା କରାଯାଇଛି । ମୋଟାମୋଟି କହିବାକୁ ଗଲେ, ପ୍ରତ୍ୟେକ ମଣିଷର ଜୀବନଯାତ୍ରା ତାହାର ଧର୍ମ ଓ ଦର୍ଶନ ଦ୍ୱାରା ପରିଚାଳିତ ହେଉଛି । ଭାରତୀୟ ଦର୍ଶନ ଉପରେ ଅନେକ ବ୍ୟାଖ୍ୟା ଓ ଆଲୋଚନା ପ୍ରକାଶିତ ହୋଇଛି । ଯେଉଁମାନେ ଦର୍ଶନର ଛାତ୍ର, ସେମାନେ ମଧ୍ୟ ଏହି ଗଭୀରତାରେ ପ୍ରବେଶ କରିବା ସମ୍ଭବ ହୋଇନାହିଁ । ମୁଁ କିନ୍ତୁ ଭାରତୀୟ ଦର୍ଶନର ଏକ ସମ୍ୟକ ଧାରଣା ପାଇବା ପାଇଁ ବିଖ୍ୟାତ ଦାର୍ଶନିକ ଓ ରାଜନୀତିଜ୍ଞ ପ୍ରଫେସର ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ଲିଖିତ "ଇଣ୍ଡିଆନ୍ ଫିଲୋସଫି" ବୋଲି ଦୁଇଟି ପୁସ୍ତକ ପଢ଼ିବାକୁ ନିଶ୍ଚିତ ପ୍ରୟାସ କରିଛି । ବେଦ, ଉପନିଷଦ ଠାରୁ ଆରମ୍ଭ କରି ବୌଦ୍ଧ ଓ ଜୈନଧର୍ମର ତାତ୍ତ୍ୱିକ ମୂଲ୍ୟବୋଧ ଆମ ଦର୍ଶନର ମୂଳସ୍ତମ୍ଭ । ଅନ୍ୟପକ୍ଷରେ ନ୍ୟାୟ, ସାଂଖ୍ୟ, ଯୋଗ, ଅଦ୍ୱୈତବାଦ ଏବଂ ପରିଶେଷରେ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ଉତ୍‌ଥାନ ଭାରତୀୟ ଦର୍ଶନର ଅନ୍ୟତମ ପରିପ୍ରକାଶ । ଜଣେ ଯାତ୍ରୀ ସବୁ କିଛି ନ ପଢ଼ି ମଧ୍ୟ ନିଜର ପାରିବେଶିକ ଓ ସାଂସ୍କୃତିକ ପ୍ରଭାବ ଏବଂ ପ୍ରତିଷ୍ଠା ହେତୁ ଏସବୁକୁ ବୁଝିବାକୁ ଚେଷ୍ଟା କରିଛି ଓ ଅନ୍ତଃସ୍ଥ କରିବାକୁ ଚେଷ୍ଟା କରିଛି । ପ୍ରକୃତରେ ଯାତ୍ରୀ କେବେହେଲେ ତର୍କର ଜାଲରେ ବାନ୍ଧି ହୋଇଯାଇନାହିଁ । ଅସଲ ଯାତ୍ରୀ ନିରନ୍ତର ଭାବେ 'ବିଶ୍ୱାସ'କୁ ଆଧାର କରିଛି ଓ 'ବିଶ୍ୱାସ'କୁ ପାଥେୟ କରି ଆଗକୁ ଚାଲିଛି । ଏଇ ବିଶ୍ୱାସ ହେଉଛି ଆତ୍ମବିଶ୍ୱାସ । ନିଜ ଉପରେ ଆସ୍ଥା ଓ ସକାରାତ୍ମକ ଚିନ୍ତାର ପରିପ୍ରକାଶ । ଏକଦା ଏକ ଯୋଗକେନ୍ଦ୍ରରେ ଜଣେ ଶିକ୍ଷାର୍ଥୀ ହିସାବରେ ମୁଁ ଯୋଗ ଦେଇଥିଲି । ଯୋଗାସନ, ପ୍ରାଣାୟାମ, ପ୍ରବଚନ ଛଡ଼ା ଓଁ ଉଚ୍ଚାରଣ ଉପରେ ଗୁରୁତ୍ୱ ଦେଉଥିଲେ ଯୋଗ ଶିକ୍ଷକମାନେ । ସବୁଆଡେ ଅନ୍ଧାର କରିଦିଆଯାଉଥିଲା ଏବଂ ଓଁ କେବଳ ଆଲୋକିତ ହୋଇ ଉଦ୍‌ଭାସିତ ହେଉଥିଲା । ଏହା ଉପରେ ଧ୍ୟାନ କେନ୍ଦ୍ରୀଭୂତ କରିବାକୁ ଆମକୁ କୁହାଯାଉଥିଲା ଏବଂ ସମସ୍ତ ସଂଦିଗ୍‌ଧତା ଓ ସଂଶୟତାକୁ ବିଲୀନ କରିବାକୁ ନିର୍ଦ୍ଦେଶ ଦିଆଯାଉଥିଲା । ଏହା ଏକ ମହାନୁଭବ ମୁହୂର୍ତ୍ତ ଥିଲା ମୋ ଭଳି ଅନେକ ଯାତ୍ରୀଙ୍କ ପାଇଁ ।

❐❐❐

## ୫୦

# ପରିବ୍ରାଜକର ଆରମ୍ଭ ଓ ଶେଷ ବୃତ୍ତାନ୍ତ

ଜଣେ ଯାତ୍ରୀ ଯାତ୍ରା ଆରମ୍ଭରେ ସମ୍ଭବତଃ ଯାତ୍ରାପଥର ରୂପରେଖ ଓ ଅନ୍ତିମ ଲକ୍ଷ୍ୟ କଳ୍ପନା କରିନଥାଏ । କିନ୍ତୁ ପ୍ରତ୍ୟେକ ଯାତ୍ରାର ଆରମ୍ଭ ଓ ଶେଷ ନିଶ୍ଚିତ ଭାବେ ନିରୂପିତ ହୋଇଥାଏ ଏକ ଅଦୃଶ୍ୟ ଶକ୍ତି ଦ୍ୱାରା । ମୋର ମତରେ ପ୍ରତ୍ୟେକ ଯାତ୍ରାକୁ ଏକ ନିର୍ଦ୍ଦିଷ୍ଟ ବର୍ଗରେ ଅନ୍ତର୍ଭୁକ୍ତ କରାଯାଇପାରେ । ଗୋଟିଏ ବର୍ଗ ସର୍ଭାଣ୍ଟିସ୍‌ଙ୍କ ଲିଖିତ 'ଡନ୍‌କୁଇଟ୍ଟି' ଭଳି ନିଜର ଦୁଃସାହସିକ ଅଭିଯାନ ଆରମ୍ଭ କରିଥାଆନ୍ତି । ଅନେକ ପୁସ୍ତକ ପଢ଼ିଲା ପରେ ସେମାନେ ପ୍ରଭାବିତ ହୋଇଯାଆନ୍ତି ଓ ପବନ କଳକୁ ରାକ୍ଷସ ବୋଲି ମନେ କରନ୍ତି । ପ୍ରତ୍ୟେକ ମହିଳାଙ୍କୁ ଅତ୍ୟାଚରିତ ଓ ପୀଡିତ ବୋଲି ଧାରଣା ସୃଷ୍ଟି କରନ୍ତି । ଏଥିପାଇଁ ସେମାନଙ୍କୁ ବୀରର ଭୂମିକା ଗ୍ରହଣ କରିବାକୁ ପଡେ । ରାକ୍ଷସମାନଙ୍କୁ ମାରିବାକୁ ହେବ ଓ ମହିଳାମାନଙ୍କୁ ଉଦ୍ଧାର କରିବାକୁ ହେବ ବୋଲି ସେମାନେ ନିଜର ବ୍ରତ ବୋଲି ଧରି ନେଇଥାଆନ୍ତି । ଅବଶେଷରେ ସେମାନଙ୍କର ସ୍ୱପ୍ନଭଙ୍ଗ ହୁଏ ଓ ପୁସ୍ତକ କୀଟ ହେବାର ମୋହ କଟିଯାଏ । ଆଉ ଗୋଟିଏ ବର୍ଗ ହରମାନ୍ ହେସ୍‌ଙ୍କ 'ସିଦ୍ଧାର୍ଥ' ଭଳି ଜୀବନର ଅସଲ ଉଦ୍ଦେଶ୍ୟ ଅନୁଭବ କରିବା ପାଇଁ ଓ ଗୌତମବୁଦ୍ଧଙ୍କ ଭଳି ଦିବ୍ୟାଲୋକରେ ଆଲୋକିତ ହେବା ପାଇଁ ବାହାରି ପଡିଥାଆନ୍ତି । ନଦୀ କୂଳରେ ଆଲୋକିତ ହେବା ପାଇଁ ବାହାରି ପଡିଥାଆନ୍ତି । ନଦୀ କୂଳରେ ନାଉରିଆ ହୋଇଯାଇ ଜୀବନଟିକୁ କାଟି ଦିଅନ୍ତି । ସ୍ତ୍ରୀ, ପୁଅ ଓ ଘର ସଂସାର ସବୁ ନିରର୍ଥକ ଜଣା ପଡେ । ମଣିଷ କେବଳ ଯେ ନିଜ ପାଇଁ ବଞ୍ଚି ରହିଛି ଓ ସେ ବଞ୍ଚିବାରେ ଏକ ଅଭୂତପୂର୍ବ ଆନନ୍ଦ ଅଛି ତାହା ମଧ୍ୟ ଅନୁଭବ କରିହୁଏ । ତୃତୀୟ ବର୍ଗର ଲୋକେ କିନ୍ତୁ କାଳ୍ପନିକ ବା ଭାବପ୍ରବଣତାର ପୃଥିବୀକୁ ଅତିକ୍ରମ କରି ଏକ ବାସ୍ତବ ପୃଥିବୀର ମଣିଷମାନଙ୍କ ସହ ସାମିଲ୍ ହେବାକୁ ନିଜର ଯାତ୍ରା ଆରମ୍ଭ କରିଥାଆନ୍ତି । ଏଥିରେ ସଂଶୟତା ବା ସଂଦିଗ୍ଧତା ନଥାଏ । ଥାଏ ଅସଲ ଓ ନଗ୍ନ ବାସ୍ତବତା । ଜଣେ ମଣିଷ ଆଉ ଜଣେ ମଣିଷକୁ ଖୋଜିବାରେ ଏକ ଅଭିନବ ପ୍ରୟାସ ଭିତରେ ହଜାଇ ଦିଏ । ମୁଁ ସ୍ୱୀକାର କରିବି ଯେ ବିଶ୍ୱ ବିଖ୍ୟାତ ବିପ୍ଳବୀ ' ସେ ଗୁଏଭେରା'(Che Guevara)ଙ୍କ 'ମୋଟର ସାଇକେଲ୍ ଡାଏରୀଜ୍' ମୋ ଜୀବନର ଅନ୍ୟଏକ ମାଇଲଖୁଣ୍ଟ । ଅବଶ୍ୟ ଜୀବନରେ 'ଡନ୍‌କୁଇଟ୍ଟି', 'ସିଦ୍ଧାର୍ଥ' ବା 'ସେ ଗୁଏଭେରା' ହେବାର ସ୍ୱପ୍ନ ଦେଖିବା ଏକ ବିଳାସୀ ମନର ଖିଆଲୀ ଭାବନା ଛଡା ଅନ୍ୟ କିଛି ନୁହେଁ ।

କିନ୍ତୁ ଏପରି ମଣିଷମାନେ ଯେ ଏ ପୃଥିବୀରେ ଜନ୍ମ ହୋଇଛନ୍ତି ଓ ସ୍ୱପ୍ନବାଦୀର କଳ୍ପନା ବିଳାସକୁ ସାର୍ଥକ କରିଛନ୍ତି, ଏହା ଅସ୍ୱୀକାର କରିହେବ ନାହିଁ । କେଉଁଠି ନା କେଉଁଠି ଏହା ସାକାର ହୋଇଛି ନିଶ୍ଚିତ ।

'ସେ ଗୁଏଭେରା' ଗତ ଶତାବ୍ଦୀର ଅନ୍ୟତମ ମହାନ୍ ବିପ୍ଳବୀ ଓ ଗରିଲା ଯୋଦ୍ଧା ବୋଲି ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି । ସେ ବିପ୍ଳବୀର ପଥ ବାଛିବା ପୂର୍ବରୁ ଲାଟିନ୍ ଆମେରିକାରେ କ'ଣ ଘଟିଛି ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଆଲ୍‌ବର୍ଟୋ ଗ୍ରାନାଡୋ (Alberto Granado)ଙ୍କ ସହ ବାହାରି ପଡିଛନ୍ତି ଏକ ଦୀର୍ଘ ମୋଟର ସାଇକେଲ ଯାତ୍ରାରେ । ଭଙ୍ଗା ପୁରୁଣା ମୋଟର ସାଇକେଲଟି ଉପରେ ଭରସା କରି ଦୁର୍ଗମ ଦୀର୍ଘ ପଥ ଅତିକ୍ରମ କରିବା ଏକ ଚରମ ଦୁଃସାହସିକତା ଛଡା ଅନ୍ୟ କିଛି ହୋଇନପାରେ । ମୋଟର ସାଇକେଲଟି ଅନେକ ବାର ଭାଙ୍ଗିଛି ଓ ମରାମତି କରିବା କଷ୍ଟକର ହୋଇପଡିଛି । ଏଇ ଯାତ୍ରାର ଡାଏରୀ 'ସେ ଗୁଏଭେରା' କେବେ କେମିତି ଲେଖିଛନ୍ତି ଓ ଯାହା ବିଶ୍ୱରେ 'ଦି ମୋଟର ସାଇକେଲ ଡାଏରୀଜ୍' ନାମରେ ପ୍ରକାଶିତ ହୋଇଛି । ଜଣେ ଲୋକପ୍ରିୟ ବିପ୍ଳବୀଙ୍କ ଲେଖନୀମୁନରୁ ସୃଷ୍ଟି ହୋଇଥିବା ଛୋଟ ବହିଟିଏ । ବହିଟିକୁ ଆଧାର କରି ଏକ ଚଳଚ୍ଚିତ୍ର ତିଆରି କରାଯାଇଛି ଯାହା ମଧ ଏକ ଚମତ୍କାର ଉପସ୍ଥାପନ । ପ୍ରତ୍ୟେକ ତରୁଣ ଯୁବକ ଓ ଯୁବତୀ ଏ ବହିଟି ପଢ଼ିବା କଥା ଓ ଫିଲ୍ମଟିକୁ ଦେଖିବା କଥା । ଜଣେ ବିପ୍ଳବୀ ହେଉ କି ନହେଉ, 'ସେ ଗୁଏଭେରା'ଙ୍କ ଏ ମୋଟର ସାଇକେଲ ଯାତ୍ରାରୁ ଅନେକ କିଛି ଶିଖିବାର ଅଛି ଓ ନିଜକୁ ନିଜର ଦୃଷ୍ଟିକୋଣରୁ ବଦଳାଇବାର ଆବଶ୍ୟକତା ଅନୁଭବ କରିବାର ଅଛି । ସାରା ଲାଟିନ୍ ଆମେରିକାର 'ସେ ଗୁଏଭରା' ଜଣେ କିମ୍ବଦନ୍ତୀ ପୁରୁଷ ଓ ବିପ୍ଳବର ସଙ୍କେତ । 'ସେ ଗୁଏଭେରା'ଙ୍କ ଜନ୍ମ ଆର୍ଜେଣ୍ଟିନାରେ ୧୯୨୮ ମସିହାରେ ଏକ ମଧ୍ୟବିତ୍ତ ପରିବାରରେ । ପିଲାଦିନରୁ ଆଜ୍‌ମା ରୋଗରେ ଆକ୍ରାନ୍ତ ହୋଇଥିବାରୁ ସେ ଗୁଏଭେରାଙ୍କୁ ସ୍କୁଲ ଯିବା ଅନେକ ବିଳମ୍ବରେ ଆରମ୍ଭ ହୋଇଥିଲା । 'ସେ ଗୁଏଭେରା' ଇଞ୍ଜିନିୟର ହେବାକୁ ଚାହୁଁଥିଲେ ସତ, କିନ୍ତୁ ଡାକ୍ତରୀ ପଢ଼ିବାକୁ ନିଷ୍ପତ୍ତି ନେଇଥିଲେ ୧୯୪୮ ମସିହାରେ । ୧୯୫୦ ମସିହାରେ ସେ ୪୫୦୦କି.ମି. ବ୍ୟାପୀ ଉତ୍ତର ଆର୍ଜେଣ୍ଟିନାର ଅତିଶୟ ବିପଦଶଙ୍କୁଳ ଓ ଦୁର୍ଗମ ରାସ୍ତାକୁ ମୋଟର ସାଇକେଲରେ ଅତିକ୍ରମ କରିଥିଲେ । ୧୯୫୧ ମସିହା ଅକ୍ଟୋବର ମାସରେ ନଅମାସ ଧରି ତାଙ୍କର ବନ୍ଧୁ ଆଲ୍‌ବର୍ଟୋ ଗ୍ରାନାଡୋଙ୍କ ସହ ବାହାରି ପଡିଥିଲେ ମୋଟର ସାଇକେଲରେ ସାରା ଲାଟିନ୍ ଆମେରିକା ଦେଖିବାକୁ । ୧୯୫୩ ମସିହାରେ ଡାକ୍ତର ହେବା ପରେ ସେ ଲାଟିନ୍ ଆମେରିକାକୁ ପୁଣି ଥରେ ଦେଖିବାକୁ ବାହାରି ପଡିଥିଲେ । ଏଥିରେ ବଲିଭିଆ, ପେରୁ, ଇକ୍ୱେଡର, କୋଷ୍ଟାରିକା ଏବଂ ଗୁଏଟେମାଲା ଅନ୍ତର୍ଭୁକ୍ତ ହୋଇଥିଲା । ଏ ଗ୍ରସ୍ତରେ କ୍ୟୁବାର ବିପ୍ଳବୀ ଆନ୍ତୋନିଓ ଲୋପେଜ୍‌ଙ୍କ ସହ ଦେଖା ହୋଇଥିଲା । ବଲିଭିଆରେ ବିପ୍ଳବକୁ ସେ ସମୟରେ ସେ ଆଖି ଆଗରେ ଦେଖିଥିଲେ । ୧୯୫୪ ମସିହାରେ ଗୁଏଟେମାଲାର ଗଣତାନ୍ତ୍ରିକ ସରକାର ଆମେରିକା ଦ୍ୱାରା ସମର୍ଥିତ

ସେନାବାହିନୀ ଦ୍ୱାରା ଗାଦିଚ୍ୟୁତ ହୋଇଥିଲେ । ସେଠାରୁ ସେ ମେକ୍ସିକୋରେ ପହଞ୍ଚିଥିଲେ ଓ ସେଠାରେ କ୍ୟୁବାର ଏକଛତ୍ରବାଦୀ ବାଟିଷ୍ଟା ସରକାରଙ୍କ ଠାରୁ ସ୍ୱାଧୀନତା ପାଇଁ ଲଢୁଥିବା ବିପ୍ଳବୀ ନେତୃବୃନ୍ଦଙ୍କ ସହ ସାମିଲ୍ ହୋଇଥିଲେ । କ୍ୟୁବାର ମହାନ୍ ବିପ୍ଳବୀ ନେତା ଫିଡେଲ୍ କାଷ୍ଟ୍ରୋଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା ଓ ବାଟିଷ୍ଟା ସରକାରଙ୍କ ବିରୁଦ୍ଧରେ ଗରିଲା ଯୁଦ୍ଧରେ ଗରିଲାବାହିନୀର ଡାକ୍ତର ହିସାବରେ କ୍ୟୁବା ଯାଇଥିଲେ ୧୯୫୬ ମସିହାରେ । ଯୁଦ୍ଧ କ୍ଷେତ୍ରରେ ରଣନୀତିର ଅସମ୍ଭବ ପ୍ରତିଭା ଦେଖାଇଥିବା 'ସେ ଗୁଏଭେରା' ଜଣେ ବିପ୍ଳବୀ କମାଣ୍ଡରର ପଦବୀ ପାଇଥିଲେ । ୧୯୫୯ ମସିହାରେ କ୍ୟୁବାର ନାଗରିକତ୍ୱ ଅର୍ଜନ କରିଥିଲେ । ୧୯୫୮ରେ କାଷ୍ଟ୍ରୋଙ୍କ ନେତୃତ୍ୱରେ କ୍ୟୁବାରେ ଯେଉଁ ସରକାର ପ୍ରତିଷ୍ଠା ହୋଇଥିଲା, ସେଥିରେ ସେ ମନ୍ତ୍ରୀପଦ ପାଇଥିଲେ । ଆଲ୍‌ଜେରିଆ ଯେତେବେଳେ ସ୍ୱାଧୀନ ହେଲା, ସେଠାକୁ ଯାଇଥିଲେ । ସୋଭିଏତ ୟୁନିଅନ, ଚେକୋସ୍ଲୋଭାକିଆ, ଚୀନ୍ ଏବଂ ଉତ୍ତର କୋରିଆ ଦେଶ ମଧ୍ୟ ଯାଇ କ୍ୟୁବା ସହ ସେ ଦେଶମାନଙ୍କର ବିଭିନ୍ନ ଚୁକ୍ତିନାମା ସ୍ୱାକ୍ଷର କରିଥିଲେ । ଆଫ୍ରିକାର ବିଭିନ୍ନ ଦେଶ ମଧ୍ୟ ଗ୍ରସ୍ତ କରିଥିଲେ ୧୯୬୪ ମସିହାରେ । ୧୯୬୫ ମସିହାରେ କଙ୍ଗୋର ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ କରି ସେ ଦେଶରେ ବିପ୍ଳବର ପତକା ଉତ୍ତୋଳନ କରିଥିଲେ । ତା'ପରେ ୧୯୬୭ ମସିହାରେ ବଲିଭିଆରେ ସେ ଦେଶର ସାମରିକ ଶାସନ ବିରୁଦ୍ଧରେ ଏକ ଗରିଲା ଯୁଦ୍ଧ ଆରମ୍ଭ କରିଥିଲେ । କିନ୍ତୁ ଆମେରିକାର ସି.ଆଇ.ଏ.ଠାରୁ ସୂଚନା ପାଇ ବଲିଭିଆର ସାମରିକ ବାହିନୀ ତାଙ୍କୁ ବନ୍ଦୀ କରିଥିଲା । ଅକଥନୀୟ ଅତ୍ୟାଚର ପରେ ୧୯୬୭ ମସିହା ଅକ୍ଟୋବର ୯ ତାରିଖ ଦିନ ତାଙ୍କୁ ହତ୍ୟା କରାଯାଇଥିଲା । ଏଇପରି ଭାବରେ ପୃଥିବୀର ଜଣେ ମହାନ ଓ ସାହସିକ ବିପ୍ଳବୀଙ୍କୁ ନିଶ୍ଚିହ୍ନ କରି ଦିଆଗଲା ସତ, ସେ କିନ୍ତୁ ସାରା ପୃଥିବୀର ନୂତନ ଯୁବପୀଢ଼ିର ଆଦର୍ଶ ଓ ପ୍ରେରଣା ହୋଇ ରହିଯାଇଛନ୍ତି । ବିଶ୍ୱ ସାମାଜିକ ଆନ୍ଦୋଳନରେ ପରିବର୍ତ୍ତନର ଏକ ବଳିଷ୍ଠ ବାର୍ତ୍ତାବହ ଭାବରେ ନିଜକୁ ପ୍ରତିଷ୍ଠା କରିଛନ୍ତି ।

"ମୋଟର ସାଇକେଲ ଡାଏରୀଜ୍" ବହିଟି ଅନନ୍ୟ ଓ ଅସାଧାରଣ । "ସେ ଗୁଏଭେରା" ଏହି ଯାତ୍ରାକାଳ ଭିତରେ ନିଜକୁ ଆବିଷ୍କାର କରିଥିଲେ ନୂତନ ଭାବେ । କେବଳ ନିଜ ଦେଶ ଆର୍ଜେଣ୍ଟିନା ନୁହେଁ । ଚିଲୀ, ପେରୁ ଆଦି ଦେଶରେ ସେ ଧନୀ ଓ ଗରିବଙ୍କ ଭିତରେ ଥିବା ଖାଇକୁ ଦେଖୁଥିଲେ । ମୂଳ ଆଦିବାସୀମାନଙ୍କର ଦୁରବସ୍ଥା ଏପରି କାହିଁକି ବୋଲି ବୁଝି ପାରିଥିଲେ । ଔପନିବେଶିକମାନେ ଗୋଟାଏ ଜାତିକୁ କିପରି ଲୁଣ୍ଠନ କରିଛନ୍ତି ତାହା ଲକ୍ଷ୍ୟ ସେ କରିଥିଲେ । ମାଚୁପିଚୁର ଧ୍ୱଂସାବଶେଷ ଦେଖି କାନ୍ଦିପକାଇଥିଲେ ଯେ ଏକ ବିକଶିତ ସଭ୍ୟତା କିପରି ନଷ୍ଟ ହୋଇଯାଇଛି । ସବୁଠାରୁ ତାଙ୍କୁ ଅଭିଭୂତ କରିପକାଇଥିଲା ପେରୁର ଆମାଜନ୍ ନଦୀ କୂଳରେ ଅବସ୍ଥିତ କୁଷ୍ଠରୋଗୀଙ୍କ କଲୋନୀଟି । ସେ ଓ ତାଙ୍କର ବନ୍ଧୁ ଡାକ୍ତର ହୋଇ ସେବା କରିଥିଲେ ସେଠାରେ କିଛି ଦିନ ଧରି । ଡାକ୍ତର ହିସାବରେ ଆମାଜନ ନଦୀ ତଟରେ ତାଙ୍କୁ ସୁନ୍ଦର ଘର ମିଳିଥିଲା ।

କିନ୍ତୁ କୁଷ୍ଠରୋଗୀମାନେ ନଦୀର ଆର ତଟରେ ଅଲଗା ରହୁଥିଲେ । ତାଙ୍କ ଜନ୍ମଦିନ ପାର୍ଟିର ସମସ୍ତ ଆନନ୍ଦ ଉତ୍ସବ ପରିତ୍ୟାଗ କରି ସେ ଆମାଜନ ନଦୀକୁ ପହଁରି ଆର କୂଳରେ ଥିବା କୁଷ୍ଠରୋଗୀଙ୍କ ସହ ରାତିଟି କାଟିଥିଲେ । ସେଠାରେ ନଦୀର ଚଉଡା ଥିଲା ଅଢ଼େଇ ମାଇଲ । ଅବହେଳିତମାନଙ୍କ ସହ ସାମିଲ୍ ହେବାକୁ ସେ ଦୃଢ଼ ପରିକର ଏହି ସନ୍ତରଣ ପ୍ରମାଣ କରି ଦେଇଥିଲା ସେଦିନ । ଏସବୁ ପାର୍ଥକ୍ୟ ଓ ପରିବେଶ ତାଙ୍କ ମନକୁ ଛୁଇଁଥିଲା ଓ ସେ ଧୀରେ ଧୀରେ ସମାଜ ଏବଂ ଜୀବନ ପ୍ରତି ନିଜର ଆଭିମୁଖ୍ୟ ବଦଳାଇଥିଲେ । ସେ ଶପଥ କରି କହିଥିଲେ ଯେ – 'ମୁଁ ଜାଣେ ଯେତେବେଳେ ଗୋଟାଏ ଶକ୍ତି ମାନବଜାତିକୁ ଦୁଇଟି ପରସ୍ପର ବିରୋଧୀ ଗୋଷ୍ଠୀରେ ବାଣ୍ଟି ଦେଇଛି, ମୁଁ ସେତେବେଳେ ସାଧାରଣ ମଣିଷମାନଙ୍କ ପଟରେ ରହିବି ।' ଲାଟିନ୍ ଆମେରିକା ସାରା ସେ ତାଙ୍କ ଯାତ୍ରାକାଳରେ ଦେଖିଥିଲେ ଦାରିଦ୍ର୍ୟ, ଅନ୍ୟାୟ ଓ ଅତ୍ୟାଚର ଏବଂ ପଢ଼ିଥିଲେ ମାର୍କସ୍‌ବାଦୀ ସାହିତ୍ୟ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଏକ ଢ଼ାଞ୍ଚାଗତ ପରିବର୍ତ୍ତନ ଆଣିବା ପାଇଁ ସଶସ୍ତ୍ର ସଂଗ୍ରାମର ଆବଶ୍ୟକତା ରହିଛି । ଲାଟିନ୍ ଆମେରିକାକୁ ଗୋଟାଏ ଦୃଷ୍ଟିରେ ଦେଖିଲେ ଏହା ଏକ ଜାତି ଯାହା ସାମ୍ରାଜ୍ୟବାଦୀ ଏବଂ ନବ ଉପନିବେଶବାଦୀଙ୍କ କବଳରେ ବାନ୍ଧି ହୋଇଛି । କିନ୍ତୁ ସମସ୍ତଙ୍କ ଭିତରେ ଥିବା ସମ୍ପର୍କକୁ ସେ ନିବିଡତାର ସହ ଦେଖୁଥିଲେ । ଆଉ ସ୍ୱପ୍ନ ଦେଖୁଥିଲେ ଗୋଟାଏ ଏକତ୍ରିତ ଓ ସମନ୍ୱିତ ଲାଟିନ୍ ଆମେରିକା । ସେ ସବୁଠି ବିପ୍ଲବର ବହ୍ନି ଜଳି ଉଠିବାର ଆଭାସ ପାଇଥିଲେ । ଜଣେ ମହାନ ବିପ୍ଲବୀ ତାଙ୍କ ଭିତରେ ଜନ୍ମ ନେଇଥିଲା ଏଇ ମୋଟର ସାଇକେଲ୍ ଯାତ୍ରା ବେଳେ ।

ଡନ୍ କୁଇକ୍ସୋଟ୍‌ଙ୍କ ଅଶ୍ୱର ନାମ ହେଉଛି 'ରୋସିନାଣ୍ଟେ' । ଗୁଏଭେରାଙ୍କ ମଟର ସାଇକେଲ୍‌ର ନାମ ହେଉଛି 'ଲା ପୋଡେରୋସା' ବା 'ସର୍ବଶକ୍ତିମାନ୍' । ହୁଏତ କିଛିଟା ସାମଞ୍ଜସ୍ୟ ରହିଛି ଏ ଭିତରେ । କିନ୍ତୁ ଗୋଟାଏ କଥା ନିତାନ୍ତ ସତ୍ୟ ଯେ ଦୁଃସାହସିକ ଅଭିଯାନ କେବେ ଶେଷ ହୁଏ ନାହିଁ । ଗୋଟିଏ ଅଧ୍ୟାୟ ଶେଷ ହୋଇଗଲେ, ଆଉ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହୁଏ । 'ସେ ଗୁଏଭେରା'ଙ୍କୁ ହତ୍ୟା କରାଯିବା ପରେ ଅନେକ କିଛି ନୂତନ ନୂତନ ଅଧ୍ୟାୟ ଆରମ୍ଭ ହୋଇଛି ପୃଥିବୀ ସାରା । କିଏ ଶାନ୍ତି ଓ ସଦ୍‌ଭାବନା ପାଇଁ ଆଗେଇ ଆସିଛି ତ କିଏ ସାମାଜିକ ପରିବର୍ତ୍ତନ ପାଇଁ । କିନ୍ତୁ ଏ ଅଭିଯାନ ଏବେ ମଧ୍ୟ ଶେଷ ହୋଇନାହିଁ । ବିଖ୍ୟାତ ଫରାସୀ ଔପନ୍ୟାସିକ ଆଲବର୍ଟ କାମ୍ୟୁ ବିପ୍ଲବ ଓ ବିଦ୍ରୋହ ସମ୍ପର୍କରେ ଅସାଧାରଣ ବିଶ୍ଳେଷଣ ଆମ ପାଇଁ ଲେଖିଯାଇଛନ୍ତି । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ତୃତୀୟ ବିଶ୍ୱଯୁଦ୍ଧ ଶାନ୍ତିର ବିପ୍ଲବ ଉପରେ ଆଧାରିତ ହେବ ବୋଲି ସେ ଭବିଷ୍ୟତ ବାଣୀ ଶୁଣାଇଛନ୍ତି । ଆମେ ଯେଉଁମାନେ ଏଇ ଅଭିଯାନ ସହ ସଂଶ୍ଳିଷ୍ଟ, ଆମ ନିଜସ୍ୱ ଉପାୟରେ ଏକ ଅନାଗତ ବିପ୍ଲବ ପାଇଁ ନିଜକୁ ପ୍ରସ୍ତୁତ କରୁଛେ ବୋଲି ସ୍ୱୀକାର କରିବାକୁ ହେବ । ଆମେ ଆଜି ଠାରୁ ପୁଣିଥରେ ଯାତ୍ରା ଆରମ୍ଭ କରିଛେ ।

□ □ □

## ପୃଷ୍ଠବନ୍ଧ

# ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର

*ଏକ ସଂକ୍ଷିପ୍ତ ଅନୁଧ୍ୟାନ*

I go with the wind, people of Orphalese but not down into emptiness.

And if this day is not a fulfilment of your need and my love, then set it be a promise till another day.

Man's needs change, but not his love, nor his desire that his love should satisfy his needs.

***The Prophet : Khalil Gibran***

'ଆତ୍ମକଥା : ଜଣେ ପଥଭ୍ରାନ୍ତ ପରିବ୍ରାଜକର' ଏକ ସମ୍ପୂର୍ଣ୍ଣ ଭିନ୍ନ ସ୍ୱାଦ ଓ ଭିନ୍ନ ଦୃଷ୍ଟିକୋଣର ପୁସ୍ତକ । ସମସାମୟିକ ରଚନା ସଂଗ୍ରହରେ ଏଭଳି ଏକ ରଚନା ସଂକଳନ ଯେକୌଣସି ପ୍ରାଦେଶିକ ଭାଷାରେ ନିଶ୍ଚିତ ଭାବେ ବହୁତ କମ୍ ସଂଖ୍ୟାରେ ଥିବ । ବିଭିନ୍ନ ସମୟରେ ମେ ୨୦୦୮ରୁ ଜୁଲାଇ ୨୦୦୯ ପର୍ଯ୍ୟନ୍ତ ପର୍ଯ୍ୟବେକ୍ଷକରେ ପ୍ରକାଶିତ ହୋଇଥିବା ପଚାଶଟି ସାବଲୀଳ ଓ ପ୍ରାଣବନ୍ତ ସନ୍ଦର୍ଭର ସଂକଳନ । ଲେଖକ ଶ୍ରୀ ଅଚ୍ୟୁତ ଦାସ ଜଣେ "ସଚେତନ ସମାଜକର୍ମୀ; ଅଗ୍ରଗାମୀର ପ୍ରତିଷ୍ଠାତା ଓ 'ମାଟିକାଦୁଅର ମଣିଷର ପକ୍ଷଧର' । ତାଙ୍କ ନିଜ ଭାଷାରେ ଏ ସନ୍ଦର୍ଭ ଗୁଡିକ ତାଙ୍କର 'Spiritual Journey'ର ଆଲେଖ୍ୟ ।

ସନ୍ଦର୍ଭ ଗୁଡିକ ଜୀବନଧର୍ମୀ ଓ ପ୍ରାଣ ପ୍ରାଚୁର୍ଯ୍ୟରେ ପୂର୍ଣ୍ଣ । ଲେଖକ ବିଭିନ୍ନ ସନ୍ଦର୍ଭରେ ନିଜର ବାତ୍ସଲ୍ୟ, ଯୌବନ, ବନ୍ଧୁମହଲ, ସ୍କୁଲ ଓ କଲେଜର ଦିନ, ନିଜର ଭ୍ରମଣ କାହାଣୀ, ଇତ୍ୟାଦିର ଏକ ହୃଦୟସ୍ପର୍ଶୀ ଓ ଅନ୍ତରଙ୍ଗ ଅବତାରଣ ସହିତ ଅନେକ ତାତ୍ତ୍ୱିକ ବିଷୟରେ ଆଲୋଚନା ଖୁବ୍ ସହଜ ଭାବରେ କରିଛନ୍ତି ।

ଯେଭଳି କବି ରବୀନ୍ଦ୍ରନାଥଙ୍କ ଲେଖା ପଢ଼ିଲେ ମନକୁ ଆସେ କବିଙ୍କର ଅସୀମ ଭଲପାଇବା, ସ୍ନେହ, ଶ୍ରଦ୍ଧା ଓ ଆକର୍ଷଣ - ମଣିଷ ପ୍ରତି ପ୍ରକୃତି ପ୍ରତି ଜୀବନ ପ୍ରତି ଓ ଭଗବାନଙ୍କ ପ୍ରତି - ଓ ସେସବୁରେ ଅନ୍ତର୍ନିହିତ ଏକ ଆଧ୍ୟାତ୍ମିକ ଚିନ୍ତାଧାରାର ସ୍ରୋତ (ଜଗତେ ଆନନ୍ଦ ଯଜ୍ଞେ ଆମାର ନିମନ୍ତ୍ରଣ । ଧନ୍ୟ ହଲ ଧନ୍ୟ ହଲ ମାନବ ଜୀବନ' - ଗୀତାଞ୍ଜଳି) ଏବଂ ଏସବୁ ଦ୍ୱାରା ଅଭିଭୂତ ନ ହୋଇ ରହିହୁଏ ନାହିଁ, ସେପରି ଲେଖକ

ଶ୍ରୀ ଅଚ୍ୟୁତ ଦାସଙ୍କର ଏଇ ସନ୍ଦର୍ଭ ଗୁଡ଼ିକରେ ମଧ୍ୟ ତାଙ୍କର ଜୀବନ, ପ୍ରକୃତି ଓ ଅନେକ ଏବଂ ବିଶୁଦ୍ଧ ଭଲପାଇବାର ସର୍ବମୟ ପ୍ରତିଫଳନ ଦେଖିବାକୁ ମିଳେ ଯାହା ପାଠକଙ୍କୁ ଖୁବ୍ ପ୍ରଭାବିତ କରେ ।

ସେ ସର୍ବମୟ ଭଲପାଇବା ସହ ଅନେକ ସ୍ଥାନରେ ଗଭୀର ଆଧ୍ୟାତ୍ମିକ ଚେତନା ମଧ୍ୟ କେଉଁଠାରେ ପ୍ରଚ୍ଛନ୍ନ ଓ କେଉଁଠାରେ ପ୍ରାଞ୍ଜଳ ଭାବେ ମିଶି ରହିଛି । ଏସବୁ ଆତ୍ମଚିନ୍ତନ ଓ ବିଶ୍ଳେଷଣର ଏକ ଅନନ୍ୟ ସମନ୍ୱୟ 'ଆତ୍ମକଥା : ଏକ ପଥଭ୍ରାନ୍ତ ପରିବ୍ରାଜକର' । ପ୍ରତ୍ୟେକ ସନ୍ଦର୍ଭ ଯେପରି ଏକ ବହମାନ ସ୍ରୋତ । ଲେଖକଙ୍କର କାବ୍ୟିକ ଓ ମନନଶୀଳ ବ୍ୟକ୍ତିତ୍ୱର ପ୍ରତିଫଳନ । ଜୀବନ ଜିଜ୍ଞାସାର ସମ୍ବେଦନଶୀଳ ବିଶ୍ଳେଷଣ । ଏ ଚିନ୍ତାସ୍ରୋତର ଆଗରେ କ'ଣ ଅଛି । ଲେଖକ କ'ଣ ଉପସ୍ଥାପନ କରିବାକୁ ଯାଉଛନ୍ତି, ପଢ଼ିଲା ବେଳେ ପାଠକ ମନରେ ସ୍ୱତଃ ଏ ପ୍ରଶ୍ନ ଆସେ ।

ଶୂନ୍ୟ ଓ ଶୂନ୍ୟତା, ଅସ୍ତିତ୍ୱହୀନତା, ୟୁଟୋପିଆ, ମାୟା, ନଷ୍ଟାଲଜିଆ, ବିଜ୍ଞାନ, ଆଧ୍ୟାତ୍ମିକତା ଆଦି ବିଭିନ୍ନ ବିଷୟରେ ଅନେକ ସରଳ ଓ ଜଟିଳ ପ୍ରଶ୍ନର ଅବତାରଣା ସବୁ ସନ୍ଦର୍ଭରେ । ପାଠକଙ୍କୁ ଏସବୁ ବିଷୟରେ ଅନେକ ଉପାଦେୟ ଓ ସାରଗର୍ଭକ ଚିନ୍ତାଧାରାର ଖିଅ ମିଳିଯିବ । ଲେଖକଙ୍କ ଭାଷାରେ ସେ 'ପଥଋରୀ' ଓ 'ବନଋରୀ' ମଧ୍ୟ ଏବଂ ସେ ଅନୁଭବ କରନ୍ତି ଏଭଳି ପ୍ରଶ୍ନସବୁ ଯାହା ଜୀବନ ଯାତ୍ରାକାଳରେ ଅଧିକାଂଶଙ୍କ ମନରେ ଆସୁଥିବ । ପ୍ରଶ୍ନଗୁଡ଼ିକ କିଛି ବାହ୍ୟ ଓ ପାରିପାର୍ଶ୍ୱିକ ଆଲୋଚନା ପରେ ଏକ ତାତ୍ତ୍ୱିକ ଏବଂ ଅନ୍ତର୍ମୁଖୀ ପର୍ଯ୍ୟାୟରେ ପହଞ୍ଚେ ।

"The traveller has to knock at every alien door to come to his own, and one has to wonder through all the outer worlds to reach the inner most shrine at the end × × × . The question and cry 'Oh, where !' melt into thousand streams and deluge the world with the flood of assurance 'I am'." (Gitanjali)

ଲେଖକଙ୍କର ପଠନ ଅପରିସୀମ । ପୃଥିବୀର ଅନେକ ସମ୍ମାନସ୍ପଦ, ପ୍ରତିଭାବନ୍ତ ଓ ପ୍ରଭାବଶାଳୀ ଲେଖକଙ୍କୁ ସେ ଗଭୀର ଭାବେ ଅଧ୍ୟୟନ ଓ ଅନୁଶୀଳନ କରିଛନ୍ତି, ପ୍ରଭାବିତ ହୋଇଛନ୍ତି ଓ ସେସବୁ ରଚନାରୁ ନିର୍ଯ୍ୟାସ ଗ୍ରହଣ କରିଛନ୍ତି । କେବଳ ଏ ବହିଗୁଡ଼ିକର ନାମ ତାଲିକା ହିଁ ଅନ୍ୟ ଏକ ଅର୍ଥରେ ଏ ପୁସ୍ତକର Bibliography ହୋଇପାରିବ । କେତେ ଗୁଡ଼ିଏ ବହି ଉପରେ ଲେଖକ ସ୍ୱାଭାବିକ ଓ ସୁନ୍ଦର ଭାବରେ ଯେଉଁ ଅନୁଶୀଳନ ଓ ବିଶ୍ଳେଷଣ ପ୍ରସ୍ତୁତ କରିଛନ୍ତି ସେଗୁଡ଼ିକ ହେଲା 'ଜନାଥନ ଲିଭିଙ୍ଗଷ୍ଟୋନ ସି ଗଲ' ଲେଖକ ରିଋର୍ଡ଼ ବାକ୍, ଡାନସିଂ ଉ ଲି ମାଷ୍ଟରସ୍, ଗ୍ୟାରୀ ଜୁକାଭ, ଦି ତାଓ ଅଫ ଫିଜିକ୍ସ, ଫ୍ରିଜୋଫ୍ କାପ୍ରା, ଜେନ୍ ଆଣ୍ଡ ଦି ଆର୍ଟ ଅଫ୍ ମୋଟରସାଇକେଲ ମେଣ୍ଟିନାନ୍ସ ରବର୍ଟ ପିରସିଗ ଏବଂ ଓଲଡ଼୍ମ୍ୟାନ୍ ଏଣ୍ଡ ଦି ସି, ଅରନେଷ୍ଟ ହେମିଂୱେ ।

'ପର୍ବତ ପ୍ରେମ ଓ ଉନ୍ମାଦନା' ଲେଖକଙ୍କର ଏକ ରୁଚିପୂର୍ଣ୍ଣ ଓ ତଥ୍ୟ ସମ୍ବଳିତ ଭ୍ରମଣ କାହାଣୀ ।

ନଦୀ ବିଷୟରେ ତିନୋଟି ସନ୍ଦର୍ଭ ଆଧ୍ୟାତ୍ମିକ ଜୀବନ ଯାତ୍ରା ଓ ଜୟଯାତ୍ରାର ଦ୍ୟୋତକ । ଲେଖକଙ୍କ ଭାଷାରେ "ଜୀବନରେ ନଦୀ ସବୁବେଳେ ଭରି ଦେଇଛି ଚମତ୍କାର ପୂର୍ଣ୍ଣତା ଓ ମହନୀୟତା ।"

ଲେଖକଙ୍କର ସମୁଦ୍ର ପ୍ରତି ମଧ୍ୟ ଗଭୀର ଆକର୍ଷଣ । "ପ୍ରତି ମୁହୂର୍ତ୍ତରେ ଅବାରିତ ଭାବେ ସୃଷ୍ଟି ଓ ବିଲୟର ଝଲକ ଦେଇଥିବା ସମୁଦ୍ର କେତେ ଯେ ଆପଣାର ତାହା ମୁଁ ବିଭିନ୍ନ ସମୁଦ୍ର ଓ ମହାସମୁଦ୍ର କୂଳରେ କିଛି ସମୟ ଅତିବାହିତ କରି ଅନୁଭବ କରିଛି ।"

ଲେଖକଙ୍କର ତିନୋଟି ସନ୍ଦର୍ଭ ସଇତାନମାନଙ୍କ ବିଷୟରେ ମଧ୍ୟ ଏ ପୁସ୍ତକରେ ସନ୍ନିବିଷ୍ଟ । ଅନେକ ରୁଚିକର ଓ ଭାବୋଦ୍ଦୀପକ ପ୍ରଶ୍ନ ଓ ଧାରଣା, - ସଇତାନମାନଙ୍କ ବିଷୟରେ ମଧ୍ୟ - ପାଠକମାନଙ୍କୁ ଏଗୁଡ଼ିକରେ ମିଳିବ ।

ଏ ପୁସ୍ତକରେ ଲେଖକ ଉଠାଇଥିବା କେତେକ ପ୍ରଶ୍ନର ସମ୍ୟକ ଅନୁଧ୍ୟାନ ମୋ ମତରେ ଅପ୍ରାସଙ୍ଗିକ ହେବ ନାହିଁ ।

"......... କିନ୍ତୁ ଜଣେ ଆଧ୍ୟାତ୍ମିକ ପଥଚାରୀ ପାପ ଓ ପୁଣ୍ୟ ଭିତରେ ଥିବା ପ୍ରଭେଦ ଜାଣିବାକୁ ବାଧ୍ୟ × × । କିନ୍ତୁ ପାପ କ'ଣ ପୁଣ୍ୟ କ'ଣ ଏହା ଏକ ଚିରନ୍ତନ ପ୍ରଶ୍ନ । ପାପ ଓ ପୁଣ୍ୟ ସଇତାନ ଓ ଭଗବାନ ଆଦିରେ ବିଶ୍ୱାସ ରଖିଥିବା ମଣିଷମାନଙ୍କର ସ୍ୱତନ୍ତ୍ର ପରିଚୟ କ'ଣ ?"

(ପାପ-ପୁଣ୍ୟ ପ୍ରାସଙ୍ଗିକତା (୧))

"ଏହି ଅମୀମାଂସିତ ପରିଧିର ସେପଟେ ଏକ ଭଲ ପାଇବାର ପୃଥିବୀ ସବୁବେଳେ ରହିଆସିଛି । ମଣିଷ ସହ ମଣିଷର, ମଣିଷ ସହ ପୃଥିବୀର ଏବଂ ମଣିଷ ସହ ଦିବ୍ୟ ଶକ୍ତିର ।"

(ପାପ-ପୁଣ୍ୟ ପ୍ରାସଙ୍ଗିକତା (୨))

"ଜୀବନର ସବୁ ମୁହୂର୍ତ୍ତରେ ମୁଁ ପାଇଛି ଚାଲ ଆଗେଇ ଚାଲର ଝଲକ । ମୁଁ ଥକି ଯାଇନାହିଁ । ମୁଁ ହାରି ଯାଇନାହିଁ । ମୁଁ ପଛକୁ ଫେରି ନାହିଁ ।" ଚରୈବେତି ଚରୈବେତି - ଚାଲ, ଆଗେଇ ଚାଲ (୧)

"ହଜାର ହଜାର ବର୍ଷର ଜ୍ଞାନ, ବିଜ୍ଞାନ, ସ୍ୱର୍ଗୀୟ ଚିନ୍ତା ଓ ଚେତନା ଏବେ ମଧ୍ୟ ଯେମିତି ଜୀବନ ରହସ୍ୟର ସବୁ ଅଳିନ୍ଦ ଓ ନିଳୟକୁ ଉନ୍ମୋଚନ କରିପାରିନାହିଁ । ମୁଁ ଭାବୁଛି ମଣିଷ ଏଥିପାଇଁ ବଞ୍ଚି ରହିଛି ଓ ବଞ୍ଚିଥିବ ସବୁ ଯୁଗରେ ।" (ମଣିଷର ଜୀବନ ଯାତ୍ରା : ପଛକୁ ନୁହେଁ ଆଗକୁ)

ଏମିତି ଆହୁରି ଅନେକ ପ୍ରଶ୍ନ, ଜିଜ୍ଞାସା ଓ ଅଭୀପ୍ସା ।

ବିଭିନ୍ନ ସନ୍ଦର୍ଭରେ ଲେଖକ ପାଠକ ସମ୍ମୁଖରେ ଜୀବନ ଯୌବନ, ପୁରାତନ, ନୂତନ, ଧର୍ମ ଅଧର୍ମ ଓ ଜୀବନ ମୃତ୍ୟୁର ଯେଉଁ ସବୁ ମର୍ମସ୍ପର୍ଶୀ ଓ ଐକାନ୍ତିକ ଦୃଶ୍ୟ ତୋଳିଧରନ୍ତି ତାହା ସମାପ୍ତ ହୁଏ ଏ ପୁସ୍ତକର ଶେଷ ସନ୍ଦର୍ଭ "ପରିବ୍ରାଜକର ଆରମ୍ଭ ଓ ଶେଷ ବୃତ୍ତାନ୍ତରେ", "ଆମେ ଯେଉଁମାନେ ଏଇ ଅଭିଯାନ ସହ ସଂଶ୍ଳିଷ୍ଟ ଆମ ନିଜସ୍ୱ ଉପାୟରେ ଏକ ଅନାଗତ ବିପ୍ଳବ ପାଇଁ ନିଜକୁ ପ୍ରସ୍ତୁତ କରୁଛେ ବୋଲି ସ୍ୱୀକାର କରିବାକୁ ହେବ । ଆମେ ଆଜିଠାରୁ ପୁଣିଥରେ ଯାତ୍ରା ଆରମ୍ଭ କରିଛେ ।"

"ମାନବ ଜୀବନ ନୁହେଁ ମିଥ୍ୟା ଜାଣ
କିବା କୂଟନୀତି କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ
ଯା ଜୀବନଗତି ତତ୍ତ୍ୱ ଅଭିମୁଖୀ
ସେହି ଏକାକୃତୀ ସେହି ଏକା ସୁଖୀ ।
ତତ୍ତ୍ୱର ସାଧନେ କୃତ୍ୟ କୃତ୍ୟ ଜନ
ଲଭି ଶରଣେ ଅମୃତ ଜୀବନ ।
(ବନ୍ଦୀର ସ୍ୱଦେଶ ଚିନ୍ତା : ଉତ୍କଳମଣି ଗୋପବନ୍ଧୁ ଦାସ ।)

ଲେଖକଙ୍କର ଏ ଅନବଦ୍ୟ ସୃଷ୍ଟି ସମ୍ଭାର, ଏକ ବୌଦ୍ଧିକ ଆତ୍ମ ସମୀକ୍ଷା ଓ ଆତ୍ମ ନିବେଦନ । ଏହା ସମ୍ବେଦନଶୀଳ ପାଠକମାନଙ୍କ ଦ୍ୱାରା ନିଶ୍ଚୟ ଆଦୃତ ହେବ ବୋଲି ଆଶା । ମୋ ହିସାବରେ ଯାହା ସମ୍ଭବ, ସେଭଳି ଏକ ସହଜ ଓ ସ୍ୱକୀୟ ଶୈଳୀରେ ଏ ପୁସ୍ତକଟି ବିଷୟରେ ମୋର କିଛି ଚିନ୍ତାଧାରା ପ୍ରକାଶ କରିବା ପାଇଁ ସୁଯୋଗ ଦେଇଥିବା ହେତୁ ବନ୍ଧୁ ଶ୍ରୀ ଅଚ୍ୟୁତ ଦାସଙ୍କ ନିକଟରେ ମୁଁ କୃତଜ୍ଞ ।

**ସିନ୍ଧୁବାଳା ଚୌଧୁରୀ**

❒ ❒ ❒



## ଲେଖକ : ଅଚ୍ୟୁତ ଦାସ

ଅଗ୍ରଗାମୀ, କାଶୀପୁର, ରାୟଗଡ଼ା, ଓଡ଼ିଶା ଜଗତୀକରଣର ଘୂର୍ଣ୍ଣିବଳୟ ଭିତରେ ଏକ ଅବିଚଳିତ ଚରିତ୍ର । ଏକ ବହୁଚର୍ଚ୍ଚିତ ନାମ । ସ୍ୱାଧୀନୋତ୍ତର ନୂଆ ପିଢି ସମାଜ ସେବାର ମାଇଲଖୁଣ୍ଟ ପୋତିଥିବା ଜଣେ ବେସାଲିସ ଆକ୍ଟିଭିଷ୍ଟ । ରେଭେନ୍ସାରୁ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା । ସେ ଅକ୍ସଫାମ ଇଣ୍ଡିଆ ଟ୍ରଷ୍ଟରେ ପ୍ରୋଗ୍ରାମ ଅଫିସର ଭାବେ ଯୋଗଦେବା ସହିତ ରାଜ୍ୟ ଓ ରାଜ୍ୟ ବାହାରର ଅନେକ ସମାଜସେବା ଅନୁଷ୍ଠାନ ସହିତ ଓତପ୍ରୋତ ଜଡିତ । ତାଙ୍କର ସମାଜସେବା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ପାଇଁ ରାଜ୍ୟ ସରକାର ଓ ଭାରତ ସରକାର ତାଙ୍କୁ ଅନେକ ବିକାଶମୂଳକ ଅନୁଷ୍ଠାନରେ ସାମିଲ କରି ତାଙ୍କର ପରାମର୍ଶକୁ ଗ୍ରହଣ କରିଛନ୍ତି ।

## ଭିନ୍ନ ଭିନ୍ନ ଅନୁଷ୍ଠାନରେ ସଂପୃକ୍ତି

SWRC ତିଲୋନିଆ ରାଜସ୍ଥାନ (୧୯୭୯-୮୬), ଅଗ୍ରଗାମୀ ଓଡ଼ିଶା ଶାଖାର SWRC ପ୍ରତିଷ୍ଠାତା ସଭ୍ୟ, ରାଜ୍ୟ ଯୋଜନା ବୋର୍ଡର ପୂର୍ବତନ ସଭ୍ୟ, ଯୋଜନା ଆୟୋଗ ଓ ଏନ୍‌ଜିଓମାନଙ୍କର ସମନ୍ୱୟ କମିଟିର ପୂର୍ବତନ ସଦସ୍ୟ, କାପାର୍ଟ ପୂର୍ବାଞ୍ଚଳର ପୂର୍ବତନ ସଦସ୍ୟ

## ଲେଖକଙ୍କର ଅନ୍ୟାନ୍ୟ କୃତୀ

ଜଗତୀକରଣ ଓ ସଂଗ୍ରାମରତ ମଣିଷ, କାଶୀପୁର ସଂଘର୍ଷର କାହାଣୀ, ମାଟିକାଦୁଅର ମଣିଷ, କାଶୀପୁର ଡାଏରି, Chronicle of a Struggle

ଲେଖକଙ୍କର ପଠନ ଅପରିସୀମ । ପୃଥିବୀର ଅନେକ ସମ୍ମାନସ୍ପଦ, ପ୍ରତିଭାବନ୍ତ ଓ ପ୍ରଭାବଶାଳୀ ଲେଖକଙ୍କୁ ସେ ଗଭୀର ଭାବେ ଅଧ୍ୟୟନ ଓ ଅନୁଶୀଳନ କରିଛନ୍ତି, ପ୍ରଭାବିତ ହୋଇଛନ୍ତି ଓ ସେସବୁ ରଚନାରୁ ନିର୍ଯ୍ୟାସ ଗ୍ରହଣ କରିଛନ୍ତି । କେବଳ ଏ ବହିଗୁଡିକର ନାମ ତାଲିକା ହିଁ ଅନ୍ୟ ଏକ ଅର୍ଥରେ ଏ ପୁସ୍ତକର **Bibliography** ହୋଇପାରିବ । କେତେ ଗୁଡିଏ ବହି ଉପରେ ଲେଖକ ସ୍ୱାଭାବିକ ଓ ସୁନ୍ଦର ଭାବରେ ଯେଉଁ ଅନୁଶୀଳନ ଓ ବିଶ୍ଳେଷଣ ପ୍ରସ୍ତୁତ କରିଛନ୍ତି ସେଗୁଡିକ ହେଲା 'ଜନାଥନ ଲିଭିଙ୍ଗଷ୍ଟୋନ ସି ଗଲ' ଲେଖକ ରିଚ୍ଚର୍ଡ଼ ବାକ୍, ଡାନସିଂ ଉ ଲି ମାଷ୍ଟରସ୍, ଗ୍ୟାରୀ ଜୁକାଭ, ଦି ତାଓ ଅଫ ଫିଜିକ୍ସ, ଫ୍ରିଜୋଫ୍ କାପ୍ରା, ଜେନ୍ ଆଣ୍ଡ ଦି ଆର୍ଟ ଅଫ୍ ମୋଟରସାଇକେଲ ମେଣ୍ଟିନାନ୍ସ ରବର୍ଟ ପିରସିଗ ଏବଂ ଓଲଡ୍‌ମ୍ୟାନ୍ ଏଣ୍ଡ୍ ଦି ସି, ଅରନେଷ୍ଟ ହେମିଂୱେୟ ।

ସିନ୍ଧୁବାଳା ଚୌଧୁରୀ

ପ୍ରବନ୍ଧଗୁଡିକୁ ଆତ୍ମକଥାର ଆଖ୍ୟା ଦେଇଥିଲେ ମଧ୍ୟ ବାସ୍ତବରେ ସେଗୁଡିକ ଲେଖକଙ୍କର ବିଭିନ୍ନ ସ୍ଥାନ, ବ୍ୟକ୍ତି, ପୁସ୍ତକ ଓ ଜୀବନ ଦର୍ଶନ ସମ୍ପର୍କରେ ତାଙ୍କର ଆତ୍ମବିଭୋର ରୋମନ୍ଥନ । ସେ ଅରୁଣାଚଳ ପ୍ରଦେଶର ଉତ୍ତୁଙ୍ଗ ପର୍ବତମାଳା ମଧ୍ୟରେ ଥିବା ତାୱାଙ୍ଗ ମୋନାଷ୍ଟରିକୁ ଯାଇଛନ୍ତି ଏବଂ ଛତିଶଗଡ଼ର ଆଦିବାସୀମାନଙ୍କ ଜୀବନଧାରାକୁ ଲକ୍ଷ୍ୟ କରିଛନ୍ତି । କେତେବେଳେ ଆଣ୍ଡାମାନ ଉପସାଗରର ପ୍ରବାଳ ଦ୍ୱୀପ ତାଙ୍କୁ ଅବାକ୍ କରିଛି ତ ଆଉ କେତେବେଳେ ରାଜସ୍ଥାନର ମରୁଭୂମି ତାଙ୍କୁ ରୋମାଞ୍ଚିତ କରିଛି । ଲେଖାଗୁଡିକରେ ଈଶ୍ୱରଙ୍କ ସ୍ଥିତି ସମ୍ପର୍କରେ ପ୍ରଶ୍ନ କରାଯାଇଛି ଏବଂ ପାପ ଓ ପୁଣ୍ୟର ବ୍ୟାଖ୍ୟା କରାଯାଇଛି । ଏଥିରେ ଜୀବନ କଥା ରହିଛି; ମୃତ୍ୟୁ ବିଷୟରେ ମଧ୍ୟ ଆଲୋଚନା କରାଯାଇଛି । ପର୍ବତ ଦେଖି ଲେଖକ ଯେତିକି ଅନୁପ୍ରାଣିତ ହୋଇଛନ୍ତି, ସମୁଦ୍ର ତାଙ୍କୁ ସେତିକି ପ୍ରଭାବିତ କରିଛି । ମୁଖ୍ୟତଃ ଗଦ୍ୟ ରଚନା ହୋଇଥିଲେ ମଧ୍ୟ କେତେବେଳେ କେମିତି ସେ କବିତା ରାଜ୍ୟରେ ମଧ୍ୟ ବିଚରଣ କରିଛନ୍ତି । ବିଜ୍ଞାନର ଛାତ୍ର ଥିବାରୁ ପ୍ରକୃତିର ନିୟମକୁ ସେ ସହଜରେ ବୁଝିଛନ୍ତି । ଏବଂ ସାହିତ୍ୟରେ ଆଗ୍ରହ ଥିବାରୁ କଳ୍ପନା ଜଗତରେ ମଧ୍ୟ ବାରମ୍ୱାର ହଜିଛନ୍ତି । ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦର୍ଶନକୁ ଅଧ୍ୟୟନ କରି ନିଜ ଜୀବନ ଜିଜ୍ଞାସାରେ ସେ ବ୍ୟବହାର କରିଛନ୍ତି । ମୋର ମନେହୁଏ ଦସ୍ତୋଭସ୍କି ଓ କାମ୍ୟୁଙ୍କୁ ସେ ଯେତିକି ବୁଝିଛନ୍ତି, ସେତିକି ଅନୁରାଗରେ ଅଧ୍ୟୟନ କରିଛନ୍ତି ମହାତ୍ମାଗାନ୍ଧୀ ଓ ଗୋପୀନାଥ ମହାନ୍ତିଙ୍କୁ । ଯେଉଁମାନେ ତାଙ୍କ ଜୀବନ ଜିଜ୍ଞାସାର ସାଥୀ ଭାବରେ ଉଭା ହୋଇଛନ୍ତି ବିଭିନ୍ନ ସମୟରେ, ସେମାନେ ସବୁଦିନ ପାଇଁ ତାଙ୍କର ଅନ୍ତରଙ୍ଗ ହୋଇଯାଇଛନ୍ତି ।

ଅରବିନ୍ଦ ବେହେରା

ମୂଲ୍ୟ : ଟ. ୨୦୦/-

I.S.B.N. - 13:978-81-87982-60-9